# ସାହିତ୍ୟ ସମାଲୋଚନା



ଡକ୍ଟର ଶରତ୍ ଚନ୍ଦ୍ର ପତି

# ସାରସ୍ୱତ ସମାଲୋଚନା

**ଲେଖକ :**
**ଡକ୍ଟର ଶରତ୍ ଚନ୍ଦ୍ର ପତି**
ଏମ୍.ଏ. ଏମ୍.ଫିଲ୍, ପିଏଚ୍.ଡି
ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା-ସାହିତ୍ୟ ବିଭାଗ
ବୌଦ୍ଧ ମହାବିଦ୍ୟାଳୟ, ବୌଦ୍ଧ

**ପ୍ରକାଶକ :**
**ତାରାତାରିଣୀ ବୁକ୍ ଷ୍ଟୋର**
ବାଲୁ ବଜାର, କଟକ-୨
ମୋବାଇଲ୍ : ୯୪୩୭୨୭୪୫୮୦

**ପ୍ରଥମ ସଂସ୍କରଣ :** ୨୦୧୯

**ଅକ୍ଷର ସଜ୍ଜା :**
**ଉମା ପ୍ରିଣ୍ଟର୍ସ,** କଟକ

**ମୁଦ୍ରଣ :**
**ମଜଦୁର୍ ପ୍ରେସ୍,** କଟକ

**ମୂଲ୍ୟ :** ଟ. ୧୨୦/-

SARASWATA SAMALOCHANA

*Written By :*
**Dr. Sarat Chandra Pati**

*Published by :*
**Tara Tarani Book Store**
Balubazar, Cuttack-2

*First Edition :* **2019**

*D.T.P. By :*
**Uma Printers,** Cuttack-1

*Printed By :*
**Majdoor Press,** Cuttack

*Price :* **120/-**

# ଉତ୍ସର୍ଗ

ବିଶ୍ୱସୃଷ୍ଟିର ମୂଳାଧାର, ପରଂବ୍ରହ୍ମ ପରମେଶ୍ୱର, ପରମପିତା
ଦେବ-ଦେବ ମହାଦେବଙ୍କ, ଅଦୃଶ୍ୟ ଚରଣ ପଙ୍କଜ ତଳେ
ଭକ୍ତି ଅର୍ଘ୍ୟ ରୂପକ ମୋର ଏହି ପୁସ୍ତକଟିକୁ ଅର୍ପଣ କରୁଛି ।

– ଶରତ

# ପ୍ରାଗ୍‌ଭାଷ

ସାହିତ୍ୟ ହେଉଛି- ସ୍ରଷ୍ଟା ହୃଦୟ ମନ୍ଦାକିନୀର ଏକ ଅଖଣ୍ଡ, ଅନନ୍ତ, ଅମିୟ ରସଧାରା । ଯାହାର ପବିତ୍ର ପ୍ଲାବନରେ ପରିପ୍ଲାବିତ ଓ ଅଭିମନ୍ତ୍ରିତ ହୋଇଛି - କେତେ ସଭ୍ୟତା, ସଂସ୍କୃତି ଓ ଜୀବନର ଧାରା । ଲୌକିକ ସାହିତ୍ୟ ଠାରୁ ଆ ମ୍ଭ କରି ବେଦ, ବେଦାନ୍ତ, ଉପନିଷଦ, ଆଗମ, ପଞ୍ଚରାତ୍ର, ପୁରାଣ କାବ୍ୟ-ସାହିତ୍ୟ ଆଦିର ଦେହଳୀକୁ ଏହାର ପବିତ୍ର, ଅମିୟ ସ୍ପର୍ଶ ଜୀବନ୍ତ, ପ୍ରାଣବନ୍ତ କରିଛି । ପ୍ରାଚୀନ ଲୋକକଥା, ଲୋକ କାହାଣୀ, କିମ୍ବଦନ୍ତୀ ଓ ଢଗଢ଼ମାଳି ଦେଇ ଆମ ସାହିତ୍ୟ ଆଜି ଶୁଦ୍ଧ, ବିକଶିତ, ମାର୍ଜିତ, ରୂପ ପରିଗ୍ରହ ଲାଭ କରିଛି । ଆମ ଭାଷା-ସାହିତ୍ୟ ପ୍ରାଚୀନତା, ପୂର୍ଣ୍ଣବିକାଶ, ପୂର୍ଣ୍ଣସ୍ୱାତନ୍ତ୍ର୍ୟ ଓ ଶାସ୍ତ୍ରୀୟ ମୂଲ୍ୟବୋଧ ଦୃଷ୍ଟିରୁ ଆଜି ବିଶ୍ୱଦରବାରରେ ସ୍ୱର୍ଦ୍ଧିତ ଭାବରେ ଅସପତ୍ନ- ପ୍ରାଧାନ୍ୟ ଓ ପ୍ରତିଷ୍ଠା ଲାଭ କରିପାରିଛି । କାହ୍ନୁପା, ଲୁଇପା, ସାରଳା, ବତ୍ସାଦାସ, ବଳରାମ, ଜଗନ୍ନାଥ ପ୍ରମୁଖ ସାହିତ୍ୟରେ ଯେଉଁ ବୀଜବପନ କରିଥିଲେ, ତାହା ଆଜି ଶାଖା-ପତ୍ର ବହନ କରି ବିରାଟ ମହୀରୂହରେ ପରିଣତ ହୋଇ ପାରିଛି । ସେହି ମହା-ମହୀରୂହର କେତେକ ଶାଖାପତ୍ରର ସଂକ୍ଷିପ୍ତ ରୂପକୁ ମୁଁ ମୋର ଏହି 'ସାରସ୍ୱତ ସମାଲୋଚନା' ଗ୍ରନ୍ଥର ପୃଷ୍ଠାପଟଳରେ ପ୍ରକଟିତ କରିବାର ପ୍ରୟାସ କରିଅଛି ମାତ୍ର । ଏହି କ୍ଷୁଦ୍ର ସମାଲୋଚନା ଗ୍ରନ୍ଥଟିରେ - ଓଡ଼ିଆ ଲୋକସାହିତ୍ୟ, ଓଡ଼ିଆ ଭାଷାର ଆଦିମତମ ସୃଷ୍ଟି -ବୌଦ୍ଧ ଚର୍ଯ୍ୟାଗୀତି, ନାଥଧର୍ମ- ଦର୍ଶନ ସମ୍ବଳିତ ସାହିତ୍ୟ, ସାରଳା ଓ ପଞ୍ଚସଖାଙ୍କ ସାରସ୍ୱତ ସୃଷ୍ଟିଧର୍ମ ରୀତିଯୁଗୀୟ କାବ୍ୟର ଆଙ୍ଗିକ ଓ ଆତ୍ମିକ ରସସଂପ୍ରଦ ମହାକବି ଉପେନ୍ଦ୍ରଙ୍କ କାବ୍ୟଦୃଷ୍ଟି, କବିସୂର୍ଯ୍ୟ ବଳଦେବ ରଥଙ୍କର ଚମ୍ପୂକାବ୍ୟ ଓ ସାଂପ୍ରତିକ ଓଡ଼ିଆ ଉପନ୍ୟାସର ସ୍ଥିତ ଓ ଗତି ସଂପର୍କରେ ଶୂନ୍ୟ ସଂଚାରୀ ଦୃଷ୍ଟିରେ ସମ୍ୟକ ଆଲୋଚନା କରାଯାଇଛି ମାତ୍ର । ଏହି ଗ୍ରନ୍ଥଟି ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା - ସାହିତ୍ୟର ଛାତ୍ର-ଛାତ୍ରୀ, ଜିଜ୍ଞାସୁ ଗବେଷକ ବିଦଗ୍ଧ ପାଠକ ଓ ସାହିତ୍ୟ ରସିକମାନଙ୍କୁ କିଞ୍ଚିତ୍ ସହାୟକ ହେଲେ ମୋର ଶ୍ରମ ସାର୍ଥକ ହେବ ।

– **ଲେଖକ**

# ସୂଚୀପତ୍ର





# ଓଡ଼ିଆ ଲୋକସାହିତ୍ୟ- ଏକ ଅଧ୍ୟୟନ

ସାହିତ୍ୟ ହେଉଛି- ଜୀବନ ଓ ଜଗତର ବାସ୍ତବ, ସତ୍ୟଶୀଳ ତଥା କଳାତ୍ମକ ପ୍ରତିଛବି । ଏହା ଜୀବନ ଓ ଜଗତର କଥା ହିଁ କହେ । ଏହି ଜୀବନ ହୋଇପାରେ ଲୌକିକ ବା ପାର୍ଥୀବଜୀବନ ଅବା ଅପାର୍ଥୀବ, ଅଲୌକିକ, ପାରମାର୍ଥିକ ଜୀବନ । ସେହିପରି ସାହିତ୍ୟ ଯେଉଁ ଜଗତର କଥାକହେ, ସେ ଜଗତ ମଧ୍ୟ ଉଭୟ ପାର୍ଥୀବ ଏବଂ ଅପାର୍ଥୀବ ଜଗତ । ତେଣୁ ଜଗତ ଓ ଜୀବନର କଳାତ୍ମକ ଅଭିବ୍ୟକ୍ତି ହିଁ ସାହିତ୍ୟ । ସାହିତ୍ୟ ପ୍ରଥମେ ଅଭିବ୍ୟକ୍ତ ଲାଭ କରିଥିଲା- ଲୋକର ମୁଖରେ, ଶ୍ରୁତିରେ ଏବଂ ସ୍ମୃତିରେ । ଯାହାକି ଲୋକସାହିତ୍ୟର ରୂପ ପରିଗ୍ରହ ଲାଭ କରିଥିଲା । ଏହି ଲୋକସାହିତ୍ୟ ହେଉଛି- ଲୋକମୁଖର ସାହିତ୍ୟ, ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ବା ଅଭିପ୍ରେତ ସାହିତ୍ୟ । ଏହାରି ଭିତରେ ଲୋକସମୂହର ଭାବ ଓ ଆବେଗ ସ୍ୱପ୍ନ- ସମ୍ଭାବନା, ଆଶା- ଆକାଙ୍‌କ୍ଷା, ଧର୍ମ- ଧାରଣା, ରୀତି-ନୀତି, ପରମ୍ପରା ଓ ବିଶ୍ୱାସବୋଧ ଅତି ସ୍ୱଚ୍ଛନ୍ଦ, ସରଳ, ସାବଲୀଳ ଭାବରେ ପ୍ରକାଶିତ ହୋଇଥାଏ । ଲୋକସାହିତ୍ୟର ପ୍ରାଥମିକ ରୂପଥିଲା - ମୌଖିକ । ଦୈନନ୍ଦିନ ଜୀବନର ପାରସ୍ପରିକ ଭାବ ଆଦାନ-ପ୍ରଦାନର ଏହାଥିଲା ସାହିତ୍ୟିକ ରୂପମାତ୍ର । ଏଗୁଡ଼ିକ ମୁଖ ନିଃସୃତ । ଯେତେବେଳେ ଓଡ଼ିଆ ଭାଷା ପୂର୍ଣ୍ଣ ରୂପେ ବିକଶିତ ହୋଇନଥିଲା, ଲିପି ଓ ମୁଦ୍ରଣଯନ୍ତ୍ରର ଉଦ୍ଭାବନ ହୋଇନଥିଲା; ସେତେବେଳେ ଲୋକମାନଙ୍କର ମୁଖରୁ ମୁଖରେ ଲୋକଗୀତ, ଲୋକକଥା ମାନ ସଂଚାରିତ ହୋଇ ଅବା ଅଙ୍ଗଭଙ୍ଗୀ ଚାଳନା ବା ଅଭିନୟ ମାଧ୍ୟମରେ ସାହିତ୍ୟ ବଞ୍ଚି ରହିଥିଲା । ମୁଖ୍ୟତଃ ଶ୍ରୁତି ଓ ସ୍ମୃତିକୁ ସମ୍ବଳ କରି ଏହି ସାହିତ୍ୟ ବିକଶିତ ଓ ସୁ-ସମୃଦ୍ଧ ହୋଇଥିଲା । ପରବର୍ତ୍ତୀ ସମୟରେ ଏହା ଲିଖିତ ରୂପ ପରିଗ୍ରହ ଲାଭ କରିଥିଲା ।

ଲୋକସାହିତ୍ୟର ସୃଷ୍ଟି ଭାଷାର ସୃଷ୍ଟି କାଳରୁ । ଏହା ବୈଦିକ ସୂକ୍ତଠାରୁ ମଧ୍ୟ ପ୍ରାଚୀନ । ବେଦ, ବ୍ରାହ୍ମଣ୍ୟ ଏବଂ ଆରଣ୍ୟକ ଗ୍ରନ୍ଥମାନଙ୍କରୁ ଜଣାଯାଏ- ତତ୍କାଳୀନ ସମୟରେ ବିବାହ ଆଦି କର୍ମ- କର୍ମାଣି ଓ ବିଭିନ୍ନ ସାମାଜିକ ଅନୁଷ୍ଠାନମାନଙ୍କରେ ଲୋକଗୀତ ମାନ ଗାୟନ କରାଯାଉଥିଲା । ଯେଉଁ ଗୁଡ଼ିକୁ ମଙ୍ଗଳଗାନ ବା ମଙ୍ଗଳଗୀତିକା କୁହାଯାଉଥିଲା । ପୁରାଣସାହିତ୍ୟ ମାନଙ୍କରୁ ମଧ୍ୟ ଏହି ମଙ୍ଗଳଗୀତିକା ସଂପର୍କରେ ସୂଚନା

ମିଳେ । ଗୋସ୍ୱାମୀ ତୁଳସୀଦାସ କୃତ 'ରାମଚରିତ ମାନସ'ରେ ବର୍ଣ୍ଣିତ ଅଛି ଯେ- ଦେବୀ ସୀତାଙ୍କର ବିବାହୋତ୍ସବରେ ପଲ୍ଲୀନାରୀମାନେ ମଙ୍ଗଳଗୀତିକା ଗାୟନ କରିଥିଲେ । ବତ୍ସାଦାସଙ୍କର କଳସା ଚଉତିଶା ଏବଂ ସାରଳା ମହାଭାରତ ଗ୍ରନ୍ଥରେ ମଧ୍ୟ ଏହି ମଙ୍ଗଳ ଗୀତିକା ସଂପର୍କରେ ସୂଚନା ରହିଛି । କେବଳ ଏହି ଲୋକଗୀତ ନୁହେଁ; ଲୋକକଥା ବା ଲୋକକାହାଣୀ ମାନ ଲୋକମୁଖରେ ବଞ୍ଚିରହିବା ସହିତ ଲୋକାଭିନୟ ମଧ୍ୟରେ ମଧ୍ୟ ଲୋକସାହିତ୍ୟ ବଞ୍ଚି ରହିଥିଲା ।

ଲୋକସାହିତ୍ୟ ଗୁଡ଼ିକ ବେଶ୍ ସରଳ, ସାବଲୀଳ ଓ ସର୍ବଜନ ବୋଧ । ଲୋକମୁଖର ସରଳ, ନିରାଡ଼ମ୍ବର କଥିତଭାଷା ହିଁ ଲୋକସାହିତ୍ୟର ଭାଷା । ଲୋକ ସାହିତ୍ୟରେ ଗ୍ରାମୀଣ ବା ପଲ୍ଲୀଜୀବନର ମନ୍ମୟ ଆଲେଖ୍ୟ ଫୁଟି ଉଠିଥାଏ । ସରଳ, ନିଷ୍କପଟ ମଣିଷ ମନର ସକଳ ଆବେଗ ଓ କାବ୍ୟିକ ଆବେଦନ କେତେବେଳେ ମୁକୁଳିତ ଫୁଲପରି, ପରାଗର ରେଣୁଭଳି, କେତେବେଳେ ନିଃଶବ୍ଦ ଶିଶିରପାତ ଭଳି ତ' ପୁଣି କେତେବେଳେ କଳନାଦିନୀ ନିର୍ଝରିଣୀ ପରି ଝରି ଆସିଥାଏ । ଲୋକଜୀବନର ସକଳ ସ୍ୱାଭାବିକ ଆବେଗ ଓ ଅନୁଭୂତି, ସାମାଜିକ ଚଳଣୀ, ଯାବତୀୟ ଧର୍ମୀୟ ଓ ସାଂସ୍କୃତିକ ରୂପବିଭବ ଏହାର ପ୍ରତିଟି ସ୍ୱର୍ଣ୍ଣାଭ ପୃଷ୍ଠାରେ ଫୁଟି ଉଠିଥାଏ । ଏହାରି ଭିତରେ ସମାଜ, ସଭ୍ୟତା, ସଂସ୍କୃତି ଓ ମାନବିକ ଜୀବନବୋଧର ସ୍ୱଚ୍ଛନ୍ଦ ପରିପ୍ରକାଶ ଘଟିଥାଏ ।

ଓଡ଼ିଆ ଲୋକସାହିତ୍ୟକୁ ତିନି ଗୋଟି ମୁଖ୍ୟ ଭାଗରେ ବିଭକ୍ତ କରାଯାଇପାରେ । ୧- ଲୋକଗୀତ, ୨- ଲୋକକଥା ବା ଲୋକକାହାଣୀ, ୩-ଲୋକାଭିନୟ ବା ଲୋକ ନାଟକ ।

**ଲୋକଗୀତ :**

ଲୋକଗୀତ ହେଉଛି- ଲୋକ ପ୍ରାଣର ସ୍ୱତସ୍ଫୂର୍ତ୍ତ, ଆବେଗିକ, ଗୀତିମୟ, ବାଙ୍ମୟ ପରିପ୍ରକାଶ । ଲୋକଗୀତର ପ୍ରାଥମିକ ରୂପଥିଲା- ମୌଖିକ । ମୁଖରୁ- ମୁଖକୁ, ଶ୍ରୁତିରୁ ଶ୍ରୁତିକୁ, ସ୍ମୃତିର ସ୍ମୃତିକୁ ସମ୍ବଳ କରି ଏହା ପ୍ରସାରିତ ଓ ବିକଶିତ ହୋଇଥିଲା । ପରବର୍ତ୍ତୀ ସମୟରେ ଲୋକକଥିତ ଭାଷାର ବିନ୍ୟାସ ଓ ସହଜ, ସରଳ, ଭାବପ୍ରକାଶ ମାଧ୍ୟମରେ ଏହା ଲିଖିତ ରୂପ ଧାରଣ କରିଥିଲା । ଲୋକଗୀତ ଗୁଡ଼ିକ ବେଶ୍ ସରଳ, ତରଳ ଓ ଆବେଗମୟ । ଏଗୁଡ଼ିକ ଭିତରେ ସୌନ୍ଦର୍ଯ୍ୟ ଭାବନାର ପ୍ରକଟନ ସହିତ ଆଦିମତା ଓ ଆଦିରସର ପ୍ରାବଲ୍ୟ ଫୁଟି ଉଠିଥାଏ । ଏହାର ସାଙ୍ଗୀତିକ ମାଧୁର୍ଯ୍ୟ, ଛନ୍ଦୋବଦ୍ଧତା, ରସମୟ ଆବେଦନ ଓ ସାବଲୀଳ ପରିପ୍ରକାଶ ଭଙ୍ଗୀ ଏହାକୁ ସାର୍ବଜନୀନ ଓ ସାର୍ବକାଳୀନ କରିପାରିଛି । ପ୍ରାଚୀନ ଓଡ଼ିଆ ଲୋକଗୀତ ଗୁଡ଼ିକର ସ୍ୱରୂପ ବିଭିନ୍ନ ପ୍ରକାରର । ସେଗୁଡ଼ିକ

ହେଲା- ମଙ୍ଗଳଗୀତି, କାନ୍ଦଣାଗୀତ, ଦୋଳିଗୀତ, ପୁଚିଖେଳଗୀତ, କୁଆଁରପୁନେଇ ଗୀତ, ହଳିଆ ଗୀତ, ଶଗଡ଼ିଆ ଗୀତ, ଚକୁଳିଆ ପଣ୍ଡା ଗୀତ, ନାଉରିଆ ଗୀତ, ଚଢ଼େୟା-ଚଢ଼େୟାଣୀ ଗୀତ, ଡାଲ୍‌ଖାଇ ଗୀତ, ରସରକେଲୀ ଗୀତ, ଜାମୁଡାଳୀ ଗୀତ, ମନ୍ତ୍ରଗୀତ ଓ ବିଭିନ୍ନ ଢଗଢ଼ମାଳି ଇତ୍ୟାଦି ।

## ମଙ୍ଗଳଗୀତ :

ମଙ୍ଗଳଗୀତିକା ମୁଖ୍ୟତଃ ବିଭିନ୍ନ ସାମାଜିକ କର୍ମ- କର୍ମାଣି ଓ ଧାର୍ମିକ ଅନୁଷ୍ଠାନ ମାନଙ୍କରେ ବୋଲାଯାଇଥାଏ । ଏଗୁଡ଼ିକୁ ଶୁଭଗୀତିକା ମଧ୍ୟ କୁହାଯାଇଥାଏ । ବ୍ରତ, ଜାତକ ଦେଖା, ଅନୁକୂଳ ବେଦିନିର୍ମାଣ, ବାଟବରଣ, ହସ୍ତଗ୍ରନ୍ଥି ଆଦି ସମୟରେ ଏହି ଶୁଭଗୀତିମାନ ଗାନ କରାଯାଏ ।

## କୃଷକଗୀତ :

କୃଷକ ତା'ର କର୍ମକ୍ଳାନ୍ତ ଜୀବନରୁ ସାମୟିକ କ୍ଳାନ୍ତି ଅପନୋଦନ ପାଇଁ ନିଜେ ବିଭିନ୍ନ ଗୀତ ଫାନ୍ଦି ସେଗୁଡ଼ିକୁ ଗାଇଥାଏ । ଏହି ଗୀତ ଗୁଡ଼ିକ ଖଣ୍ଡିତ, ଅବିନ୍ୟସ୍ତ, ଅର୍ଥହୀନ ମନେ ହେଲେ ହେଁ; ଏହାର ସାଙ୍ଗୀତିକ ଆବେଦନ ଯୋଗୁଁ ଏହା ବେଶ୍ ଶ୍ରୁତି ମଧୁର ଲାଗେ । ପ୍ରଚଣ୍ଡ ରୌଦ୍ର ଦଗ୍‌ଧ ଖରାରେ ଅବା ବର୍ଷାର ତାଣ୍ଡବ ଭିତରେ କୃଷକ ତା'ର ସଙ୍ଗୀତର ଝଙ୍କାର ମେଲି ଦେଇଥାଏ । ବେଳେବେଳେ ରାମାୟଣ ଓ ମହାଭାରତ ଗୀତ ଗୁଡ଼ିକୁ ସେ ନିଜସ୍ୱ ଶୈଳୀ ଓ ଢଙ୍ଗରେ ଉପସ୍ଥାପିତ କରିଥାଏ । ଏହି କୃଷକ ଗୀତ ମଧ୍ୟରେ ତା' ଜୀବନର ସ୍ୱପ୍ନ- ସମ୍ଭାବନା, ହର୍ଷ-ବିଷାଦ ଓ ଆବେଗମୟତାର ଚିତ୍ର ମଧ୍ୟ ଫୁଟି ଉଠିଥାଏ । କୃଷକ ଗୀତର ଏକ ସୁନ୍ଦର ଉଦାହରଣ ହେଲା-

"ରାମ ନେଲେ ହଳ ଯେ, ଲକ୍ଷ୍ମଣ ନେଲେ ମଇ
କେଉଁ ଦିଗେ ମେଘ ଯେ ବରଷା,
ତିନ୍ତିଲେ ବେନି ଭାଇ ।
ସୁବର୍ଣ୍ଣର ନଙ୍ଗଳକୁ ରୂପାର ଜୁଆଳି
ମନ ଚଇତନ ହୋ ବଳଦ, ହଳିଆ ବନମାଳି ।"

## ଶଗଡ଼ିଆ ଗୀତ :

ଗ୍ରାମୀଣ ଜୀବନରେ ଶଗଡ଼ିଆ ଗୀତର ମହତ୍ତ୍ୱ ଅତି ଗୁରୁତ୍ୱପୂର୍ଣ୍ଣ । ଶଗଡ଼ିଆ ତା'ର କୃଷିକ୍ଷେତ୍ର ଅବା କାର୍ଯ୍ୟକ୍ଷେତ୍ରକୁ ଯିବା- ଆସିବା ବେଳେ ଆନନ୍ଦ ବିଭୋରିତ ହୋଇ

ନିଜସ୍ୱ ଢଙ୍ଗରେ ଯେଉଁ ଗୀତ ଗାଇଥାଏ ତାକୁ ଶଗଡ଼ିଆ ଗୀତ କୁହାଯାଏ । ଏହି ଗୀତ ଗୁଡ଼ିକ ଖଣ୍ଡିତ ଅବିନ୍ୟସ୍ତ । ତା' ହୃଦୟକୁ ଯେଉଁ ଭାବନା ବା କଥା ଆସେ ତାକୁ ସେ କାବ୍ୟିକ ରୂପ ଦିଏ । ଏହି ଶଗଡ଼ିଆ ଗୀତ ଗୁଡ଼ିକ ବେଶ୍ ରସାଳ ଓ ରସିକତାରେ ପରିପୂର୍ଣ୍ଣ । ବେଳେ ବେଳେ ଶଗଡ଼ିଆ ତା'ର ଯାତ୍ରାପଥକୁ ତ୍ୱରିତ କରିବା ପାଇଁ ମଠୁଆ ବଳଦ ପିଠିରେ ପାଞ୍ଚଣ ପ୍ରହାର ପୂର୍ବକ ସଙ୍ଗୀତର ଲହର ମେଲି ଦେଇଥାଏ । ଏହି ଶଗଡ଼ିଆ ଗୀତ ଗୁଡ଼ିକ ଦୋହା ଶ୍ରେଣୀୟ ଏବଂ ଆବୃତ୍ତି ଧର୍ମୀ । ଶଗଡ଼ିଆ ଗୀତର ଏକ ସୁନ୍ଦର ଉଦାହରଣ ହେଲା-

"ଦୂରକୁ ସୁନ୍ଦର ତ' ପରବତ ମାଳ
ଗାଁକୁ ସୁନ୍ଦର ନଡ଼ିଆ, ଗୁଆ, ତାଳ ।
ବନ୍ଧୁକୁ ସୁନ୍ଦର ତ' ଦିଶଇ ଦୂର ବାଟ
ସିନ୍ଧୁକୁ ସୁନ୍ଦର ତ' ଲହଡ଼ାଭଙ୍ଗା ଘାଟ ।"

**ଚକୁଳିଆପଣ୍ଡା ଗୀତ :**

ଚକୁଳିଆପଣ୍ଡା ମାନେ ମୁଖ୍ୟତଃ କାର୍ତ୍ତିକ, ମାଘ, ବୈଶାଖ ଆଦି ମାସ ମାନଙ୍କରେ ପୂର୍ଣ୍ଣିମା, ଅମାବାସ୍ୟା ଓ ସଂକ୍ରାନ୍ତି ତିଥିରେ ଗାଁ-ଗଣ୍ଡା ମାନଙ୍କରେ ବୁଲି ବୁଲି ବିଭିନ୍ନ ଗୀତ ପାଇ ଭିକ୍ଷା ମାଗିଥାନ୍ତି । ଗୃହିଣୀମାନେ ମଧ୍ୟ ଧର୍ମମାସମାନଙ୍କରେ ଏହି ଚକୁଳିଆ ପଣ୍ଡାମାନଙ୍କର ଆଗମନକୁ ପ୍ରତୀକ୍ଷା କରି ରହିଥାନ୍ତି । ଅମାବାସ୍ୟା, ସଂକ୍ରାନ୍ତି ଆଦି ତିଥିରେ ପଣ୍ଡାମାନଙ୍କୁ ଦାନ କଲେ, ଧର୍ମଫଳ ମିଳେ ବୋଲି ପାରମ୍ପରିକ ବିଶ୍ୱାସ ରହିଛି । ଚକୁଳିଆପଣ୍ଡା ମାନେ ଚିତାଚଇତନ ମାରି, ତାଳପତ୍ରରେ ନିର୍ମିତ ଛତ୍ରୀ ଧରି କପଡ଼ା ନିର୍ମିତ ଥାଳିରେ ଗୃହିଣୀମାନଙ୍କ ଠାରୁ ଗୀତ ଗାଇ ଗାଇ ଭିକ୍ଷା ସଂଗ୍ରହ କରିଥାନ୍ତି । ଏମାନେ ଗୋଟିଏ ଦଳରେ ଦୁଇ ଜଣ ମାତ୍ର ଥାନ୍ତି । ଚକୁଳିଆପଣ୍ଡା ମାନଙ୍କର ଏକ ମନୋଜ୍ଞ ପଙ୍‌କ୍ତି ହେଲା-

"ଦେବ ଦିଆଇବ ହେ ଏମନ୍ତ କରିବ
ଧରିତ୍ରୀରେ ଦାତା ପଣେ ଯଶ ଭିଆଇବ ।"

**ନାଉରିଆ ଗୀତ:-**

ନାଉରିଆ ଘାଟରେ ଡଙ୍ଗା ବାନ୍ଧି ଥିବା ବେଳେ ଅବା ଡଙ୍ଗାବାହିବା ସମୟରେ ସୁ-ମଧୁର ସ୍ୱରରେ ଗୀତମାନ ଗାଇଥାଏ । ନିଜର କ୍ଳାନ୍ତି ଅପନୋଦନ ପାଇଁ ଅବା ବାଟୋଇମାନଙ୍କର ମନପ୍ରାଣକୁ ପୁଲକିତ କରିବା ପାଇଁ ନାଉରଆ ବିଭିନ୍ନ ଚଟୁଳ ରସମୟ

ଗୀତମାନ ଗାଇଥାଏ । ଯେଉଁ ଗୀତ ଗୁଡ଼ିକ କି ପ୍ରଣୟ ବିଭୋର ତରୁଣ ତରୁଣୀମାନଙ୍କ ମନପ୍ରାଣକୁ ପୁଲକିତ କରେ ।

**ଦୋଳି ଗୀତ :**

ଓଡ଼ିଶାର ସାଂସ୍କୃତିକ ଜୀବନରେ ଦୋଳିଗୀତର ମହତ୍ତ୍ୱ ଅତି ଗୁରୁତ୍ୱପୂର୍ଣ୍ଣ । ମୁଖ୍ୟତଃ ରଜ ତିନି ଦିନ ଧରି ତରୁଣ ତରୁଣୀମାନେ ଗ୍ରାମର ଶେଷ ସୀମାନ୍ତରେ ଅତିକାୟ ବନସ୍ପତି ମାନଙ୍କର ଡାଳରେ ଦୋଳିବାନ୍ଧି, ଦୋଳିଖେଳି ଗୀତ ଗାଇଥାନ୍ତି । ଏହି ଦୋଳିଖେଳ ସମୟରେ ତରୁଣୀମାନେ ଅତି ସୁନ୍ଦର, ସରସ, ରୁଚିପୂର୍ଣ୍ଣ, ରସାଳ ଗୀତମାନ ଗାଇଥାନ୍ତି । ବେଳେ ବେଳେ ଏହି ଗୀତ ଗୁଡ଼ିକ ଭିତିରେ ବ୍ୟଙ୍ଗ- ବିଦ୍ରୂପର ଛିଟା ମଧ ଫୁଟି ଉଠିଥାଏ ।

ଏହି ଦୋଳିଗୀତ ଗୁଡ଼ିକ କୁଆଁରୀ ମନର ଭାବ ଓ ଆବେଗକୁ ପୁଲକିତ ଓ ସ୍ୱପ୍ନିଳ କରିଥାଏ । ଏହି ଗୀତ ଗୁଡ଼ିକ ବେଶ୍ ସରଳ, ସାବଲୀଳ, ସ୍ୱଚ୍ଛନ୍ଦ । ଏହାର ପ୍ରକାଶ ଭଙ୍ଗୀରେ କୌଣସି କୃତ୍ରିମତା ନାହିଁ ।

**କାନ୍ଦଣା ଗୀତ :**

କାନ୍ଦଣାଗୀତ ଗୁଡ଼ିକ ମୁଖ୍ୟତଃ ଆବେଗିକ ଓ କରୁଣର ସାଶ୍ରିତା । ସାଧାରଣତଃ ବିବାହ ଉତ୍ସବ ଆଦି ସମୟରେ ଝିଅ ଶାଶୁଘରକୁ ଯିବା ବେଳେ କାନ୍ଦଣା ଗୀତ ମାନ ଗାଇଥାଏ । ନିଜର ଜନ୍ମମାଟି, ପିତା-ମାତା, ଭାଇ-ଭଉଣୀ, ଅନ୍ତରଙ୍ଗ ସାଥୀ ଓ ଆତ୍ମୀୟ ସ୍ୱଜନଙ୍କୁ ଛାଡ଼ି ଶାଶୁ ଘରକୁ ଯିବା ବେଳେ ସ୍ୱାଭାବିକ ଓ ସ୍ୱତସ୍ଫୁର୍ତ୍ତ ଭାବରେ ଝିଅ ଆଖିରୁ ଲୋତକ ଝରିଆସେ । ସେ ସମସ୍ତଙ୍କୁ ଧରି ବାହୁନି ବାହୁନି କାନ୍ଦେ ।

ଆଖିର ଲୁହ ସହିତ କରୁଣରସର ଗୀତ ଗୁଡ଼ିକ ପରିବେଶକୁ ବେଶ୍ ଆର୍ଦ୍ର ଓ ଦୁଃଖାଭିଭୂତ କରିଥାଏ । ଓଡ଼ିଆ ସମାଜରେ ଏହି କାନ୍ଦଣା ଗୋଟେ ପ୍ରଥାରୂପେ ବିବେଚିତ । ଶାଶୁଘରକୁ ଗଲାବେଳେ ଝିଅ ଯଦି ନ' କାନ୍ଦେ, ତାହା ଅସାମାଜିକ, ଅଶୋଭନୀୟ ରୂପେ ବିବେଚିତ ହୁଏ । ପାରିବାରିକ ଜୀବନର ଅତୀତ ସ୍ମୃତିର ରୋମନ୍ଥନ ସହିତ ଭବିଷ୍ୟତ ଜୀବନର ଶଙ୍କା ଓ ସନ୍ଦେହ ଏହି ଗୀତ ଭିତରେ ଉକୁଟି ଉଠେ । କୁଆଁରୀ ମନର ଅନେକ ଅକୁହା, ଅବ୍ୟକ୍ତ ବେଦନା ଏହି କାନ୍ଦଣା ଗୀତରେ ଫୁଟି ଉଠେ ।

**ପୁଚିଖେଳ ଗୀତ :**

ବିଭିନ୍ନ ପର୍ବ-ପର୍ବାଣୀରେ ଗ୍ରାମର ଲଳନା ମାନେ ପୁଚିଖେଳ ଖେଳିଥାନ୍ତି । ମୁଖ୍ୟତଃ ଖୁଦୁରୁକୁଣୀ ଓଷାର ଶେଷ ପାଳିରେ ଏହି ପୁଚିଖେଳ ଆୟୋଜିତ ହୋଇଥାଏ । ଏହି ପୁଚିଖେଳ ସମୟରେ ଝିଅମାନେ ଯେଉଁ ଗୀତମାନ ଗାଇଥାନ୍ତି, ତାକୁ ପୁଚିଖେଳ ଗୀତ

କୁହାଯାଏ । ପୁଚି ଖେଳରେ ଝିଅମାନେ ଉଭୟ ବସାପୁଚି ଏବଂ ଠିଆପୁଚି ଖେଳିବା ସହିତ ଗୀତ ମଧ୍ୟ ଗାଇଥାନ୍ତି । ଏହି ଗୀତ ଗୁଡ଼ିକରେ କୁମାରୀମାନଙ୍କର ହୃଦୟର ଆବେଗିକ ଭାବନା ଫୁଟିଉଠିବ ସହିତ ସମାଜ ଜୀବନର ମଞ୍ଜୁଳଚିତ୍ର ମଧ୍ୟ ଫୁଟି ଉଠିଥାଏ ।

## ଶିଶୁ ଗୀତ :

ଶିଶୁ ଗୀତ ଗୁଡ଼ିକ ବିଜ୍ଞାନ ସମ୍ମତ ଓ ଶିଶୁ ମନସ୍ତତ୍ତ୍ୱ ଉପଯୋଗୀ । ଶିଶୁର ମାନସିକ ଶାନ୍ତି ଓ ବୌଦ୍ଧିକ ଅଭିବୃଦ୍ଧିରେ ଏହି ଗୀତ ଗୁଡ଼ିକ ସହାୟକ ହୋଇଥାଏ । ସ୍ନେହମୟୀ ମା' ଶୈଶବ ଅବସ୍ଥାରେ ଅଝଟ, ଅବୁଝା ଶିଶୁକୁ ତେଲହଳଦୀ ଲଗାଇ ଦେବା ସମୟରେ, ଗାଧୋଇ ଦେବା ସମୟରେ, ଅବା ଶୁଆଇ ଦେବା ସମୟରେ ବିଭିନ୍ନ ଶିଶୁମନଲୋଭା ଗୀତ ଗାଇ ଶିଶୁକୁ ଶାନ୍ତ ଓ ଆକୃଷ୍ଟ କରାଇଥାଏ । 'ଧୋ'-ରେ ବାଇଆ ଧୋ' କିମ୍ବା 'ଝୁଲ୍ ରେ ହାତୀ ଝୁଲ୍' ଆଦି ଶିଶୁ ଗୀତ ଗୁଡ଼ିକ ଶିଶୁର ମନ- ପ୍ରାଣକୁ ମନ୍ତ୍ରବତ୍ ବଶୀଭୂତ କରିଥାଏ । ଏହା ସହିତ କେତେକ ଶିଶୁ ଗୀତ ଓ ପ୍ରାର୍ଥନା ଗୀତ ଗୁଡ଼ିକୁ ପିଲାମାନେ ନିଜେ ଗାଇ ସେଥିରୁ ଶିକ୍ଷା ଓ ଆନନ୍ଦ ଲାଭ କରିଥାନ୍ତି ।

ମେଘ ବରଷିଲା ଟୁପୁରୁ ଟାପୁରୁ, ଇଟିକିଲି ମିଟିକିଲି, ଚକା ଚକା ଭଉଁରୀ, ଖରା ହେଉଛି- ବର୍ଷା ହେଉଛି- ବିଲୁଆ ନନା ବାହା ହେଉଛି ଆଦି ଶିଶୁ ଗୀତ ଏବଂ ହେ ଆନନ୍ଦମୟ କୋଟି ଭୁବନ ପାଳକ' ଆଦି ପ୍ରାର୍ଥନା ସଙ୍ଗୀତ ଗୁଡ଼ିକ ବେଶ୍ ଶିଶୁମନ ଲୋଭା, ଆକର୍ଷଣୀୟ ଏବଂ ଶିକ୍ଷଣୀୟ ।

## ଢଗଢ଼ମାଳି :

ଓଡ଼ିଆରେ ବ୍ୟବହୃତ ଢ଼ଗ-ଢମାଳି ଗୁଡ଼ିକୁ ଲୋକଗୀତରେ ଅନ୍ତର୍ଭୁକ୍ତ କରାଯାଇପାରେ । ଏଗୁଡ଼ିକ ଉଭୟ ଗଦ୍ୟ ଏବଂ ପଦ୍ୟାତ୍ମକ । ଏହି ଢଗ ଗୁଡ଼ିକ ବେଶ୍ ବୌଦ୍ଧିକ, ଚଟୁଳ ହାସ୍ୟ ଓ ବ୍ୟଙ୍ଗ ଧର୍ମୀ । ଏହାର ପ୍ରକାଶ ଭଙ୍ଗୀ ନିର୍ଭୀକ । ଏହି ଢଗ ମାଧ୍ୟମରେ ଅନେକ ଗୁରୁତ୍ୱପୂର୍ଣ୍ଣ, ଅକୁହା କଥା ସଂକ୍ଷିପ୍ତରେ ପ୍ରତୀକାତ୍ମକ ଭାବରେ ଅନାୟାସରେ କୁହାଯାଇପାରେ । ଗୋଟିଏ ପଦରେ ଯାହା କୁହାଯାଇପାରେ ନାହିଁ, ଗୋଟିଏ ଢଗରେ ତାହା ପ୍ରକାଶ କରାଯାଇ ପାରେ । ଏଗୁଡ଼ିକ ବେଶ ବାସ୍ତବ, ସତ୍ୟଶୀଳ ଓ ପ୍ରଖର । ଏଥିରେ କଳ୍ପନା ବିଳାସର ସ୍ଥାନ ନାହିଁ । ଜୀବନ ସହିତ ଏହି ଢଗ ଗୁଡ଼ିକ ପ୍ରତ୍ୟକ୍ଷ ଭାବରେ ଜଡ଼ିତ । ଏଥିରୁ ସମାଜ ଜୀବନର ବିଭିନ୍ନ ଚଳଣୀ, ଲୋକାଚାର, ଲୋକ ବ୍ୟବହାର ଓ ସ୍ୱାଭାବିକ ଜୀବନ ଚିତ୍ରର ନିଛକ ପରିଚୟ ମିଳିଥାଏ । ଓଡ଼ିଆରେ ପ୍ରଚଳିତ କେତେ ଗୁଡ଼ିଏ ଢଗର ଉଦାହରଣ ହେଲା-

୧. ଊଣା ଲୋକର ଗଣାସରେ
କୃପଣ ଲୋକର ତିନି ଗୁଣା ସରେ ।

୨. ଅଧର୍ମ ବିତ୍ତ ବଢ଼େ ବହୁତ
ଗଲାବେଳେ ଯାଏ ମୂଳ ସହିତ ।

୩. ଘର ପୋଡ଼ି ଠାରୁ ବିପଦ ନାହିଁ
ଘୋଡ଼ା ଚଢ଼ା ଠାରୁ ସଂପଦ ନାହିଁ ।

୪. ଆ'ଲୋ ମୁତୁରୀ ଶୋଇବା-
ତୁ' ତ ମୁତୁରୀ, ମୁଁ ତ ମୁତୁରୀ
ହେଁ ସ କାହିଁ ପାଇଁ ଧୋଇବା ।

୫. ଚକ ବୁଲୁଥିଲେ ଅଖ ବୁଲୁଥାଇ
ବୁଲି ପଡୁଥାଏ ପହି
ସଂସାର ଭିତରେ ଘର କରିଥିଲେ
ପଥର ପଡ଼ିଲେ ସହି ।

୬. ଚେଇଁ ଶୋଇଥିବ ଯିଏ
ତାକୁ ଉଠାଇବ କିଏ ?

୭. ଆଳୁକୁଚି ବୋଲ ମାଳୁକୁଚି ବୋଲ
ଭାତପରି କିଏ ହେବରେ
ମାଉସୀ ବୋଲ ପିଉସୀ ବୋଲ
ମାଆ ପରି କିଏ ହେବରେ ।

୮. କ୍ଷୀରରେ ଧୋଇଲେ ଖଣ୍ଡରେ ମୋହିଲେ
ନିମ୍ବ କି' ମଧୁର ହୋଇବ
ଯେତେ ପରକାରେ ବୁଝାଇ କହିଲେ
ପର କି' ଆପଣା ହୋଇବ ।

**ଲୋକକଥା ବା ଲୋକକାହାଣୀ :**

ଲୋକକଥା ବା ଲୋକକାହାଣୀ ଲୋକସାହିତ୍ୟର ଏକ ପ୍ରାଚୀନ ଗଦ୍ୟ ରୂପ । ଲୋକମୁଖରେ ପ୍ରଚଳିତ କଥା ବା କାହାଣୀକୁ ଲୋକକାହାଣୀ କୁହାଯାଏ । ଏଗୁଡ଼ିକ

ଜୀବନର ଜିଜ୍ଞାସା, ଅନୁସନ୍ଧିତ୍ସା ଓ ପ୍ରାଣ-ପ୍ରାଚୁର୍ଯ୍ୟରେ ଭରପୁର । ଏହି କାହାଣୀର ଜନ୍ମଲଗ୍ନ ଅଜଣା କେଉଁ ସୁଦୂର ଅତୀତରେ । ଶିଶୁ-କିଶୋରମାନଙ୍କର ଜିଜ୍ଞାସାର ପରି ପୂର୍ତ୍ତି ପାଇଁ ଓ ମନୋରଞ୍ଜନ ପାଇଁ ଏହି କାହାଣୀଗୁଡ଼ିକ ଅଭିପ୍ରେତ । ସାଧାରଣତଃ ବର୍ଷୀୟାନ୍ ପୁରୁଷ ଓ ବର୍ଷୀୟସୀ ମହିଳାମାନେ ହିଁ ଏହି ପ୍ରାଚୀନ କଥା ଓ କାହାଣୀର ମୂଳ ସୂତ୍ରଧର । ଅଝଟ ଅବୁଝା ଶିଶୁମାନଙ୍କୁ କାଳ୍ପନିକ, ଅତିରଞ୍ଜିତ, ରୋମାଞ୍ଚକର କାହାଣୀମାନ କହି ଅଜା-ଆଇ, ଜେଜେବାପା-ଜେଜେମା' ମାନେ ସେମାନଙ୍କ ମନ-ପ୍ରାଣକୁ ମନ୍ତ୍ରମୁଗ୍ଧ, ଚମତ୍କୃତ ଓ ବଶୀଭୂତ କରିଥାନ୍ତି । କଥାକାର ନିଜର ବ୍ୟକ୍ତିଗତ ଅନୁଭବ, ଅନୁଭୂତି ସହିତ କାଳ୍ପନିକ କଥାବସ୍ତୁକୁ ଗଳ୍ପଛଳରେ କହିଥାନ୍ତି । ଏହି ଗପ ମାଧ୍ୟମରେ ବିଭିନ୍ନ ହିତ ଉପଦେଶ ନୀତିଶିକ୍ଷା ଓ ଲୋକଶିକ୍ଷା ମାନ ପ୍ରଦାନ କରାଯାଇଥାଏ । ଗପଗୁଡ଼ିକ ମୁଖ୍ୟତଃ କଥନଭଙ୍ଗୀ ବା କଥନରୀତିରେ ପ୍ରକାଶିତ କରାଯାଇଥାଏ । ଏଥିରେ ଅପୂର୍ବ କଳ୍ପନା ଶକ୍ତିର ପ୍ରୟୋଗ ସହିତ ରହସ୍ୟ, ରୋମାଞ୍ଚ ଓ ଅଭିନବ ବିଷୟ ବସ୍ତୁର ଉପସ୍ଥାପନା କରାଯାଇଥାଏ । ଅସୁର-ଅସୁରୁଣୀ କଥା, ଭୂତପ୍ରେତ କଥା, ଗୁଣୀମାଲ୍ୟାଣି କଥା, ରଜାପୁଅ ରାଜଝିଅ କାହାଣୀ, ପରୀ-ଅପସରୀ କାହାଣୀ ଆଦିର ରୋମାଞ୍ଚକର କଥାବସ୍ତୁ ଶିଶୁ- କିଶୋର ପ୍ରାଣକୁ ବିମୁଗ୍ଧ-ଚକିତ ଓ ଆନନ୍ଦିତ କରିଥାଏ । ଏହି ପ୍ରାଚୀନ କଥା ବା କାହାଣୀର ଆରମ୍ଭ ଓ ଶେଷରେ କେତେ ଗୁଡ଼ିଏ ଗୀତିମୟ କଥାର ସଂଯୋଜନା କରାଯାଇଥାଏ । ଆଈ ମା' ଅଜା, ବୁଢ଼ୀମା' କାହାଣୀର କୁହକପେଡ଼ି ଖୋଲିବା ପୂର୍ବରୁ ପିଲାମାନଙ୍କୁ ସଚେତିତ ଓ ଜାଗ୍ରତ କରାଇବା ପାଇଁ ଗୀତଟିଏ ଗାଇ ଶୁଣାଇଥାନ୍ତି-

କଥାଟିଏ କହୁଁ କଥୁଲି
ତା'କୁ ପାଳ ଦଉଡ଼ିରେ ଗୁନ୍ଥିଲି ।
କି' କଥା ? ବେଙ୍ଗୁଲୀ କଥା ।
କି ବେଙ୍ଗୁଲୀ ? କାଠବେଙ୍ଗୁଲୀ ।
କି' କାଠ ? ତେନ୍ତୁଳି କାଠ ।
କି' ତେନ୍ତୁଳି ? ଝାଡ଼ ତେନ୍ତୁଳି ।
କି' ଝାଡ଼ ? କଣ୍ଟାବାଡ଼ ।
କି' କଣ୍ଟା ? କାନକୋଳି କଣ୍ଟା ।
ଯହିଁ ଲାଗିଯାଏ ଝଟାପଟା ।

ସେହିପରି ଗପକଥନ ଶେଷରେ ମଧ୍ୟ ଗୀତଟିଏ କଥନ ଶୈଳୀରେ କୁହାଯାଏ-

ମୋ କଥାଟି ସରିଲା
ଫୁଲ ଗଛଟି ମରିଲା

ହଇରେ ଫୁଲଗଛ, ତୁ କାହିଁକି ମଲୁ ?
ମୋତେ କାଳି ଗାଈ ଖାଇଦେଲା
ହଇଲୋ କାଳିଗାଈ ତୁ କିଆଁ ଖାଇଲୁ ?
ଗଉଡ଼ ଜଗିଲା ନାହିଁ ।
ହଇରେ ଗଉଡ଼ ତୁ କିଆଁ ଜଗିଲୁନି ?
ବଡ଼ ବୋଉ ଖାଇବାକୁ ଦେଲାନି....... ଇତ୍ୟାଦି !

ଏହି ଲୋକଗପ ବା ଲୋକକାହାଣୀରେ ଗମ୍ଭୀର ଉତ୍କଣ୍ଠା, ଚମତ୍କାରିତା ଓ ନାଟକୀୟ ଆବେଗ ଭରି ରହିଥାଏ । ଏହି ଗପଗୁଡ଼ିକ ବେଶ୍ ବର୍ଣ୍ଣନା ଧର୍ମୀ । ପରିବେଷଣ ଗତ ଚାତୁରୀ, କଳାତ୍ମକ ପରିପ୍ରକାଶ ହିଁ ଏହାର କଥନଶୈଳୀକୁ ଶ୍ରୁତିମଧୁର, ରୋମାଞ୍ଚକର କରିଥାଏ । ଏହା ସହିତ ବର୍ଣ୍ଣନାଗତ ବୈଚିତ୍ର୍ୟ ଯୋଗୁଁ କାହାଣୀର ସରସତା, ଚମତ୍ କାରିତା ଓ ଲୋକପ୍ରିୟତା ବୃଦ୍ଧି ପାଇଥାଏ ।

ପ୍ରାଚୀନ ଲୋକଗପ ବା ଲୋକକାହାଣୀ ଗୁଡ଼ିକ ତା'ର କଥାବସ୍ତୁ, ପରିବେଷଣ ଓ ପ୍ରକାଶଭଙ୍ଗୀ ଦୃଷ୍ଟିରୁ ବିଭିନ୍ନ ରୂପ, ରଙ୍ଗ ଓ ପ୍ରକାରରେ ଉଭାସିତ । ଯଥା- ପୌରାଣିକ କଥା ଓ କାହାଣୀ, କିମ୍ବଦନ୍ତୀମୂଳକ କଥା-କାହାଣୀ, ଲୌକିକକଥା ଓ କାହାଣୀ, ଅଲୌକିକ ବା ଐନ୍ଦ୍ରଜାଲିକ କଥା-କାହାଣୀ ଅସୁର-ଅସୁରୁଣୀ କାହାଣୀ, ଭୂତ-ପ୍ରେତ କାହାଣୀ, ପଶୁ-ପକ୍ଷୀ କଥା, ଗୁଣୀ-ମାଲ୍ୟାଣୀ କଥା ରାଜକୁମାର-ରାଜକୁମାରୀ କାହାଣୀ, ସାଧବପୁଅ କଥା, ସନ୍ଥ ଓ ଭକ୍ତକଥା, ବିଭିନ୍ନ ଓଷା- ବ୍ରତ କଥା ଇତ୍ୟାଦି । ଏହା ସହିତ ଲୋକ ପ୍ରଚଳିତ ବିଭିନ୍ନ ପ୍ରବାଦ-ପ୍ରବଚନ ଗୁଡ଼ିକୁ ମଧ୍ୟ ଲୋକକଥାକୁ ଅନ୍ତର୍ଭୁକ୍ତ କରାଯାଇପାରେ । ପ୍ରବାଦ ଗୁଡ଼ିକ ମୁଖ୍ୟତଃ କିମ୍ବଦନ୍ତୀ ଅବା ଜନଶ୍ରୁତି ଆଧାରିତ । ଯେପରିକି ଓଡ଼ିଆରେ ପ୍ରବାଦଟିଏ ଅଛି-

"ଭଲା ରାମଚଣ୍ଡୀ ଭଲାରେ
କଳାପାହାଡ଼କୁ ବାଟରେ ବସାଇ
ଭଲା ପାଣି ଆଣି ଗଲାରେ ।"

ଏଠାରେ କଳାପାହାଡ଼ର ଓଡ଼ିଶାର ହିନ୍ଦୁ ମନ୍ଦିର ଓ ଦେବ-ଦେବୀ ମାନଙ୍କୁ ଭାଙ୍ଗି-ନଷ୍ଟ କରିବା ପ୍ରସଙ୍ଗ ସୂଚିତ ହୋଇଛି । କଳାପାହାଡ଼ ଦେବୀ ରାମଚଣ୍ଡୀ ମନ୍ଦିରକୁ ଭାଙ୍ଗିବା ଅଭିପ୍ରାୟରେ ଆସିବା ବେଳେ ଦେବୀ ରାମଚଣ୍ଡୀ ଚତୁରତାର ସହିତ ଦାସୀର ଛଦ୍ମବେଶ ଧାରଣ କରି ମନ୍ଦରରୁ ବାହାରି ଯାଇଛନ୍ତି । ଏହି କିମ୍ବଦନ୍ତୀଟି ଏହି ପ୍ରବାଦଟିରେ ସୂଚିତ ହୋଇଛି । ସେହିପରି 'ଉଁଆସୀ କନ୍ୟାକୁ ଅଳପେଇଷାବର' ଅବା 'ଧୃତରାଷ୍ଟ୍ରକୁ କନ୍ୟା

ନାହିଁ କି' ଗାନ୍ଧାରୀଙ୍କୁ ବର ନାହିଁ', ଝିମିଟି ଖେଳରୁ ମହାଭାରତ, ଶ୍ରୀକୃଷ୍ଣ ଗଧପାଦ ଧରିବା, କର୍ଣ୍ଣ ମଲେ ପାଞ୍ଚ- ଅର୍ଜ୍ଜୁନ ମଲେ ପାଞ୍ଚ, ଗଙ୍ଗା ବୋଇଲେ- ଥିବି- ଗାଙ୍ଗୀ ବୋଇଲେ ଯିବି, କୀଚକ ବାହୁ ବଳେ ବିରାଟ ରଜା - ପ୍ରଭୃତି ଅନେକ ପ୍ରବାଦ ଆମ ଲୋକଜୀବନ ଓ ଲୋକସାହିତ୍ୟରେ ପ୍ରଚଳିତ । ପ୍ରବାଦ ପରି ପ୍ରବଚନ ଗୁଡ଼ିକ ମଧ୍ୟ ଆମ ପ୍ରାଚୀନ ଲୋକସାହିତ୍ୟର ଏକ ଅମୂଲ୍ୟ ସଂପଦ । ଏହି ପ୍ରବଚନକୁ ମୁଖ୍ୟତଃ ପ୍ରକୃତବଚନ, ନ୍ୟାୟବଚନ, ଆପ୍ତବାକ୍ୟ ବା ଆର୍ଷବାକ୍ୟ କୁହାଯାଇଥାଏ । ଏହି ପ୍ରବଚନ ବା ଆପ୍ତବଚନ ଗୁଡ଼ିକର ସାର୍ବଜନୀନ ଓ ସର୍ବକାଳୀନ ଆବେଦନ, ମୂଲ୍ୟବୋଧ ରହିଛି । ଓଡ଼ିଆରେ ପ୍ରଚଳିତ କେତେକ ପ୍ରବଚନ ହେଲା- ଚିହ୍ନା ବ୍ରାହ୍ମଣର ପଇତା ଲୋଡ଼ା ନାହିଁ, ଦଣ୍ଡିବା ଶକ୍ତି ଯା'ର ଥାଇ- ସେ ପୁଣି କ୍ଷମା ଆଚରଇ, ତପେବର ନୋହିଲେ କୋପେବର, ଅଧର୍ମବିତ୍ତ ବଢ଼େ ବହୁତ-ଗଲାବେଳେ ଯାଏ ମୂଳ ସହିତ, ଅଭାବେ ସ୍ୱଭାବ ନଷ୍ଟ ପାପଧନ ପ୍ରାୟଶ୍ଚିତ୍ତରେ ଯାଏ, ନାହିଁ ମାମୁଁ ଠାରୁ କଣାମାମୁଁ ଭଲ, ଚିନ୍ତାଖାଏ ଗଣ୍ଡି- ଲୁଣଖାଏ ହାଣ୍ଡି ଇତ୍ୟାଦି । ଏହି ପ୍ରବଚନ ଗୁଡ଼ିକ ମୁଖ୍ୟତଃ ଉପଦେଶାତ୍ମକ ହିତ ଓ ନୀତିବାଣୀ ମୂଳକ । ଯାହାକି' ମଣିଷକୁ ସଂସ୍କାରିତ, ପରିମାର୍ଜିତ ଓ ନୀତିନିଷ୍ଠ କରାଇବାରେ ସହାୟକ ହୁଏ ।

**ଲୋକନାଟକ :**

ଲୋକସାହିତ୍ୟର ଏକ ବଳିଷ୍ଠ ବିଭାବ ଲୋକନାଟକ । ଲୋକଗୀତ, ଲୋକନୃତ୍ୟ ଓ ଲୋକାଭିନୟର ଏକ ସମନ୍ୱିତ ରୂପ ହେଉଛି- ଲୋକନାଟକ । ଏହି ଲୋକନାଟକ ଲୋକବୃତ୍ତି, ଲୋକଚିତ୍ତ ଓ ଲୋକମାନସକୁ ନାଟ୍ୟରସରେ ତଲ୍ଲୀନ କରାଇ ତନ୍ମୟ ଓ ଆନନ୍ଦ ବିଭୋରିତ କରିଥାଏ । ଯେଉଁଥି ପାଇଁ 'ନାଟ୍ୟଶାସ୍ତ୍ର'ର ପ୍ରଣେତା ଆଚାର୍ଯ୍ୟ ଭରତମୁନି ନାଟକକୁ ଲୋକବୃତ୍ତିର ଅନୁକରଣ ଭାବରେ ଗ୍ରହଣ କରିଛନ୍ତି । ଭରତଙ୍କ ଭାଷାରେ-

"ଲୋକବୃତ୍ତନୁକରଣଂ ନାଟ୍ୟମେତନ୍ମୟା କୃତମ୍"

ଏହି ଦୃଷ୍ଟିରୁ ଦେଖିଲେ- ଲୋକନାଟକ ହେଉଛି- ସମୂହ ଜନସାଧାରଣଙ୍କର ନାଟକ, ଲୋକସମୂହ ପାଇଁ ଉଦ୍ଦିଷ୍ଟ ବା ଅଭିପ୍ରେତ ନାଟକ । ଏଥିରେ ଲୋକ ସମୁଦାୟର ସୁଖ-ଦୁଃଖ, ଆଶା- ଆକାଙ୍‌କ୍ଷା, ଧର୍ମ-ଧାରଣା, ରୀତି-ନୀତି, ଚାଲି-ଚଳନ, ଆଚାର-ବିଚାର, ପରମ୍ପରା, ଆଦର୍ଶ ଓ ବିଶ୍ୱାସବୋଧ ଫୁଟି ଉଠିଥାଏ । ଯେଉଁଥି ପାଇଁ ଆଚାର୍ଯ୍ୟ ଧନଞ୍ଜୟ ତାଙ୍କ 'ଦଶରୂପକ'ରେ ଏହି ଅର୍ଥରେ କହିଛନ୍ତି–

"ଅବସ୍ଥା ଯାହି ଲୋକସ୍ୟ ସୁଖଦୁଃଖ ସମୁଦ୍ଭବଃ
ନାନା ପୁରୁଷ ସଂଚରା ନାଟକେ ସତ୍ୱ ବେଦିହ ।"

ମୋଟାମୋଟି ଭାବରେ ବ୍ୟକ୍ତି ଜୀବନର ସକଳଭାବ, ଆବେଗ ଓ ସ୍ୱପ୍ନ ସମ୍ଭାବନା ଗୀତ, ନୃତ୍ୟ ଓ ଅଭିନୟର ଦେହଳୀ ଦେଇ ଉକୁଟି ଉଠିଥାଏ ।

**ଲୋକନାଟକର ବୈଶିଷ୍ଟ୍ୟ ବା ଆଭିମୁଖ୍ୟ :**

ଓଡ଼ିଆ ଲୋକନାଟରର କେତେଗୁଡ଼ିଏ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ବା ଆଭିମୁଖ୍ୟ ରହିଛି । ସେଗୁଡ଼ିକ ହେଲା-

୧. ମୁକ୍ତାଙ୍ଗନର ଚତୁର୍ମୁଖୀ ରଙ୍ଗମଞ୍ଚରେ ଅଭିନୀତ ହୁଏ । ଏହା ସହିତ କଣ୍ଢେଇନାଟ, ରାବଣଛାୟା ପରି କେତେକ ନାଟକ ଏକମୁଖୀ ରଙ୍ଗମଞ୍ଚରେ ଅଭିନୀତ ହୋଇଥାଏ ।

୨. ଏଗୁଡ଼ିକ ଗୋଟିଏ ସେଟ୍‌ରେ ଅଭିନୀତ ହୁଏ । ଅଙ୍କସଜ୍ଜା ଓ ଦୃଶ୍ୟବିଭାଜନ ପ୍ରାୟ ନଥାଏ ।

୩. ସଙ୍ଗୀତ ମାଧ୍ୟମରେ ନାଟକୀୟ କଥାବସ୍ତୁ ଓ ଚରିତ୍ରମାନଙ୍କ ସମ୍ବନ୍ଧରେ ସୂଚନା ପ୍ରଦାନ କରାଯାଏ ।

୪. ଲୋକନାଟକ ଗୁଡ଼ିକ ମୁଖ୍ୟତଃ ସଙ୍ଗୀତ ବହୁଳ । ସଙ୍ଗୀତ ମାଧ୍ୟମରେ ନାଟକୀୟ ଚରିତ୍ର ମାନେ ନିଜର ମନୋଭାବକୁ ବ୍ୟକ୍ତ କରିଥାନ୍ତି ।

୫. ସଂଳାପ ଉଭୟ ଗଦ୍ୟ ଏବଂ ପଦ୍ୟାତ୍ମକ ।

୬. ହାସ୍ୟରସ ଓ ବ୍ୟଙ୍ଗବିଦ୍ରୂପ ମାଧ୍ୟମରେ ବ୍ୟକ୍ତି ଚରିତ୍ର ଓ ସାମାଜିକ ତ୍ରୁଟି- ବିଚ୍ୟୁତିର ଚିତ୍ର ପ୍ରକଟନ କରାଯାଇଥାଏ ।

୭. ଏହି ଲୋକନାଟକ ଗୁଡ଼ିକ ମୁଖ୍ୟତଃ ପୌରାଣିକ ଚେତନା ଓ ଧାର୍ମିକ ଭାବନା ଉପରେ ପ୍ରତିଷ୍ଠିତ ।

୮. ଏହି ଲୋକନାଟକ ଗୁଡ଼ିକ ମୁଖ୍ୟତଃ ବିଭିନ୍ନ ଧର୍ମାନୁଷ୍ଠାନ ଓ ଧର୍ମୀୟଉତ୍ସବ ମାନଙ୍କରେ ଅଭିନୀତ ହୋଇଥାଏ ।

୯. ଏହି ଲୋକନାଟକରେ ବିଭିନ୍ନ ଲୋକବାଦ୍ୟର ଉପଯୋଗ କରାଯାଇଥାଏ । ସେଗୁଡ଼ିକ ହେଲା- ଢୋଲ, ମାଦଳ, ନିଶାଣ, ଟମକ, ମର୍ଦ୍ଦଳ, ମୃଦଙ୍ଗ, ନାଗରା, ଘୁମୁର, ମହୁରୀ, ଡମ୍ବରୁ, ବୀଣା, କେନ୍ଦରା, ଏକତାରା, ତୂରୀ, ବଂଶୀ, ଶିଙ୍ଗା, କାହାଳୀ, ଧୂନ୍‌କେଲୀ, ଝାଞ୍ଜି, ଗିନି, କଂସାଳ, କାଠ ତାଳି, ଘଣ୍ଟି, ଘଣ୍ଟା ଇତ୍ୟାଦି ।

୧୦. ଏହି ଲୋକନାଟକ ଗୁଡ଼ିକର ମୂଳଲକ୍ଷ୍ୟ ହେଲା- ଲୋକଶିକ୍ଷା, ନୀତିଶିକ୍ଷା ରସ ପରିବେଷଣ ଓ ଆନନ୍ଦପ୍ରଦାନ ।

## ଲୋକନାଟକର ପ୍ରକାର ଭେଦ :

ମୁଖ୍ୟତଃ ଦୁଇ ପ୍ରକାରର ।

୧- ଗୀତନୃତ୍ୟ ସର୍ବସ୍ୱ, ସଂଳାପବିହୀନ ଲୋକନାଟକ ।

୨- ସଂଳାପଯୁକ୍ତ, ସଙ୍ଗୀତବହୁଳ, ନାଟକୀୟ ଆଙ୍ଗିକ ସର୍ବସ୍ୱ ଲୋକନାଟକ ।

ପ୍ରଥମ ଶ୍ରେଣୀର ଲୋକନାଟକ ଗୁଡ଼ିକ ହେଲା- ଦଣ୍ଡ ନାଚ, ବଣ୍ଡି ନାଚ, ପାଲା, ଦାସକାଠିଆ, ଛଉନାଚ, ଘୋଡ଼ାନାଚ, ପାଟୁଆନାଚ, କଣ୍ଢେଇନାଚ, ରାବଣଛାୟା, ଗୋଟିପୁଅ ନାଚ, ଦେଶୀଆ ନାଟ, ଧୁଡୁକୀ ନାଟ, ଘୁମୁରା ନାଟ, କରମାନାଚ, ପାଇକ ନାଚ, ବାଘନାଚ, ଗୋପାଳଓଗାଳ, ମାଙ୍କଡ଼ନାଚ, ସଉରାନାଚ, ରଣପାନାଚ, ବାଣ୍ଡି ବୋତଲ, ରସରକେଲୀ ନୃତ୍ୟ, ତାଲଖାଇ ନୃତ୍ୟ, ଜାମୁଡାଲୀ ନୃତ୍ୟ, କେଳା-କେଳୋଉଣୀ ନୃତ୍ୟ, ଶବର-ଶବରୁଣୀ ଡାପ ନୃତ୍ୟ, ଚଢ଼େୟା- ଚଢ଼େୟାଣୀ ନୃତ୍ୟ ଇତ୍ୟାଦି । ମାତ୍ର ଦ୍ୱିତୀୟ ଶ୍ରେଣୀର ସଂଳାପଯୁକ୍ତ ସଙ୍ଗୀତବହୁଳ ନାଟକୀୟ ଆଙ୍ଗିକ ସର୍ବସ୍ୱ ଲୋକ ନାଟକ ଗୁଡ଼ିକ ହେଲା - ଲୀଳା (ରାମଲୀଳା, କୃଷ୍ଣଲୀଳା, ରାହସଲୀଳା, ଭରତଲୀଳା), ସୁଆଙ୍ଗ, ତାମସା, ଗୀତିନାଟ୍ୟ, ଗୀତାଭିନୟ, ଓ ଯାତ୍ରାନାଟକ ।

## ଦଣ୍ଡନାଟ :

ଓଡ଼ିଆ ଲୋକନାଟକରେ ଦଣ୍ଡନାଟର ସ୍ଥାନ ସ୍ୱତନ୍ତ୍ର । ଏହା ଗୀତ-ନୃତ୍ୟ ସର୍ବସ୍ୱ ସଂଳାପ ବିହୀନ ଲୋକନାଟକ । ଏହା ମୁକ୍ତ ରଙ୍ଗମଞ୍ଚ ବା ଚତୁର୍ମୁଖୀ ରଙ୍ଗମଞ୍ଚରେ ଅଭିନୀତ ହୋଇଥାଏ । ଏହି ନାଟକରେ ଶିବ- ପାର୍ବତୀଙ୍କର ପ୍ରତୀକ ରୂପେ ଏକ ବାଡ଼ି ବା ଦଣ୍ଡକୁ ପୂଜାର୍ଚ୍ଚନା କରାଯାଇଥାଏ । ତେଣୁ ଏହାର ନାମ ଦଣ୍ଡନାଟ । ପୁନଶ୍ଚ ଏହି ନାଟକର ବ୍ରତଧାରୀମାନେ କଠୋର ବ୍ରତ, ଉପବାସ ନୀତି-ନିୟମର ସହିତ ପାଳନ କରିଥାନ୍ତି । ଓଡ଼ିଶାର ଗଣଦେବତା ଭଗବାନ ଶିବଙ୍କ ପ୍ରତି ଅଟଳ ଶ୍ରଦ୍ଧା ଓ ଅଖଣ୍ଡ ଭକ୍ତି ଭାବନା ନେଇ ଅଥବା ମାନସିକ ଇଚ୍ଛାର ପରିପୂରଣ ପାଇଁ ବ୍ରତଧାରୀ ମାନେ କୃଚ୍ଛ୍ରସାଧନା କରିଥାନ୍ତି । ତେଣୁ ଦଣ୍ଡକୁ ଏକ ଉପାସନା ରୂପେ ମଧ୍ୟ ଗ୍ରହଣ କରାଯାଇପାରେ । ବ୍ରତଧାରୀ ମାନେ ପ୍ରଭାତରେ ଶୋଭାଯାତ୍ରା ବା ପଟୁଆରରେ ବାହାରି ମଧ୍ୟାହ୍ନରେ ଧୂଳିଦଣ୍ଡ, ସାୟଂକାଳରେ ପାଣିଦଣ୍ଡ ଏବଂ ମଧ୍ୟରାତ୍ରରେ ଷୋଳସୁଆଙ୍ଗର ଅଭିନୟ କରିଥାନ୍ତି । ଏହି ଦଣ୍ଡନାଟର ମୁଖ୍ୟ ଆରାଧ୍ୟ ଦେବତା- ଭଗବାନ ଶିବ । ଏହି ନାଟକର ମୁଖ୍ୟ ଲୋକ ଚରିତ୍ର ହେଲା- ବୀଣାକାର ବା ବୀଣା କାରିଆ । ବୀଣା କାରିଆ ହସ୍ତରେ ଏକ ବୀଣାଧାରଣ କରି ଶିବ- ପାର୍ବତୀଙ୍କର ବନ୍ଦନା ପୂର୍ବକ ନୃତ୍ୟ ପରିବେଷଣ କରିଥାନ୍ତି । ଏହାପରେ ନବଛଇଳା,

ଚଢ଼େୟା-ଚଢ଼େୟାଣୀ, କେଳା-କେଳୋଉଣୀ, ଯୋଗୀ-ଯୋଗୀଆଣି ଏବଂ ବାଇଧନ ଆଦି ଚରିତ୍ର ମଞ୍ଚକୁ ଆସି ଅଭିନୟ କରିଥାନ୍ତି ।

**ବଣ୍ଡିନାଚ :**

ଏହା ଏକ ପ୍ରାଚୀନ ଲୋକନାଟକ । ସମାଜର ନିମ୍ନ ଜାତିର ଲୋକମାନେ ମୁଖ୍ୟତଃ ହରିଜନ ସଂପ୍ରଦାୟର ଲୋକମାନେ ଏହି ନୃତ୍ୟ ପରିବେଷଣ କରିଥାନ୍ତି । ଏହି ନାଟକର ବିଷୟ ବସ୍ତୁ ମୁଖ୍ୟତଃ ପୌରାଣିକ । ଏହି ନାଟର ମୁଖ୍ୟ ଚରିତ୍ରମାନେ ହେଲେ- କୃଷ୍ଣ, ରାଧା, ଚନ୍ଦ୍ରସେଣା, ଚନ୍ଦ୍ରସେଣାର ଭଉଣୀ ସୁନ୍ଦରୀ, ବିଧବା ବଣ୍ଡି, ଗୋପୀ ଏବଂ କୃଷ୍ଣସଖା ମଧୁମଙ୍ଗଳ ପ୍ରମୁଖ । ଏହି ନାଟକର ମୁଖ୍ୟବାଦ୍ୟ ଢୋଲ । ଚନ୍ଦ୍ରସେଣାଙ୍କ ପତ୍ନୀ ରାଧାଙ୍କ ନିକଟକୁ କୃଷ୍ଣଙ୍କର ଗୋପନ ଅଭିସାର, ବିଧବା ବଣ୍ଡିର କୃଷ୍ଣଙ୍କ ପ୍ରତି ପ୍ରୀତି ନିବେଦନ, ଚନ୍ଦ୍ରସେଣା ଭଉଣୀର ଅନ୍ତର୍ଧ୍ୟାନ, ଲତା କୁଞ୍ଜାରେ ରାଧାକୃଷ୍ଣଙ୍କର ମିଳନ, ରାଧା-କୃଷ୍ଣଙ୍କର ଅପ୍ରାକୃତିକ ମିଳନରେ ବିମୋହିତ ହୋଇ ବଣ୍ଡିର ଉଦ୍ଧାମ ନୃତ୍ୟ ପରିବେଷଣ ଆଦି ବିଷୟ ଏହାର ଅଭିନୟର ମୁଖ୍ୟ ବିଷୟ ବସ୍ତୁ । ଏହି ବଣ୍ଡିନାଟର ଭାଷା ଓ ପରିବେଷଣ ଶୈଳୀ ଅତି ଗ୍ରାମୀଣ, କଥିତ, ଅପଭ୍ରଷ୍ଟ ଓ ବିକୃତ ଭାବରେ କରାଯାଇଥାଏ । ବଣ୍ଡିନୃତ୍ୟରେ ବିକୃତ, ଅପଭ୍ରଷ୍ଟ ଭାଷାର ଏକ ନିଛକ ଉଦାହରଣ ହେଲା-

"ସୁନ୍ଦରୀ ମୁଣିକି ମୁର
କେଉଁ ଦେଶ ଚୁର, ନେଇ ଗୁଲାରେ
ସୁନ୍ଦୁରୀ ମୁଣିକୁ ମୁର ।"

ଏହି ଭାଷା ଗୁଡ଼ିକ ଗାଉଁଲୀ, ମୁର୍ଖ ଏବଂ ଅଶିକ୍ଷିତ ମାନଙ୍କର ଭାଷା । ଏହି ନାଟର ମୁଖ୍ୟ ଲକ୍ଷ୍ୟ ହେଲା - ରସ ପରିବେଷଣ ଓ ଆନନ୍ଦ ପ୍ରଦାନ ।

ମୁଖ୍ୟତଃ ଢେଙ୍କାନାଳ ଜିଲ୍ଲାରେ ଏହି ବଣ୍ଡି ନୃତ୍ୟ ବିଶେଷ ଭାବରେ ପରିବେଷିତ ହେଉଥିଲା । ବର୍ତ୍ତମାନ ଏହି ଲୋକକଳା ବିଲୁପ୍ତ ପ୍ରାୟ ।

**ପାଲା :**

ପାଲା ହେଉଛି- ଉଭୟ ହିନ୍ଦୁ ଏବଂ ମୁସଲ୍‌ମାନ ସଂସ୍କୃତି ଓ ଧର୍ମୀୟ ଭାବନାର ଏକ ସମନ୍ୱିତ କଳାତ୍ମକ ରୂପ ।

ଏହି ପାଲାରେ 'ସତ୍ୟପୀର'ଙ୍କର ଉପାସନା କରାଯାଏ । ହିନ୍ଦୁ ଧର୍ମର 'ସତ୍ୟ' ଏବଂ ମୁସଲମାନମାନଙ୍କର 'ପୀର' ଏହି ଶବ୍ଦଦ୍ୱୟର ମିଳନରୁ 'ସତ୍ୟପୀର' ଉପାସନାର ସୃଷ୍ଟି । ସତ୍ୟପୀରଙ୍କର ଆରାଧନା ସହିତ ପାଲାରେ ପଞ୍ଚଦେବତା ଯଥା- ଗଣେଷ, ନାରାୟଣ,

ଶିବ, ଅମ୍ବିକା ଏବଂ ଭାସ୍କରଙ୍କ ପୂଜାର୍ଚ୍ଚନା ଓ ବନ୍ଦନା କରାଯାଏ । ଏହି ପାଲା ମୁଖ୍ୟତଃ ୨ ପ୍ରକାର । ବସିପାଲା ବା ବୈଠକୀପାଲା ଏବଂ ଠିଆପାଲା । ବସିପାଲା ଗୃହକର୍ତ୍ତାଙ୍କ ଘର ଭିତର ଅଗଣାରେ କରାଯାଇଥାଏ । ଏଥିରେ କବି କର୍ଣ୍ଣପୁରଙ୍କ ରଚିତ ଷୋଳପାଲାର ଗାନ ଓ କୀର୍ତ୍ତନ ହୁଏ । ମାତ୍ର- ଠିଆପାଲା ଗୃହ ବାହାରେ ମୁକ୍ତାକାଶ ରଙ୍ଗ ମଞ୍ଚ ତଳେ ଅଭିନୀତ ହୁଏ । ଏହି ପାଲାରେ ମୁଖ୍ୟତଃ 'ଛ' ଜଣ କଳାକାର ଅଭିନୟ କରନ୍ତି । ଜଣେ ଗାୟକ, ଜଣେ ମୃଦଙ୍ଗ ବାଦକ, ଦୁଇଜଣ ଶ୍ରୀପାଳିଆ ଓ ଦୁଇ ଜଣ ପଛ ପାଳିଆପାଲା ପରିବେଷଣ କରନ୍ତି । ପାଲାର ମୁଖ୍ୟ ବାଦ୍ୟ- ମୃଦଙ୍ଗ, କରତାଳ ଏବଂ ଗିନି । ଗାୟକ ପ୍ରଥମେ ଭଗବାନ ସତ୍ୟପୀରଙ୍କର ଚାମର ସେବା କବି ମଙ୍ଗଳା ଚରଣରେ ଦେବ-ଦେବୀଙ୍କର ବନ୍ଦନା କରି ବିଷୟବସ୍ତୁର ଅୟମାରମ୍ଭ କରନ୍ତି । ଗାୟକ ପାଲାରେ ବିଷୟବସ୍ତୁ ସହିତ ବେଦ, ବେଦାନ୍ତ ଉପନିଷଦ ଓ ମଧ୍ୟଯୁଗୀୟ ଆଳଂକାରିକ କାବ୍ୟ ମାନଙ୍କରୁ ବିଭିନ୍ନ ଛାନ୍ଦ ଓ ପଦମାନ ଗାୟନ କରି ତା'ର ତାତ୍ତ୍ୱିକ ବ୍ୟାଖ୍ୟା ଓ ବିଶ୍ଳେଷଣ କରିଥାନ୍ତି । ଗାୟକ ଶାସ୍ତ୍ରୀୟ ଶୈଳୀରେ ମୃଦଙ୍ଗ ବାଦନ କରି ନିଜର କଳା-କୁଶଳତା ପ୍ରଦର୍ଶନ କରନ୍ତି । ପାଳିଆମାନେ ଗାୟକଙ୍କ ସହିତ ଗୀତର ପାଳି ଧରନ୍ତି ଓ ମଝିରେ ମଝିରେ ହାସ୍ୟ ଉଦ୍ଦୀପକ କଥାମାନ କହି, ଗୀତପାଇ ନୃତ୍ୟ ପରିବେଷଣ କରି ଦର୍ଶକମାନଙ୍କର ମନେରଞ୍ଜନ କରିଥାନ୍ତି । ଗାୟକ ନିଜର ଗଭୀର ପାଣ୍ଡିତ୍ୟ ଓ ପ୍ରାଚ୍ୟର୍ଯ୍ୟ ଜ୍ଞାନର ପ୍ରଦର୍ଶନ ନିମନ୍ତେ ବିଭିନ୍ନ କାବ୍ୟଶାସ୍ତ୍ର ସୁରୁ ଛାନ୍ଦମାନ ଉଦ୍ଧାର କରି ତା'ର ରସମୟ ଓ ଆଳଂକାରିକ ବ୍ୟାଖ୍ୟା ଆଦି ବୌଦ୍ଧିକ ଆଲୋଚନା କରିଥାନ୍ତି । ତେଣୁ ପାଲା ମୁଖ୍ୟତଃ ଧର୍ମୀୟ ଭାବନା, ମନୋରଞ୍ଜନ ଏବଂ ବୌଦ୍ଧିକ ଜ୍ଞାନର ପରିଚାର୍ଯ୍ୟା ପାଇଁ ଉଦ୍ଦିଷ୍ଟ ହୋଇଥାଏ ।

## ଦାସ କାଠିଆ :

ରାମଭକ୍ତି ଉପାସନାର ଏହା ଏକ ମନୋଜ୍ଞ ଲୋକକଳା । ଏଥିରେ ରାମାୟଣର କଥାବସ୍ତୁ ଉପସ୍ଥାପନ ସହିତ ଭଗବାନ ରାମଙ୍କର ମହିମା ଓ ତାଙ୍କ ମର୍ଯ୍ୟାଦାର ପ୍ରକଟନ ହୋଇଥାଏ । ଏହା ମୁକ୍ତାକାଶ ରଙ୍ଗମଞ୍ଚରେ ଅଭିନୀତ ହୁଏ । ଏଥିରେ ଜଣେ ଗାୟକ ଓ ଜଣେ ପାଳିଆ ଚରିତ୍ର ରହିଥାନ୍ତି । ଏଥିରେ ଦୁଇଖଣ୍ଡି ଶୁଷ୍କ କାଠର ପଟାକୁ ବାଦ୍ୟ ଯନ୍ତ୍ର ରୂପେ ବ୍ୟବହାର କରାଯାଇଥାଏ । ଗାୟକ ପ୍ରଥମେ ମଙ୍ଗଳାଚରଣ ଗାନ କରି ତତ୍ପରେ ବିଷୟବସ୍ତୁର ଅୟମାରମ୍ଭ କରିଥାନ୍ତି । ଏହାର ଗାୟକ ମଧ ବିଭିନ୍ନ କାବ୍ୟଗ୍ରନ୍ଥ ମାନଙ୍କରୁ ଛାନ୍ଦ, ଚଉପଦୀ ଆଦି ଗାନ କରି ନିଜର ପାଣ୍ଡିତ୍ୟ ଓ ଦକ୍ଷତା ପ୍ରଦର୍ଶନ କରିଥାନ୍ତି । ଏହି ଦାସକାଠିଆର ପ୍ରତି ସଙ୍ଗୀତର ଶେଷରେ- 'ଜୟ ରାମ ହେ, ନବୀନ ସୁନ୍ଦର ଘନଶ୍ୟାମ ହେ' ଅଥବା 'ଜୟ ରାମ ଯେ, ନବଦୂର୍ବଦଳ ଘନଶ୍ୟାମଯେ'- ପଦକୁ ଘୋଷାରୂପେ

ବ୍ୟବହାର କରାଯାଇଥାଏ । ଗାୟକ ନିଜେ ଭିନ୍ନ ଭିନ୍ନ ଚରିତ୍ରରେ ଅଭିନୟ କରି ବିଭିନ୍ନ ରସର ପରିବେଶ ସୃଷ୍ଟିକରି ଦର୍ଶକମାନଙ୍କୁ ଆନନ୍ଦ ପ୍ରଦାନ କରିଥାନ୍ତି । ଏହି ଦାସ କାଠିଆରେ ମୁଖ୍ୟତଃ ବୀର ରସ ଓ ଶୃଙ୍ଗାର ରସହ ପରିବେଷଣ କରାଯାଇଥାଏ ।

**ଛଉନାଚ :**

ଏହା ଏକ ଶାସ୍ତ୍ରୀୟ ନୃତ୍ୟ । ଏହା ମୁକ୍ତାକାଶ ରଙ୍ଗମଞ୍ଚରେ ଅଭିନୀତ ହୁଏ । ସାଧାରଣତଃ ଚୈତ୍ରପର୍ବ ପାଳନ ଅବସରରେ ଏହି ନୃତ୍ୟ ପରିବେଷଣ କରାଯାଏ । ଏହି ନୃତ୍ୟର ନୃତ୍ୟକାରୀମାନେ ମୁହଁରେ ବିଭିନ୍ନ ଆକୃତିର ମୁଖାମାନ ପରିଧାନ କରି ନୃତ୍ୟ କରିଥାନ୍ତି । ଏହି ନୃତ୍ୟରେ ଯୁଦ୍ଧ, ସାହସିକତା ଏବଂ ବୀରତ୍ୱର ଗାଥା ପ୍ରଦର୍ଶନ ହୋଇଥାଏ । ବୀର ରସାତ୍ମକ ଉଦ୍ଦାମ ସଙ୍ଗୀତର ତାଳେ ତାଳେ ନୃତ୍ୟକାରିମାନେ ଯୁଦ୍ଧ କୌଶଳ, ଯୁଦ୍ଧ ଅଭିନୟ ଓ ନୃତ୍ୟ ପରିବେଷଣ କରିଥାନ୍ତି । ଉଦ୍ଦାମ ନୃତ୍ୟ ସହିତ ଏଥିରେ ଲାସ୍ୟନୃତ୍ୟର କୋମଳ, ଆକର୍ଷଣୀୟ ଅଙ୍ଗଭଙ୍ଗୀର ଛଟାମାନ ମଧ୍ୟ ପ୍ରଦର୍ଶିତ ହୋଇଥାଏ । କଳାକାର ମାନେ ଧୁମୁସା, ଢୋଲ, ମହୁରୀ ଆଦି ବାଦ୍ୟର ତାଳେ ତାଳେ ସୁଦୃଶ୍ୟ, ଆକର୍ଷଣୀୟ ପୋଷାକମାନ ପରିଧାନ କରି ଶାସ୍ତ୍ରୀୟ ଶୈଳୀରେ ଏହି ଲୋକନୃତ୍ୟ ପରିବେଷଣ କରିଥାନ୍ତି । ଏଥିରେ ବିଭିନ୍ନ ରାଗ, ରାଗିଣୀ, ଲୟ, ତାଳ, ମାନ ଆଦିର ମନୋଜ୍ଞ ସମାବେଶ ଘଟିଥାଏ । ଓଡ଼ିଶାର ମୟୁରଭଞ୍ଜ ଅଞ୍ଚଳରେ ଏହି ନୃତ୍ୟ ବିଶେଷ ଭାବରେ ଅଭିନୀତ ହୁଏ ।

**ଦେଶୀଆନାଟ :**

ଏହା କୋରାପୁଟ ଅଞ୍ଚଳର ଏକ ଲୋକପ୍ରିୟ ଲୋକନୃତ୍ୟ । ଆଦିବାସୀ ଦେଶୀୟା ପରଜାମାନେ ମୁଖ୍ୟତଃ ଏହି ନୃତ୍ୟ ପରିବେଷଣ କରିଥାନ୍ତି । ଏହା ମୁକ୍ତ ରଙ୍ଗମଞ୍ଚରେ ମୁଖ୍ୟତଃ ଦେବ ମନ୍ଦିର ସମ୍ମୁଖ ସ୍ଥଳମାନଙ୍କରେ ଅଭିନୀତ ହୋଇଥାଏ । ଦେଶୀଆ ପରଜା ମାନଙ୍କର କଥିତ ଦେଶୀଆ ଭାଷା ଅବା ଗ୍ରାମ୍ୟ ଭାଷାରେ ଏହା ଅଭିନୀତ ହୁଏ । ଏହାର ସଂଳାପ ଗୁଡ଼ିକ ସରଳ, ସାବଲୀଳ ଏବଂ ଗୀତମୟ । ତେଣୁ ଏହା ଗୀତିନାଟ୍ୟ ପର୍ଯ୍ୟାୟ ଭୁକ୍ତ କରାଯାଇପାରେ ।

ଏହି ନାଟର ଚରିତ୍ରମାନେ ଛଉନାଚ ପରି ବିଭିନ୍ନ ମୁଖା ପରିଧାନ କରି ନୃତ୍ୟ ପରିବେଷଣ କରିଥାନ୍ତି । ଏହି ମୁଖା ଗୁଡ଼ିକ ମୁଖ୍ୟତଃ ବିଭିନ୍ନ ଦେବ-ଦେବୀ, ଅସୁର-ଅସୁରୁଣୀ ଓ ପଶୁ-ପକ୍ଷୀ ମାନଙ୍କର ପ୍ରତିକୃତି ମାତ୍ର । ଏହି ଦେଶୀଆନାଟର ବିଷୟ ବସ୍ତୁ ଗୁଡ଼ିକ ପୌରାଣିକ-ଆଖ୍ୟାନ, ଆଖ୍ୟାୟିକା ଓ କିମ୍ବଦନ୍ତୀ ଉପରେ ଆଧାରିତ । ଏହି ନାଟକର ଚରିତ୍ରମାନେ କେବଳ ପୁରୁଷ ଏମାନେ ନାରୀ ଭୂମିକାରେ ମଧ୍ୟ ଅଭିନୟ କରିଥାନ୍ତି ।

ଏହି ନାଟକର ଚରିତ୍ରମାନେ ସମୂହ ଗାନ ସହିତ ନାଚି-ନାଚି ଅଭିନୟ ପ୍ରଦର୍ଶନ କରିଥାନ୍ତି । ପ୍ରଥମେ ନାଟକର ସୂତ୍ରଧର ମଞ୍ଚ ଉପରକୁ ଆସି ମଙ୍ଗଳାଚରଣ ଗାନ ପୂର୍ବକ ବିଷୟ ବସ୍ତୁର ସୂଚନା ପ୍ରଦାନ କରିଥାଏ, ତା'ପରେ ବିଷୟ ବସ୍ତୁ ଅୟମାରମ୍ଭ ହୁଏ । ଏହି ନାଟକର ମୂଳଲକ୍ଷ୍ୟ - ମନୋରଞ୍ଜନ, ଲୋକ- ଶିକ୍ଷା ଓ ସାଂପ୍ରଦାୟିକ ସଦ୍‌ଭାବନା ପ୍ରତିଷ୍ଠା ।

## ଘୋଡ଼ାନାଚ :

ଘୋଡ଼ାନାଚ ହେଉଛି କୈବର୍ତ୍ତ ସଂପ୍ରଦାୟର ଏକ ମନୋଜ୍ଞ ଲୋକନୃତ୍ୟ । ଚୈତ୍ର-ପୂର୍ଣ୍ଣିମାଠାରୁ ଦୀର୍ଘ ଆଠଦିନ ଧରି ଏହି ନୃତ୍ୟର ପରିବେଷଣ ହୁଏ । ଏହି ନୃତ୍ୟରେ କଳାକାର ମାନେ ବାଉଁଶବତା, ଅଖା ବା କଳା-ଧଳା ରଙ୍ଗର କପଡ଼ାରେ ନିର୍ମିତ ଘୋଡ଼ାର ଏକ ସୁଦୃଶ୍ୟ ପିଞ୍ଜରାକୁ ଧରି ନୃତ୍ୟ ପରିବେଷଣ କରିଥାନ୍ତି । ଚୈତ୍ର ପର୍ବରେ ଏହି ନାଟକ ଅନୁଷ୍ଠିତ ହେଉଥିବାରୁ ଏହାକୁ 'ଚଇତି ଘୋଡ଼ାନାଟ' ମଧ୍ୟ କୁହାଯାଏ । ଏହି ନାଟକର ମୁଖ୍ୟ ଆରାଧ୍ୟା ଦେବୀ ହେଲେ- ଶକ୍ତି ସ୍ୱରୂପିଣୀ ଦେବୀ 'ବାସେଳୀ' ।

ଏହି ନାଟକ ମୁକ୍ତାକାଶ ରଙ୍ଗମଞ୍ଚରେ ଅଭିନୀତି ହେବା ସହିତ କଳାକାର ମାନେ ଶୋଭାଯାତ୍ରାରେ ଯାଇ ବିଭିନ୍ନ ସ୍ଥାନରେ ଏହି ନାଟ ପ୍ରଦର୍ଶିତ କରିଥାନ୍ତି । ଏଥିରେ ଦୁଇଜଣ କିମ୍ୱା ଚାରିଜଣ କଳାକାର ନୃତ୍ୟ ପରିବେଷଣ କରିଥାନ୍ତି । ଏଥିରେ ଗାୟକ, ପାଳିଆ, ରାଉତ-ରାଉତାଣୀ ଆଦି ଚରିତ୍ର ରହିଥାନ୍ତି । ଗାୟକ ପ୍ରଥମେ ପାଲା ରୀତିରେ ଦେବୀ ବନ୍ଦନା ପୂର୍ବକ ବିଷୟବସ୍ତୁର ଅବତାରଣା କରନ୍ତି । ଢୋଲ- ମହୁରୀର ତାଳେ ତାଳେ ଘୋଡ଼ାକୁ ଧରି ଏହି ନୃତ୍ୟକାରୀମାନେ ନୃତ୍ୟ ପରିବେଷଣ କରିଥାନ୍ତି । ଏହି ନାଟକର ମୂଳଲକ୍ଷ୍ୟ - ଆଧ୍ୟାତ୍ମିକ ଭାବନାର ପରିପ୍ରସାର, ସାଂପ୍ରଦାୟିକ ସଦ୍‌ଭାବନା, ଲୋକଶିକ୍ଷା ଓ ମନୋରଞ୍ଜନ ।

## କଣ୍ଢେଇ ନାଟ :

ଓଡ଼ିଆ ଲୋକନାଟ୍ୟ ପରମ୍ପରାରେ କଣ୍ଢେଇନାଟ (ସଖୀନାଟ)ର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଏହି ନାଟ ମୁଖ୍ୟତଃ ଏକମୁଖୀ ରଙ୍ଗମଞ୍ଚରେ ଅଭିନୀତ ହୁଏ । ଏହାର ଚରିତ୍ରମାନେ ହେଲେ- ନିର୍ଜୀବ କଣ୍ଢେଇ । ମଞ୍ଚର ସମ୍ମୁଖ ଭାଗର ପଛ କାନ୍ଥରେ ଏକ ଧଳାପର୍ଦ୍ଦା ଟଙ୍ଗା ଯାଇଥାଏ । ସୂତ୍ରଧର ବା କଣ୍ଢେଇ ନଚାଳି ମଞ୍ଚର ଅନ୍ତରାଳରେ ରହି ନିର୍ଜୀବ କଣ୍ଢେଇମାନଙ୍କ ଦେହରେ ସଂଯୋଗ ହୋଇଥିବା ସୂକ୍ଷ୍ମ ରେଶମ ସୂତାର ଡୋରୀ ଧରି ଅଙ୍ଗୁଳି ଚାଳନା ମାଧ୍ୟମରେ କଣ୍ଢେଇମାନଙ୍କୁ ଅଭିନୟ କରାଇଥାନ୍ତି । କାଠ, ରବର

ଅବା କପଡ଼ାରେ ନିର୍ମିତ ଏହି କଣ୍ଢେଇମାନଙ୍କୁ ଚରିତ୍ର ଉପଯୋଗୀ ସୁନ୍ଦର ପୋଷାକ ମାନ ପରିଧାନ କରି ଦିଆଯାଇଥାଏ । ବାଦ୍ୟ, ସଙ୍ଗୀତ ଓ ସଂଳାପର ତାଳେ ତାଳେ କଣ୍ଢେଇମାନେ ନୃତ୍ୟ ଓ ଅଭିନୟ କଳା ପ୍ରଦର୍ଶନ କରିଥାନ୍ତି । ଏହି ନୃତ୍ୟ ମୁଖ୍ୟତଃ ବ୍ୟବସାୟିକ ଭିତ୍ତିରେ ବିଭିନ୍ନ ସ୍ଥାନରେ ପରିବେଷଣ କରାଯାଇଥାଏ । ଏହି କଣ୍ଢେଇ ନାଚର ଅନ୍ୟ ଏକ ରୂପ ହେଲା- ଛାୟା କଣ୍ଢେଇ ବା ରାବଣଛାୟା । ଏଥିରେ ମଧ୍ୟ ମଞ୍ଚରେ ଏକ ଧଳାପର୍ଦ୍ଦା ଟଙ୍ଗା ଯାଇଥାଏ । ପର୍ଦ୍ଦାର ପଶ୍ଚାତ୍ ଭାଗରେ ଏକ ଦୀପର ଆଲୋକ ଜଳାଇ ଦିଆଯାଏ । ସୂତ୍ରଧର ହରିଣ ଚମଡ଼ାରେ ନିର୍ମିତ କଣ୍ଢେଇ ମାନଙ୍କୁ ଏଭଳି ଶୈଳୀର ନଚାନ୍ତି ଯେ, କଣ୍ଢେଇ ମାନଙ୍କର ଛାୟା କେବଳ ପର୍ଦ୍ଦାରେ ଦେଖାଯାଏ । ଏହି ଛାୟା ଗୁଡ଼ିକର ନୃତ୍ୟ ଓ ଅଭିନୟ ଦେଖି ଦର୍ଶକ ବିମୋହିତ ହୁଅନ୍ତି । ମୁଖ୍ୟତଃ ପୌରାଣିକ କଥାବସ୍ତୁ ଗୁଡ଼ିକୁ ଏହି କଣ୍ଢେଇମାନଙ୍କର ଛାୟାନୃତ୍ୟ ମାଧ୍ୟମରେ ପରିବେଷଣ କରାଯାଇଥାଏ । ସଙ୍ଗୀତ, ଛନ୍ଦ ଓ ବାଦ୍ୟର ତାଳେ ତାଳେ ଏହି ଛାୟାଗୁଡ଼ିକ ନୃତ୍ୟ କରିଥାନ୍ତି ।

### ଗୋଟିପୁଅ ନାଚ :

ଉତ୍କଳୀୟ ସଂସ୍କୃତିରେ ଗଢ଼ି ଉଠିଥିବା ମାହାରୀ ନୃତ୍ୟ ପରଂପରାର ଏକ ଅଭିନବ ନାଟ୍ୟରୂପ ହେଉଛି- ଗୋଟିପୁଅ ନୃତ୍ୟ । ମାହାରୀ ନୃତ୍ୟରେ ନାରୀ ନୃତ୍ୟାଭିନୟ ପ୍ରଦର୍ଶିତ କରିବା ସ୍ଥଳେ ଏଥିରେ ପୁରୁଷମାନେ ନାରୀ ବେଶରେ ସୁ-ସଜ୍ଜିତ ହୋଇ ନୃତ୍ୟ ପରିବେଷଣ କରିଥାନ୍ତି । ଏହି ଗୋଟିପୁଅ ନାଚରେ ମୁଖ୍ୟତଃ ରାଧା- କୃଷ୍ଣଙ୍କର ବିଭିନ୍ନ ଲୀଳା ପ୍ରଦର୍ଶିତ ହୋଇଥାଏ । ଏହି ନାଚ ମୁଖ୍ୟତଃ ରାଜା- ମହାରାଜା ମାନଙ୍କର ରାଜଦରବାର ମାନଙ୍କରେ ପରିବେଷିତ ହେଉଥିଲା । ଏହା ଏକ ଶାସ୍ତ୍ରୀୟ ନୃତ୍ୟ । ଲାସ୍ୟ ସହିତ ବିଭିନ୍ନ ଅଙ୍ଗଭଙ୍ଗୀର ପ୍ରଦର୍ଶନ ଏଥିରେ କରାଯାଇଥାଏ । ଏହି ନାଚ ମୁଖତଃ ଆଦିରସ ବା ଶୃଙ୍ଗାର ରସ କୈନ୍ଦ୍ରିକ । ଏହାର ମୁଖ୍ୟ ବାଦ୍ୟ ହେଲା- ଗିନି, ମୃଦଙ୍ଗ, କଂସାଳ, ପଖୌଜ ।

### ଡାଲଖାଇ ନୃତ୍ୟ :

ଏହି ନୃତ୍ୟ ମୁକ୍ତାକାଶ ରଙ୍ଗମଞ୍ଚରେ ଅଭିନୀତ ହୁଏ । ଏହି ନୃତ୍ୟର ମୁଖ୍ୟ ଆରାଧ୍ୟା ଦେବୀ- ବନବୃକ୍ଷଡାଳରେ ବାସ କରୁଥିବା ବନଦେବୀ ଡାଲଖାଇ ବା ଦେବୀ ଦୁର୍ଗା । ସାଧାରଣତଃ ଆଶ୍ୱିନ ମାସର ମହାଷ୍ଟମୀ ଠାରୁ ଦଶହରା ପର୍ଯ୍ୟନ୍ତ ତିନିଦିନ ଧରି ଦେବୀ ଦୁର୍ଗାଙ୍କ ପୂଜାର୍ଚ୍ଚନା ସହିତ ଏହି ନୃତ୍ୟ ପରିବେଷଣ କରାଯାଇଥାଏ । ଆଦିବାସୀ ସଂପ୍ରଦାୟର ତରୁଣ-ତରୁଣୀ ମାନେ କଷ୍ଟା ବା ପାଟଶାଢ଼ୀ ପିନ୍ଧି ମଥାରେ ବନ୍ୟ ପୁଷ୍ପ- ପତ୍ରର ସମ୍ଭାର ଖୋସି ହାତକୁହାତ ଧରି ଅର୍ଦ୍ଧ ବୃତ୍ତାକାର ହୋଇ ଝୁଲି ଝୁଲି ଡାଲଖାଇ ଗୀତ ଗାଇ ଏହି ନୃତ୍ୟ ପରିବେଷଣ କରିଥାନ୍ତି । ଏହି ଡାଲଖାଇ ଗୀତର ପଦଗୁଡ଼ିକ ବେଶ୍ ରସାଳ, ମଧୁର ଏବଂ ପ୍ରେମିଳ । ଡାଲଖାଇ ଗୀତର ଏକ ସୁନ୍ଦର ପଦ ହେଲା

-ଡାଲ୍ ଖାଇବୋ-
କୃଷ୍ଣ ଯାଇଥିଲେ ଯମୁନାକୂଳ
ରାଧା ଯାଇଥିଲେ ଅନିବେ ଜଳ
ଧରିନେଲା ହାତ କଲା କହ୍ନାଇ
ଛାଡ୍ ବୋଇଲେ ସେ ଛାଡ଼ଇ ନାହିଁ
ଦେହ ତା'ର କଲା, କଲା
ଡାଲ୍ ଖାଇବୋ- ।

ଏହି ଡାଲଖାଇ ନୃତ୍ୟ ଲୋକପ୍ରିୟତା ଯୋଗୁଁ ପଶ୍ଚିମ ଓଡ଼ିଶାର ଏକ ଗଣନୃତ୍ୟରେ ପରିଣତ ହୋଇପାରିଛି ।

**ରସରକେଲୀ ନୃତ୍ୟ :**

ଡାଲ୍‌ଖାଇ ନୃତ୍ୟର ଏକ ପରିବର୍ତ୍ତିତ ଓ ପରିମାର୍ଜିତ ରୂପ ରୂପେ ରସର୍ କୋଲୀକୁ ଗ୍ରହଣ କରାଯାଇପାରେ । ମୁଖ୍ୟତଃ କୌଣସି ଉତ୍ସବ ବା ଅନୁଷ୍ଠାନ ମାନଙ୍କରେ ଏକ ଖୋଲା ଆକାଶ ତଳେ ତରୁଣ- ତରୁଣୀମାନେ ଏହି ନୃତ୍ୟ ପରିବେଷଣ କରିଥାନ୍ତି । ଢୋଲ୍, ମାଦଳ୍, ମହୁରୀର ତାଳେ ତାଳେ ରସରକେଲୀ ଗୀତର ଅପୂର୍ବ ମୂର୍ଚ୍ଛନା ଓ ରସମୟ ଆବେଦନ ଭିତରେ ତରୁଣ-ତରୁଣୀମାନେ ନୃତ୍ୟ ଓ ଅଭିନୟ ପ୍ରଦର୍ଶନ କରିଥାନ୍ତି । ଏହି ଗୀତ ଗୁଡ଼ିକ ମଧ୍ୟ ଆଦିରସାତ୍ମକ ଓ ଶୃଙ୍ଗାରୀଭାବ କୈନ୍ଦ୍ରିକ । ତରୁଣ- ତରୁଣୀ ପ୍ରାଣର ଯୁବ-ଯୁବା ସୁଲଭ ଉଦ୍ଦାମ ଆବେଗ, ରସୋଚ୍ଛଳ ପ୍ରେମୋଚ୍ଛ୍ୱାସ, ଜୀବନର ରଙ୍ଗୀନ ସ୍ୱପ୍ନର ଆବେଗ ଏହି ଗୀତ ଓ ନୃତ୍ୟ ଭିତରେ ପ୍ରକଟିତ ହୋଇଥାଏ । ରସରକୋଲୀ ଗୀତିର ଏକ ସୁନ୍ଦର, ସରସ ପଙ୍‌କ୍ତି ହେଲା-

"ରସକୁ ରସିଆ କିରେ ଧାନଫୁଲ କସିଆ
ମନ୍ କଲେ ଘେନିଦେମି ଗୋରୀ ସୁନାର ଫାସିଆ
ସୁନାର ଫାସିଆ ନନି ହଜିନସି ଯିବା
ଅଣ୍ଠାକୁ ଗୁନ୍‌ଟୀ ଦେଲେ ଛଇଳ
ଯୁଗେ ଯୁଗେ ଯିବା
ମନ୍ ରସିଆରେ...... ।"

## ଚଢ଼େୟା-ଚଢ଼େୟାଣୀ ନୃତ୍ୟ :

ଏହା ମୁକ୍ତାକାଶ ତଳେ ମୁକ୍ତ ରଙ୍ଗମଞ୍ଚରେ ଅଭିନୀତ ହୁଏ । କେଳା ବା ଶବର ସଂପ୍ରଦାୟର ଲୋକମାନେ ଏହି ନୃତ୍ୟ ପରିବେଷଣ କରିଥାନ୍ତି । ଏହାକୁ କେଳା-କେଳୋଉଣୀ ବା ଶବର-ଶବରୁଣୀ ନାଟ ଭାବରେ ମଧ୍ୟ ଉପସ୍ଥାପିତ କରାଯାଇଥାଏ । ଏହି ନାଟକର ଚରିତ୍ରମାନେ ପ୍ରଶ୍ନୋତ୍ତର ଶୈଳୀରେ ସଙ୍ଗୀତ ମାଧ୍ୟମରେ ନୃତ୍ୟ ପରିବେଷଣ କରିଥାନ୍ତି । ଏହି ନାଟକର କଥାବସ୍ତୁ ସାମାଜିକ ଏବଂ ସ୍ଥଳ ବିଶେଷରେ ପୌରାଣିକ ମଧ୍ୟ । ଚଢ଼େୟା-ଚଢ଼େୟାଣୀ ସହ ଜଣେ ବାଦ୍ୟକାର ଏବଂ ଜଣେ ହାସ୍ୟକାର ଚରିତ୍ର ଥାନ୍ତି । ସମାଜ ଜୀବନର ବାସ୍ତବ ଚିତ୍ରକୁ ଏମାନେ ବ୍ୟଙ୍ଗ- ହାସ୍ୟ ଛଳରେ ପ୍ରକାଶ କରିଥାନ୍ତି । ଏହି ଚଢ଼େୟା-ଚଢ଼େୟାଣୀ ବା ଶବର- ଶବରୁଣୀ ନୃତ୍ୟ ଦଣ୍ଡନାଟରେ ମଧ୍ୟ ପରିବେଷିତ ହୋଇଥାଏ ।

ଏହି ସବୁ ଲୋକନାଟକ ଗୁଡ଼ିକ ସହିତ ସଂଳାପଯୁକ୍ତ, ନାଟକୀୟ ଆଙ୍ଗିକ ସର୍ବସ୍ୱ ଲୋକନାଟକ ଗୁଡ଼ିକ ଓଡ଼ିଆ ଲୋକସାହିତ୍ୟରେ ଏକ ଏକ ମହାନ୍ ସୃଷ୍ଟି ସଂପଦ । ଏଗୁଡ଼ିକ ଭିତରୁ ଲୀଳା, ସୁଆଙ୍ଗ, ଗୀତିନାଟ୍ୟ, ଗୀତାଭିନୟ ତାମସା ଓ ଯାତ୍ରା ନାଟକର ପ୍ରମୁଖ ସ୍ଥାନ ରହିଛି ।

## ଲୀଳା :

ଲୀଳା ହେଉଛି- ଭଗବାନଙ୍କର ବିଭିନ୍ନ ଅବତାର ଗୁଡ଼ିକର ନାଟ୍ୟରୂପ । ଯୁଗେ ଯୁଗେ ପରଂବ୍ରହ୍ମ ଭଗବାନ ଧରାରେ ଅଧର୍ମ, ଅସତ୍ୟ, ଅନ୍ୟାୟ ଓ ପାପର ବିନାଶ ପାଇଁ ନ୍ୟାୟ, ସତ୍ୟ, ଧର୍ମ ଓ ପୁଣ୍ୟର ପ୍ରତିଷ୍ଠା ପାଇଁ ସର୍ବୋପରି ଆଧ୍ୟାତ୍ମିକ ଜ୍ଞାନର ବିତରଣ ପାଇଁ ବିଭିନ୍ନ ରୂପ ପରିଗ୍ରହ ବା ଅବତାର ଗ୍ରହଣ କରି 'ଲୀଳା' ପ୍ରକାଶ କରିଥାନ୍ତି । ଭଗବାନଙ୍କର ବିଭିନ୍ନ ଅବତାରର ବିଭିନ୍ନ ଲୀଳାକୁ ନାଟ୍ୟରୂପ ଦିଆଯାଇ ଲୀଳାରେ ତାକୁ ପ୍ରଦର୍ଶିତ କରାଯାଇଥାଏ । ଏହି ଲୀଳା ଗୁଡ଼ିକ ଗୀତି ଧର୍ମୀ ଏବଂ ସଂଳାପ ଯୁକ୍ତ । ଏହାର ମୂଳଲକ୍ଷ୍ୟ ହେଲା- ଆଧ୍ୟାତ୍ମିକ ଚେତନା ଓ ଭକ୍ତିଭାବନାର ପ୍ରକଟନ ସହିତ ଲୋକଶିକ୍ଷା, ନୀତିଶିକ୍ଷା ଓ ଆନନ୍ଦ ପ୍ରଦାନ । ଓଡ଼ିଆ ଭାଷାରେ ବିବିଧ ପ୍ରକାର ଲୀଳା ଦୃଷ୍ଟି ଗୋଚର ହୁଏ । ସେଗୁଡ଼ିକ ହେଲା- ରାମଲୀଳା, କୃଷ୍ଣଲୀଳା, ଗୋପଲୀଳା ରାସଲୀଳା ବା ରାହାସ ଲୀଳା, ଭାରତଲୀଳା ଇତ୍ୟାଦି ।

## ରାମଲୀଳା :

ଭଗବାନ ବିଷ୍ଣୁଙ୍କର ରାମ ଅବତାରର ବିଭିନ୍ନ ଲୀଳା ଯଥା- ବାଲ୍ୟ, ପୌଗଣ୍ଡ, ଯୌବନକାଳୀନ ଲୀଳା ସହିତ ରାମଙ୍କର ଅପୂର୍ବ ମହିମାର ପ୍ରଖ୍ୟାପନ ରାମଲୀଳାରେ

କରାଯାଇଛି । ରାମନବମୀର ତିଥି ଠାରୁ ଆରମ୍ଭ ହୋଇ ଏହି ଲୀଳା ଦୀର୍ଘ ଦିନ ।ରି ପ୍ରଦର୍ଶିତ ହୋଇଥାଏ । ରାମଙ୍କର ଜନ୍ମଠାରୁ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ରାମାୟଣର ସମସ୍ତ ଘଟଣାବଳୀକୁ ଏହି ଲୀଳାରେ ନାଟ୍ୟରୂପ ଦିଆଯାଏ । ବିଶ୍ୱନାଥ ଖୁଣ୍ଟିଆଙ୍କର 'ବିଚିତ୍ର ରାମାୟଣଲୀଳା' ଓ ବୈଶ୍ୟ ସଦାଶିବଙ୍କର 'ଶ୍ରୀରାମଲୀଳା' ଓଡ଼ିଆ ଲୀଳା ସାହିତ୍ୟର ଏକ ମହାନ୍ କୃତି ।

**କୃଷ୍ଣଲୀଳା :**

ଏଥିରେ ଭଗବାନ ବିଷ୍ଣୁଙ୍କର କୃଷ୍ଣାବତାର କଥାକୁ ନାଟ୍ୟରୂପ ଦିଆଯାଇଥାଏ । ଏହି କୃଷ୍ଣଲୀଳା ମୁଖ୍ୟତଃ ଦୋଳଉତ୍ସବ, ଜନ୍ମାଷ୍ଟମୀ, ନନ୍ଦୋତ୍ସବ ଆଦିରେ ଅଭିନୀତ ହୋଇଥାଏ । ଏହି ଲୀଳାରେ କୃଷ୍ଣଙ୍କର ଉଭୟ ମାନବ ରୂପ ଓ ଦେବତ୍ୱ ରୂପର ବିଭିନ୍ନ ଲୀଳା ପ୍ରଦର୍ଶିତ ହୋଇଥାଏ । ଏଥିରେ କୃଷ୍ଣଙ୍କର ଗୋପଲୀଳା, ମଥୁରାଲୀଳା, ଦ୍ୱାରକାଲୀଳାର ବର୍ଣ୍ଣନା ସହିତ ରାଧା ଓ ଗୋପାଙ୍ଗନା ମାନଙ୍କ ସହିତ ବିଭିନ୍ନ ପ୍ରେମଲୀଳା ବା ରାସଲୀଳାର ବର୍ଣ୍ଣନା ହୋଇଥାଏ । 'ଗୋପଲୀଳା'ରେ କୃଷ୍ଣଙ୍କର ବାଲ୍ୟ ଓ ପୌଗଣ୍ଡ କାଳୀନ ଯାବତୀୟ ବାଲ୍ୟଚପଳତା ଓ ଅଲୌକିକ କାର୍ଯ୍ୟାବଳୀର ପ୍ରଦର୍ଶିତ ହୁଏ । 'ମଥୁରାଲୀଳା' କଂସ କାରାଗାରରେ ଦେବକୀଙ୍କର ଅଷ୍ଟମ ଗର୍ଭରୁ କୃଷ୍ଣଙ୍କର ଜନ୍ମ ବୃତ୍ତାନ୍ତ, ଗୋପପୁରଗମନ ଓ ପରବର୍ତ୍ତୀ ସମୟରେ ଧନୁଯାତ୍ରା ସମୟରେ ମଥୁରା ଗମନ, କଂସ ବଧ ଆଦି ପ୍ରଦର୍ଶିତ ହୁଏ । ମୁଖ୍ୟତଃ କାର୍ତ୍ତିକପୂର୍ଣ୍ଣିମାରେ ରାଧା- କୃଷ୍ଣଙ୍କର ବିଭିନ୍ନ ପ୍ରେମଲୀଳାର ଅଭିନୟ ହୁଏ । ଯେଉଁଥି ପାଇଁ କାର୍ତ୍ତିକ ପୂର୍ଣ୍ଣିମାକୁ ରାସ ପୂର୍ଣ୍ଣିମା କୁହାଯାଏ । ସେହିପରି ଦୋଳପୂର୍ଣ୍ଣିମାରେ ବସନ୍ତ-ଉତ୍ସବ ଓ କୃଷ୍ଣଙ୍କର ବସନ୍ତ ରାସର ଲୀଳା ପ୍ରଦର୍ଶିତ ହୋଇଥାଏ । ଏହି କୃଷ୍ଣଲୀଳାରେ ରାଧା- କୃଷ୍ଣ, ଲଳିତା- ବିଶାଖାଦି ଅଷ୍ଟସଖୀ, ସୁଦାମା- ମଧୁମଙ୍ଗଳ ଆଦି ଅଷ୍ଟସଖା, ବୃନ୍ଦାବତୀ ଆଦି ଚରିତ୍ରମାନେ ସ୍ଥାନ ପାଇଥାନ୍ତି । ଓଡ଼ିଆ ଭାଷାର ପ୍ରମୁଖ କୃଷ୍ଣଲୀଳାତ୍ମକ ରଚନା ଗୁଡ଼ିକ ହେଲା- ଜଗନ୍ନାଥ ଦାସଙ୍କର ରାସ ପଞ୍ଚାଧ୍ୟାୟୀ, ବନମାଳୀ ଦାସଙ୍କର- ବନମାଳୀ ରାହାସ, ଲୋକନାଥ ରାଉତ୍‌ରାୟଙ୍କର- ବସନ୍ତରାସ, କିଶୋର ଚନ୍ଦ୍ର ରାଜେନ୍ଦ୍ର ଦେବଙ୍କର- ବସନ୍ତରାହାସ, ବିଶ୍ୱମ୍ଭର ନରେନ୍ଦ୍ର ଦେବଙ୍କର- ଶରଦ ରାହାସ, ବାବାଜୀ ବୈଷ୍ଣବ ଚରଣ ଦାସଙ୍କର- ରାସଲୀଳା, ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କର ରାଧା-କୃଷ୍ଣ ପ୍ରେମଲୀଳା ପ୍ରମୁଖ ।

**ଭାରତ ଲୀଳା :**

ଏହା ମୁକ୍ତାକାଶ ତଳେ ମୁକ୍ତ ରଙ୍ଗମଞ୍ଚରେ ଅଭିନୀତ ହୁଏ । ଏହି ଭାରତ ଲୀଳାରେ ମହାଭାରତର କଥାବସ୍ତୁକୁ ମୁଖ୍ୟତଃ ସୁଭଦ୍ରାହରଣ ପ୍ରସଙ୍ଗକୁ ନାଟ୍ୟରୂପ ଦିଆଯାଇଥାଏ ।

ଏହି ଭାରତ ଲୀଳା ନୃତ୍ୟ - ସଙ୍ଗୀତ ବହୁଳ ଏବଂ ସଂଳାପ ଯୁକ୍ତ । ଏହି ଲୀଳାର ମୁଖ୍ୟ ଚରିତ୍ରମାନେ ହେଲେ- କୃଷ୍ଣ, ଅର୍ଜ୍ଜୁନ ଏବଂ ସୁଭଦ୍ରା । ଏଥିରେ ହାସ୍ୟରସର ପରିବେଷଣ ପାଇଁ ଜଣେ ହାସ୍ୟ ଚରିତ୍ର 'ଦୂଆରୀ'ର ଅବତାରଣା କରାଯାଇଥାଏ । ତେଣୁ ଏହାକୁ 'ଦୂଆରୀ ନାଟ' ମଧ୍ୟ କୁହାଯାଏ ।

**ସୁଆଙ୍ଗ :**

ସୁଆଙ୍ଗ ହେଉଛି ଏକ ଆଦିମତମ ଲୋକନାଟକ । ଏହା ଏକ ହାସ୍ୟରସାତ୍ମକ ଲଘୁ ନାଟକ । ଏହା ସଂପୂର୍ଣ୍ଣ ରୂପେ ଗୀତିମୟ ଓ ସଙ୍ଗୀତ ଧର୍ମୀ । ପୁରାଣର କଥାବସ୍ତୁ ସହିତ ସମାଜ ଜୀବନର ବିଭିନ୍ନ ତୃଟି-ବିଚ୍ୟୁତିର ଚିତ୍ର ଏଥିରେ ପ୍ରଦର୍ଶିତ ହୋଇଥାଏ । ସୁଆଙ୍ଗର ମୁଖ୍ୟ ଚରିତ୍ର ହେଲେ- ଯୋଗୀ- ଯୋଗିଆଣୀ । ସାରଳା ଦାସଙ୍କ 'ଲକ୍ଷ୍ମୀ ନାରାୟଣୀ ବଚନିକା' ଏବଂ ବଳରାମ ଦାସଙ୍କର 'ଲକ୍ଷ୍ମ ପୁରାଣ'କୁ ସୁଆଙ୍ଗ ରଚନାର ଆଦି ସୃଷ୍ଟି ରୂପେ ଗ୍ରହଣ କରାଯାଇପାରେ । ପରବର୍ତ୍ତୀ ସମୟରେ ରଚିତ ସୁଆଙ୍ଗ ରଚନା ଗୁଡ଼ିକ ହେଲା- ବନ୍ଧୁନାୟକଙ୍କ ସୁଲୋଚନା ହରଣ, ଭିକାରୀ ନାୟକଙ୍କ ଚନ୍ଦ୍ରାବତୀ ହରଣ, ତ୍ରିଲୋଚନ ରାୟଗୁରୁଙ୍କର - ବଳି-ବାମନ ସୁଆଙ୍ଗ, ଧ୍ରୁବଚରଣ ବାରିକଙ୍କର ଲକ୍ଷ୍ମୀ ଲାଖବିନ୍ଧା ସୁଆଙ୍ଗ, ବୈଷ୍ଣବ ପାଣିଙ୍କର ଜଳନ୍ଧର ବଧ ସୁଆଙ୍ଗ୍ ଇତ୍ୟାଦି । ଏହି ସୁଆଙ୍ଗ ଗୁଡ଼ିକର ମୂଳଲକ୍ଷ୍ୟ- ଲୋକଶିକ୍ଷା, ଚିତ୍ତ- ବିନୋଦନ ଏବଂ ସମାଜ ସଂସ୍କାର ।

**ତାମସା :**

ଏହା ଏକ ଧର୍ମ ସମନ୍ୱୟାତ୍ମକ ଲୋକ-କଳା । ହିନ୍ଦୁ ଓ ମୁସଲମାନ ଉଭୟ ଧର୍ମ, ସଂସ୍କୃତି ଓ ଜୀବନଚର୍ଯ୍ୟାର ସମନ୍ୱିତ ରୂପଚିତ୍ର ଏଥିରେ ଫୁଟି ଉଠିଥାଏ । ଏହା ଏକ ବ୍ୟଙ୍ଗ -ହାସ୍ୟ ଧର୍ମୀ ଲଘୁନାଟକ । ଏହାର ସଂଳାପ ଗଦ୍ୟଧର୍ମୀ । ଏହି ତାମସା ସାଧାରଣତଃ ଏକ ମଞ୍ଚ ବା ପେଣ୍ଡାଲ୍‌ରେ ଅଭିନୀତ ହୋଇଥାଏ । ବିଭିନ୍ନ ପ୍ରକାରର ତାମସା ପରିଲକ୍ଷିତ ହେଲେ ହେଁ; ଓଡ଼ିଶାର ଏକ ଲୋକପ୍ରିୟ ତାମସା ହେଲା- 'ମୋଗଲ୍ ତାମସା' । ଏହାର ମୂଳ ଅଭିନୟ ସ୍ଥଳ ହେଉଛି- ଭଦ୍ରଖ ଅଞ୍ଚଳ । ଏହା ପ୍ରାୟତଃ ଚୈତ୍ରମାସରେ ଅଭିନୀତ ହୋଇଥାଏ । ଏହି ତାମସାରେ ତତ୍କାଳୀନ ମୋଗଲ, ଆଫ୍‌ଗାନ ଶାସନ ଅଧୀକୃତ ଓଡ଼ିଶାର ଦୁର୍ଗତି, ଦୁଃସ୍ଥିତି, ପଠାଣ ଶାସକମାନଙ୍କର ବିଳାସମୟ ଜୀବନଚିତ୍ର, ଚାରିତ୍ରିକ ସ୍ଖଳନ, ନୈତିକ ଅଧୋପତନ ଓ ସାମାଜିକ ତୃଟି - ବିଚ୍ୟୁତିର ଚିତ୍ର ହାସ୍ୟ, ବ୍ୟଙ୍ଗ ମାଧ୍ୟମରେ ପ୍ରଦର୍ଶିତ ହୋଇଥାଏ । ଏହି ତାମସାରେ ଉଭୟ ହିନ୍ଦୁ ଓ ମୁସଲ୍‌ମାନ ସଂପ୍ରଦାୟର ଲୋକମାନେ ଅଭିନୟ କରିଥାନ୍ତି । ତାମସାର ମୁଖ୍ୟ ଚରିତ୍ର ମାନେ ହେଲେ- ମୀର୍ଜାସାହେବ, ଜମିଦାର, ଚୋପଦାର, ଝାଡୁବାଲା, ପଙ୍ଖାବାଲୀ, ହୁକାବାଲା, ଦହିବାଲି ଇତ୍ୟାଦି, ଢୋଲ,

କାହାଳୀ, ମହୁରୀ ଆଦି ବାଦ୍ୟଯନ୍ତ୍ରର ମଧୁର ଶବ୍ଦର ତାଳେ ତାଳେ ପ୍ରଥମେ ମୀର୍ଜା ସାହେବ ମଞ୍ଚ ଉପରକୁ ଆସି ଏକ ସୁଉଚ୍ଚ ସିଂହାସନରେ ଉପବେଶନ କରନ୍ତି । ତା'ପରେ ବିଭିନ୍ନ ସେବାକାରୀ ଚରିତ୍ରମାନେ ଆସି ମୀର୍ଜା ସାହେବଙ୍କର ବିଭିନ୍ନ ସେବା ଓ ଚିତ୍ତ ବିନୋଦନ କରିଥାନ୍ତି । ପରିଶେଷରେ ଦହିବାଲି ଗଉଡୁଣୀ ଆସେ । ମୀର୍ଜାସାହେବ ଦହିବାଲିକୁ ପ୍ରେମ ନିବେଦନ କରନ୍ତି । ମାତ୍ର- ଦହିବାଲି ପ୍ରେମକୁ ପ୍ରତ୍ୟାଖ୍ୟାନ କରି ଲାଜରେ ପଳାୟନ କରେ । ଏହି ଦୃଶ୍ୟପରେ ତାମସାର ପରିସମାପ୍ତି ଘଟେ । ମୋଟାମୋଟି ଭାବରେ ମୁସଲମାନ ଶାସକମାନଙ୍କର ଚାରିତ୍ରିକ ସ୍ଖଳନ ଓ ନୈତିକ ଅଧୋଗତିର ଚିତ୍ରକୁ ଏଥିରେ ହାସ୍ୟ-ବ୍ୟଙ୍ଗ ଛନ୍ଦରେ ପ୍ରକଟନ କରାଯାଇଥାଏ ।

## ଗୀତାଭିନୟ ଓ ଗୀତିନାଟ୍ୟ :

ଗୀତାଭିନୟର ସୃଷ୍ଟି ପ୍ରାଚୀନ ନୁହେଁ, ଅର୍ବାଚୀନ । ପ୍ରାୟତଃ ଉନ୍ନବିଂଶ ଶତାବ୍ଦୀ ବେଳକୁ ଏହି ଗୀତାଭିନୟର ସୃଷ୍ଟି ହୋଇଥିଲା । ବୈଷ୍ଣବୀୟ ଧର୍ମ-ଦର୍ଶନ ଓ ଭକ୍ତି ଭାବନାର ପ୍ରଚାର, ପ୍ରସାର ଉପଲକ୍ଷ୍ୟରେ ଏହି ଗୀତାଭିନୟର ସୃଷ୍ଟି ହୋଇଥିଲା । ସାଧାରଣ ଜନତାଙ୍କ ପାଖରେ ଅଭିନୟ ମାଧ୍ୟମରେ କୃଷ୍ଣକଥା ଓ ମହାତ୍ମ୍ୟକୁ ପହଞ୍ଚାଇବା ପାଇଁ ଗ୍ରାମାଞ୍ଚଳର ମୁକ୍ତାକାଶ ତଳେ ଗୀତାଭିନୟର ଅଭିନୟ କରାଯାଉଥିଲା । ଏହି ଗୀତାଭିନୟ ହେଉଛି- ସଂଳାପବିହୀନ ଅଭିନୟ । ଗୀତ, ଛନ୍ଦ ଓ ସଙ୍ଗୀତର ତାଳେ ତାଳେ ଚରିତ୍ର ମାନେ ଅଭିନୟ କରିଥାନ୍ତି । ଏହି ଗୀତାଭିନୟ ଗୁଡ଼ିକ ମୁଖ୍ୟତଃ ଲୀଳାଧର୍ମୀ । ବିଭିନ୍ନ ପୌରାଣିକ କଥା ବା ଆଖ୍ୟାନ ହିଁ ଏହାର ବିଷୟ ବସ୍ତୁ । ଏହି ଗୀତାଭିନୟରେ ମୁଖ୍ୟତଃ ଢୋଲକ, ମୃଦଙ୍ଗ, ଝାଞ୍ଜି, ଗିନି, ଝୁମୁକା, ସାହାନାଇ, ମହୁରୀ ଆଦି ବାଦ୍ୟଯନ୍ତ୍ର ବ୍ୟବହୃତ ହୋଇଥାଏ । ଏହି ଗୀତାଭିନୟର ମୂଳ ଲକ୍ଷ୍ୟ ଥିଲା- ବୈଷ୍ଣବଧର୍ମ ଓ କୃଷ୍ଣକଥାର ପ୍ରଚାର, ଶାନ୍ତି ଓ ଭକ୍ତି ଭାବନାର ପ୍ରତିଷ୍ଠା, ସାମାଜିକ ସଦ୍‌ଭାବ, ଲୋକଶିକ୍ଷା ଓ ଆନନ୍ଦ ପ୍ରଦାନ । ଓଡ଼ିଆ ଗୀତାଭିନୟ ରଚନାର ପ୍ରଥମ ସ୍ରଷ୍ଟା ଥିଲେ- ବିପ୍ର ମନ୍ଦରଧର ଭାଗୀରଥୀ । ସେ ପ୍ରଥମେ ଚନ୍ଦ୍ରମଣି ଦାସଙ୍କର 'ଶ୍ରୀକୃଷ୍ଣ ସୁଧାମୃତ ଲୀଳା' କାବ୍ୟକୁ ଗୀତାଭିନୟର ରୂପ ଦେଇଥିଲେ । ପରେ ପରେ ରଘୁନାଥ ପରିଚ୍ଛାଙ୍କର 'ଗୋପୀନାଥ ବଲ୍ଲଭ' ଗୀତାଭିନୟ, ରାଜା କିଶୋର ଚନ୍ଦ୍ର ରାଜେନ୍ଦ୍ର ଦେବଙ୍କର 'ଶ୍ରୀରାଧା ପ୍ରେମମାଳା' ଗୀତାଭିନୟ, ବୈଷ୍ଣବପାଣିଙ୍କର 'ମାନଭଂଜନ ଲୀଳା' ଆଦି ଗୀତାଭିନୟମାନ ରଚିତ ହୋଇଥିଲା ।

ଗୀତାଭିନୟ ସହିତ ଗୀତିନାଟ୍ୟ ପରମ୍ପରାର ମଧ୍ୟ ଅୟମାରମ୍ଭ ଘଟିଥିଲା । ଗୀତିନାଟ୍ୟ ହେଉଛି- ଗୀତାଭିନୟର ପରିବର୍ତ୍ତିତ ଓ ପରିମାର୍ଜିତ ରୂପ । ଏଥିରେ ଗୀତ ସହିତ ସଂଳାପର ପ୍ରୟୋଗ କରାଯାଇଛି । ଗୀତିନାଟ୍ୟ ଗୁଡ଼ିକ ପୁରାଣର କଥାବସ୍ତୁ ସହିତ ଇତିହାସ, କିମ୍ବଦନ୍ତୀ

ଓ ସମାଜଜୀବନର କଥାବସ୍ତୁକୁ ନେଇ ଅଭିନୀତ ହୋଇଥାଏ । ଏହି ଗୀତିନାଟ୍ୟ ଗୁଡ଼ିକ ଏକମୁଖୀ ଅବା ତ୍ରିମୁଖୀ ରଙ୍ଗମଞ୍ଚରେ ଅଭିନୀତ ହୋଇଥାଏ । ଓଡ଼ିଆ ଭାଷାରେ ରଚିତ ପ୍ରାଥମିକ ପର୍ଯ୍ୟାୟର ଗୀତିନାଟ୍ୟ ଗୁଡ଼ିକ ହେଲା- ରାଜା କିଶୋର ଚନ୍ଦ୍ର ରାଜେନ୍ଦ୍ର ଦେବଙ୍କ ବସନ୍ତରାହାସ, ବସନ୍ତ ଚମ୍ପୂ,' ଝୁଲଣ ଚମ୍ପୂ, ଶଙ୍କର ମିଶ୍ରଙ୍କର ଚନ୍ଦ୍ରାବତୀହରଣ, ଲଳିତା ହରଣ, ଜଗନ୍ନାଥ ପାଣିଙ୍କର ଉଷାବତୀ ହରଣ, ପାରିଜାତ ହରଣ, ଲକ୍ଷ୍ମଣ ଶକ୍ତି ଭେଦ, ଗୋବିନ୍ଦ ଦାସଙ୍କର ସୁଲୋଚନା ହରଣ, ଗୋପାଳ ଦାସଙ୍କର ପ୍ରଭାସ ଯଜ୍ଞ, ବୈଷ୍ଣବ ପାଣିଙ୍କର ନଳ-ଦମୟନ୍ତୀ, ରଙ୍ଗସଭା, ଧ୍ରୁବ ଚରିତ, କର୍ଣ୍ଣବଧ ଦକ୍ଷ ଯଜ୍ଞ ଇତ୍ୟାଦି । ଏହି ଗୀତିନାଟ୍ୟ ରଚନା ପରମ୍ପରାକୁ କ୍ରମେ ଯାତ୍ରାନାଟକ ବା ଅପେରା ନାଟକ ସୃଷ୍ଟି ଲାଭ କରିଥିଲା ଏହି ଯାତ୍ରାରେ ବିଭିନ୍ନ ଲୋକନାଟକର ଏକ ମିଶ୍ରିତ କଳାତ୍ମକ ରୂପ ଅଭିବ୍ୟକ୍ତ ଲାଭ କରିଛି । ସମୟ କ୍ରମେ ଆଧୁନିକ ଓଡ଼ିଆ ନାଟକର ଅଭିବ୍ୟକ୍ତି ଘଟିଛି ।



# ବୌଦ୍ଧ ଚର୍ଯାଗୀତି ବା ବୌଦ୍ଧଗାନ ଦୋହା : ଏକ ତାତ୍ତ୍ୱିକ ଅନୁଶୀଳନ

ଖ୍ରୀଷ୍ଟୀୟ ନବମ-ଦଶମ ଶତାବ୍ଦୀବେଳକୁ ବୌଦ୍ଧଧର୍ମର ସହଜିଆ ସିଦ୍ଧାଚାର୍ଯ୍ୟମାନଙ୍କ ଦ୍ୱାରା ବୌଦ୍ଧ ଧର୍ମଦର୍ଶନ ଓ ତାନ୍ତ୍ରିକ ପରମ୍ପରାକୁ ନେଇ କେତେଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର ଗୀତିକା ବା ଦୋହାମାନ ରଚିତ ହୋଇଥିଲା । ଯେଉଁ ଗୁଡ଼ିକୁ କି' ଓଡ଼ିଆ ସାହିତ୍ୟରେ ଆଦିସୃଷ୍ଟି ରୂପେ ଅଦ୍ୟାବଧି ଗ୍ରହଣ କରାଯାଇଅଛି । ପ୍ରାୟ ଦ୍ୱାଦଶ-ତ୍ରୟୋଦଶ ଶତାବ୍ଦୀ ବେଳକୁ ଏହି ଗୀତିକା ଗୁଡ଼ିକର ବିଭିନ୍ନ ସଂସ୍କୃତ ଟୀକା ରଚନା ସହିତ ତିବ୍‌ବତ ଭାଷାରେ ବହୁ ଅନୁବାଦ ମଧ୍ୟ ହୋଇଥିଲା । ଯାହାକି ପୋଥି, ପାଣ୍ଡୁଲିପି ଭିତରେ ସାଇତା ହୋଇ ରହିଥିଲା । ଏହି ଗୀତିକା ବା ଦୋହା ଗୁଡ଼ିକ ଥିଲା- ଲିଖିତ ଓଡ଼ିଆ ସାହିତ୍ୟର ଆଦିମତମ ନିଦର୍ଶନ । ଏହି ଗୀତିକା ବା ଦୋହା ଗୁଡ଼ିକର ପୋଥିକୁ ସର୍ବ ପ୍ରଥମେ ପଣ୍ଡିତ ହର ପ୍ରସାଦ ଶାସ୍ତ୍ରୀ ୧୯୦୬ ମସିହାରେ ନେପାଳର କାଠମାଣ୍ଡୁସ୍ଥିତ ପୋଥି ସଂଗ୍ରହାଳୟରୁ ଆବିଷ୍କାର କରିଥିଲେ । ଏହି ପୋଥିରେ ଥିବା ପଚାଶଟି ଗୀତିକା ସହିତ କାହ୍ନୁପା, ଶବରୀପା, ଲୁଇପା ପ୍ରଭୃତିଙ୍କ ଆଉକିଛି ଦୋହାକୁ ଯୋଗକରି 'ବଙ୍ଗୀୟ ସାହିତ୍ୟ ପରିଷଦ' ୧୯୧୬ ମସିହାରେ 'ବୌଦ୍ଧଗାନ ଦୋହା' ନାମରେ ଏକ ଗ୍ରନ୍ଥ ପ୍ରକାଶ କରିଥିଲେ । ଏହାର ପରବର୍ତ୍ତୀ ସମୟରେ ଓଡ଼ିଆ ଗବେଷକ ଡକ୍ଟର କରୁଣାକର କର ଲୁଇପା, କାହ୍ନୁପା, ଶବରୀପା, ଡ଼ୋମ୍ଭୀପା, ହାଡ଼ିପା, ସରହପା, ଭୁସୁକୁପା ପ୍ରଭୃତି ବୌଦ୍ଧଧର୍ମର ୮୪ ଜଣ ସିଦ୍ଧାଚାର୍ଯ୍ୟଙ୍କର ଗୀତିକା ଗୁଡ଼ିକୁ ସଂକଳନ କରି ତା'ର ନାମ ରଖିଥିଲେ- ଚର୍ଯାଗୀତିକା ବା ଚର୍ଯ୍ୟାଗୀତିକା ଏହାକୁ ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ ବା ଚର୍ଯ୍ୟାଚୟ ବି ନିଶ୍ଚୟ ନାମରେ ମଧ୍ୟ ନାମିତ କରାଯାଇଛି । ବର୍ତ୍ତମାନ ପର୍ଯ୍ୟନ୍ତ ଗବେଷକ ମାନେ ଚର୍ଯ୍ୟାଗୀତିକାର ଯେତେଗୁଡ଼ିଏ ଲିଖିତ ରୂପର ସନ୍ଧାନ ପାଇଛନ୍ତି । ତା'ଠାରୁ ବହୁ ପରିମାଣରେ ଅଧିକ ଗୀତିକା ବା ଦୋହା ମୌଖିକ ରୂପରେ ପ୍ରଚଳିତ ଥିବାର ଜଣାଯାଏ । ଏହି ଗୀତିକା ଗୁଡ଼ିକ ମୁଖରୁ ମୁଖକୁ, ଶ୍ରୁତିରୁ ଶ୍ରୁତିକୁ ଓ ସ୍ମୃତି ମଧ୍ୟଦେଇ ପ୍ରସାରିତ ହୋଇ ଲୋକମୁଖରେ ବଞ୍ଚି ରହିଥିଲା । ନେପାଳ ଓ ତିବ୍‌ବତର ଅନେକ ବୌଦ୍ଧଭିକ୍ଷୁଙ୍କ କଣ୍ଠରେ ଏହି ଅଲିଖିତ, ମୌଖିକ ଗୀତିକା ଗୁଡ଼ିକ ବହୁକାଳ ଧରି

ବଞ୍ଚି ରହିଥିଲା । ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ ମହୋଦୟ ଜନୈକ ନେପାଳୀ ବୌଦ୍ଧଭିକ୍ଷୁଙ୍କ ମୁଖରୁ ଏପରି ଅନେକ ଗୀତିକା ସଂଗ୍ରହ କରିଥିବାର ଜଣାଯାଏ । କେବଳ ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ ନୁହଁନ୍ତି; ଆହୁରି ଅନେକ ବିଦ୍ୱାନ୍ ଗବେଷକ ଏହି ଗୀତିକା ଗୁଡ଼ିକ ସଂପର୍କରେ ବହୁ ଅନୁସନ୍ଧାନ, ଆଲୋଚନା, ପର୍ଯ୍ୟାଲୋଚନାମାନ କରିଯାଇଛନ୍ତି । ସେମାନଙ୍କ ମଧ୍ୟରୁ ପ୍ରମୁଖ ବିଦ୍ୱାନ୍ ହେଲେ- ଡକ୍ଟର ଆରନୋଲଡ଼, ଲାମା ତାରାନାଥ, ରାହୁଲ ସାଂକୃତ୍ୟାୟନ, ଡକ୍ଟର ସୁନୀତି କୁମାର ଚାଟାର୍ଜୀ, ବିନୟତୋଷ ଭଟ୍ଟାଚାର୍ଯ୍ୟ, ସୁଶୀଲ କୁମାର ଦେ, ସୁକୁମାର ସେନ, ପ୍ରବୋଧ ଚନ୍ଦ୍ର ବାଗ୍‌ଚୀ ଓ ଧର୍ମବୀର ଭାରତୀ । ଏତଦ୍‌ଭିନ୍ନ ବହୁ ତନ୍ତ୍ରଗ୍ରନ୍ଥ, ନାଥଗ୍ରନ୍ଥ କିମ୍ବଦନ୍ତୀ ଓ ବିବରଣୀମାନଙ୍କରୁ ମଧ୍ୟ ଚର୍ଯ୍ୟାଗୀତି ଓ ଚର୍ଯ୍ୟାକାରମାନଙ୍କ ସଂପର୍କରେ ବିଭିନ୍ନ ସୂଚନା ମିଳେ । ଅଦ୍ୟାବଧି ଏହି ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରୁ କିଏ ବରିଷ୍ଠ, କିଏ କନିଷ୍ଠ ଅବା ସେମାନଙ୍କର ଜନ୍ମସ୍ଥାନ, ଜନ୍ମକାଳ ନିରୂପଣ ଓ ଜୀବନ ଇତିହାସର ସଠିକ୍, ପୂର୍ଣ୍ଣାଙ୍ଗତଥ୍ୟ ନିର୍ଦ୍ଧାରଣ ହୋଇ ନ ପାରିଲେ ମଧ୍ୟ, ଆଧ୍ୟାତ୍ମିକ ଓ ଐତିହାସିକ ଦୃଷ୍ଟିକୋଣରୁ ଏହି ଗୀତିକାର କତିପୟ ସ୍ରଷ୍ଟା । ଯେ ଓଡ଼ିଶା ଭୂଇଁର ଏହା କୁହାଯାଇପାରିବ । ଧାର୍ମିକ ଦୃଷ୍ଟିରୁ ଦେଖିଲେ- ବଜ୍ରଯାନ ଓ ସହଜଯାନ ଆଦି ତାନ୍ତ୍ରିକ ବୌଦ୍ଧ ଧର୍ମର ପ୍ରଧାନପୀଠ ଥିଲା - ଓଡ଼୍‌ଡ଼ୀୟାନ୍ ବା ଓଡ଼ିଶା ଭୂଇଁ । ଐତିହାସିକ ଦୃଷ୍ଟିରୁ ଦେଖିଲେ- 'ପ୍ରଖ୍ୟାତ ବଜ୍ରଯାନୀ ସାଧକ ଇନ୍ଦ୍ରଭୂତି, ଲକ୍ଷ୍ମୀକରା ଓ ପଦ୍ମସମ୍ଭବ ଏବଂ ସହଜଯାନ ସାଧକ ଲୁଇପା, କାହ୍ନୁପା ଆଦି ଏଇ ଉତ୍କଳ ଭୂମିର । 'ପାଗ୍-ସମ୍-ଜନ୍-ଜାଙ୍ଗ୍' ପୁସ୍ତକରୁ ଜଣାଯାଏ - ଆଦି ସିଦ୍ଧ ପୁରୁଷ ଲୁଇପା ଉଡ଼୍‌ଡ଼ୀୟାନ୍ ପ୍ରଦେଶର ଏକ କୈବର୍ତ୍ତ କୁଳରେ ଜନ୍ମ ଗ୍ରହଣ କରିଥିଲେ । ପୁନଶ୍ଚ- ଏହି ଗ୍ରନ୍ଥରେ କୁହାଯାଇଛି- କାହ୍ନୁପା ଉତ୍କଳ ଭୂମିରେ ଏକ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ ।

ସହଜିଆ ସିଦ୍ଧାଚାର୍ଯ୍ୟମାନେ ସେମାନଙ୍କ ଲିଖିତ ଗୀତିକା ବା ଦୋହା ଗୁଡ଼ିକୁ 'ଚର୍ଯ୍ୟା' ନାମରେ ନାମିତ କରିଥିଲେ । ଯାହାର ସାଧାରଣ ଅର୍ଥ ହେଲା- ଶୃଙ୍ଖଳିତ ଧାର୍ମିକ ଆଚରଣ ବା ଆଚାର । କାହ୍ନୁ ପାଦ ତାଙ୍କର 'ଡ଼ୋମ୍ବିହେରୁକ ଚର୍ଯ୍ୟା' ଗୀତିକାରେ 'ଚର୍ଯ୍ୟା'କୁ କାୟା ପ୍ରବେଶ (ପଇଠ ଆଚାରେ) ରୂପରେ ଗ୍ରହଣ କରିଥିଲେ । କାହ୍ନୁପା ଲେଖିଛନ୍ତିଂ

"ନାଡ଼ିଶକ୍ତି ଦିଢ଼ ଧରିଅ ଖର୍ଟେ
ଅନାହ ଡମ୍ବରୁ ବାଜଇ ବୀର ନାଦେ ।
କାହ୍ନ କାପାଳୀ ଯୋଗୀ ପଇଠ ଆଚାରେ
ଦେହ ନଅରୀ ବିହରଇ ଏକା କାରେଁ ।"

**(ଡୋମ୍ବୀହେରୁକ ଚର୍ଯ୍ୟା, ପଦ-୧-୨)**

ଏହି ଗୀତିକା ଗୁଡ଼ିକରେ 'ବୋଧିଚର୍ଯ୍ୟା' କଥା ମଧ୍ୟ କୁହାଯାଇଛି । ଏହି 'ବୋଧିଚର୍ଯ୍ୟା' ହେଉଛି- ସାଧକ ସାଧନ ମାର୍ଗରେ ପ୍ରବୃତ୍ତି ହୋଇ ବୋଧିଚିତ୍ତକୁ ଅବଧୂତିକା ମାର୍ଗ ଦେଇ ଉର୍ଦ୍ଧ୍ୱଗ କରାଇ ମହାବୋଧିସତ୍ତ୍ୱ ସହ ମିଳନ କରାଇ ମହାବୋଧିତତ୍ତ୍ୱ ବା ସହଜାନନ୍ଦକୁ ଉପଲବ୍ଧି କରିବା । ତେଣୁ 'ଚର୍ଯ୍ୟା' ବା ଚର୍ଯ୍ୟା ପଦ ଗୁଡ଼ିକରେ - ଆତ୍ମା- ପରମାତ୍ମା, ମୋକ୍ଷ ବା ମୁକ୍ତି ଅବା ମହାସୁଖ ଲାଭର ନିଗୂଢ଼ ତାତ୍ତ୍ୱିକଦର୍ଶନର କଥା କୁହାଯାଇଛି । ସାଧକ ଉପଯୁକ୍ତ ଗୁରୁଙ୍କର ଆଶ୍ରୟ ନେଇ ସାଧନ ମାର୍ଗରେ ଅଗ୍ରସର ହୋଇ କାୟାସାଧନା ଓ ଶୂନ୍ୟସାଧନା ଯୋଗରେ ପ୍ରବୃତ୍ତି ହୋଇ ମୋକ୍ଷ, ମୁକ୍ତି ବା ମହାସୁଖର ସନ୍ଧାନ ପାଇଥାଏ । ସାଧକ ଦେହ, ରୂପ ଓ ଇନ୍ଦ୍ରିୟ ଦେଇ ବିଦେହ, ରୂପାତୀତ ଓ ଅତୀନ୍ଦ୍ରିୟ ଜଗତର ବିମଳ ଆଧାତ୍ମିକ ସୌନ୍ଦର୍ଯ୍ୟକୁ ଉପଲବ୍ଧି କରିଥାଏ ।

ଏହି ଗୀତିକା ଗୁଡ଼ିକରେ ସିଦ୍ଧାଚାର୍ଯ୍ୟ ମାନଙ୍କର ଧ୍ୟାନ-ଧାରଣା, ଚିନ୍ତା- ଚେତନା, ଯୋଗପଦ୍ଧତି ଓ ଜୀବନାନୁଭୂତି ସହିତ ସେମାନଙ୍କର ପ୍ରଜ୍ଞା, ପ୍ରତିଭା ଓ ପାଣ୍ଡିତ୍ୟର ମନୋଜ୍ଞ ପରିପ୍ରକାଶ ଘଟିଅଛି । ଏହି ଗୀତିକା ଗୁଡ଼ିକର ଭାଷା ମୁଖ୍ୟତଃ ଲୌକିକ ଭାଷା । ଏହି ଲୋକମୁଖର ଭାଷା ସହିତ ଦ୍ୱି-ଅର୍ଥ ବୋଧକ ସାନ୍ଧ୍ୟଭାଷା- ଶୈଳୀର ପ୍ରୟୋଗରେ ଧର୍ମ- ଦର୍ଶନର ଅତି ନିଗୂଢ଼, ଜଟିଳ ତତ୍ତ୍ୱକୁ ଏଥିରେ ଅତି ସରଳ, ସାବଲୀଳ ଭାବରେ ପରିପ୍ରକାଶ କରାଯାଇଛି । ଏହି 'ଚର୍ଯ୍ୟାଗୀତି' ବା ଚର୍ଯ୍ୟାଗୀତିକାର ଆଙ୍ଗିକ ଓ ଆତ୍ମିକ ସୌନ୍ଦର୍ଯ୍ୟ ବେଶ୍ ଦୀପ୍ତିଭାସ୍ୱର । ନାନା ସୁନ୍ଦର କାମୋଦ୍ଦୀପକ ଆଳଙ୍କାରିକ ବର୍ଣ୍ଣନାର ବର୍ଣ୍ଣବିଭାରେ ଚର୍ଯ୍ୟା ପଦର ଆଙ୍ଗିକ ସୌନ୍ଦର୍ଯ୍ୟ ଯେପରି ରସମୟ ଓ ଉର୍ଜ୍ଜସ୍ୱଳ; ସେହିପରି ମୁକ୍ତିର ବିମୁକ୍ତ ଆହ୍ୱାନରେ ଏହାର ଆତ୍ମିକ ସୌନ୍ଦର୍ଯ୍ୟ ଦୀପ୍ତମନ୍ତ ଶ୍ରୀମନ୍ତ ଓ ମହିମୋଜ୍ଜ୍ୱଳ । ଏହି ଚର୍ଯ୍ୟାଗୀତିକାର ଧାର୍ମିକ ପୃଷ୍ଠଭୂମି, ଧର୍ମ-ଦର୍ଶନ, ସାଧନମାର୍ଗ, ସହଜାନନ୍ଦ ବା ମହାସୁଖଲାଭ, ଏହାର ବିଷୟ ବିନ୍ୟାସ ଓ ବର୍ଣ୍ଣନା ଚାତୁରୀ, ଭାଷା ମାଧୁରୀ, ଛନ୍ଦମାଧୁରୀ ଅଳଙ୍କାରବିନ୍ୟାସ, ରସଚର୍ଯ୍ୟା, ମନସ୍ତାତ୍ତ୍ୱିକ ବିଶ୍ଳେଷଣ । ସାମାଜିକ ଓ ନୈତିକ ମୂଲ୍ୟ ବୋଧ ସର୍ବୋପରି ଏହାର ସାହିତ୍ୟିକ ମୂଲ୍ୟବୋଧ ବେଶ୍ ଗୁରୁତ୍ୱପୂର୍ଣ୍ଣ ଓ ସୁଦୂରପ୍ରସାରୀ ।

## ଧାର୍ମିକ ପୃଷ୍ଠଭୂମି ଓ ସାଧନ ମାର୍ଗ:-

'ଚର୍ଯ୍ୟାଗୀତି' ରୁ ତତ୍କାଳୀନ ସମାଜର ଧର୍ମୀୟ ଜୀବନ, ସାମାଜିକ ଜୀବନ, ଆଧାତ୍ମିକ ଭାବଧାରା ଓ ନୈତିକ ଜୀବନାଦର୍ଶର ସ୍ପଷ୍ଟ ସୂଚନା ମିଳେ । ମୁଖ୍ୟତଃ ତତ୍କାଳୀନ ତାନ୍ତ୍ରିକ- ବୌଦ୍ଧ ସହଜିଆ ଧର୍ମ-ଦର୍ଶନ ଓ ତାନ୍ତ୍ରିକ ବୌଦ୍ଧ-କାପାଳିକ ପରମ୍ପରାର ଚିତ୍ର ଏହି ଗୀତିକା ଗୁଡ଼ିକରୁ ମିଳେ । ଏହି ସହିତ ନାଥଧର୍ମ ଓ ନାଥପରମ୍ପରାର ପ୍ରଭାବ ମଧ୍ୟ ଏଥିରେ ପରିଲକ୍ଷିତ ହୁଏ । ମୋଟି ମୋଟି ଭାବରେ ଆଧାତ୍ମିକତା ଦୃଷ୍ଟିରୁ ସହଜିଆ ବୌଦ୍ଧ ଧର୍ମର ସାଧନପକ୍ଷ

ବା ସାଧନମାର୍ଗର ସୂଚନା ଏଥିରୁ ମିଳେ । କାୟାସାଧନା, ଶୂନ୍ୟ ସାଧନା, ନିରାକାର ଉପାସନା, ଗୁରୁ ପରମ୍ପରା, ସହଜ ସାଧନା ଆଦି ସାଧନମାର୍ଗ ସହିତ ଏଥିରେ ସହଜାନନ୍ଦ ବା ମହାସୁଖଲାଭର କଥା କୁହାଯାଇଛି ।

**ଶୂନ୍ୟ ସାଧନା:-**

ଭାରତୀୟ ଆଧ୍ୟାତ୍ମିକ ଜଗତକୁ ସହଜିଆ ବୌଦ୍ଧଧର୍ମର ଏକ ଅମୂଲ୍ୟ ଅବଦାନ ହେଉଛି- ଶୂନ୍ୟବାଦ ବା ଶୂନ୍ୟ ସାଧନା । ବଜ୍ରଯାନର ଶୂନ୍ୟ, କରୁଣା ଓ ବଜ୍ରସତ୍ତ୍ୱ ତାନ୍ତ୍ରିକ ସହଜିଆମାନଙ୍କ ଦୃଷ୍ଟିରେ ପ୍ରଜ୍ଞା, ଉପାୟ ଓ ବୋଧିଚିତ୍ତ । ସହଜିଆମାନଙ୍କ ମତରେ ସଂସାରର ସବୁ ପଦାର୍ଥ ଅନିତ୍ୟ, ଅସାର, ଅସତ୍ୟ । କେବଳ ଶୂନ୍ୟତା ହିଁ ସତ୍ୟ । ଏହି ଶୂନ୍ୟତା ହେଉଛି- ପ୍ରଜ୍ଞା ବା ବିଶୁଦ୍ଧ ଜ୍ଞାନ । ସାଧକ ସ୍ଥିର ମନ ଓ ଦୃଢ଼ଚିତ୍ତରେ ଇନ୍ଦ୍ରିୟ କାମ-ବାସନାର ବନ୍ଧନକୁ ଛିନ୍ନକରି ଅବା ଜୟକରି ବିଶୁଦ୍ଧଜ୍ଞାନ ସହ ଉପାୟ ବା କରୁଣାର ସଂଯୋଗ କରାଇ ପାରିଲେ ହିଁ, ମହାସୁଖ ଲାଭ କରିପାରେ । ସିଦ୍ଧାଚାର୍ଯ୍ୟ ଲୁଇପାଦ, କାହ୍ନୁପାଦ, ଶବରୀପାଦ ପ୍ରମୁଖ ଜୀବ- ପରମ, ଲଳନା- ରସନା, ଶୂନ୍ୟତା-କରୁଣା, ନାରୀ ଓ ପୁରୁଷର ମିଳନରେ ହିଁ ମହାଶୂନ୍ୟର ପ୍ରାପ୍ତି ସମ୍ଭବ ବୋଲି କହିଛନ୍ତି । ସିଦ୍ଧାଚାର୍ଯ୍ୟ ଲୁଇପା ତାଙ୍କ 'ସହଜତତ୍ତ୍ୱ ଚର୍ଯା' ଗୀତିକାରେ ମହାଶୂନ୍ୟତତ୍ତ୍ୱ ଓ ଶୂନ୍ୟର ସ୍ୱରୂପ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ଲୁଇ ଭଣାଇ ବଡ଼ ଦୁଲକ୍‌ଖ ବିଣାଣା (ଦୁର୍ଲକ୍ଷ ବିଜ୍ଞାନ)
ତିଅ ଧାଏ ବିଳସଇ ଉହ ଲାଗେଣା ।
କାହେର ବାଣ (ବର୍ଣ୍ଣ) ଚିହ୍ନ ରୁବ (ରୂପ) ନ ଜାଣି
ସୋ କଇସେ ଆଗମ ବେଏଁ ବଖାଣି
କାହେର କିସ ଭଣି ମଇ ଦିବି ପରିଛା
ଉଦକ ଚାନ୍ଦ ଜିମ ସାଚ ନା ମିଛା ।"

(ସହଜତତ୍ତ୍ୱଚର୍ଯ୍ୟ- ପଦ -୧-୨)

ଅର୍ଥାତ୍- ଏହି ଶୂନ୍ୟତତ୍ତ୍ୱ ହେଉଛି ବଡ଼ ଦୁର୍ଲ୍ଲଭ ଓ ଦୁର୍ଲକ୍ଷ୍ୟ ବିଜ୍ଞାନ । ଏହାର କୌଣସି ବର୍ଣ୍ଣ, ଚିହ୍ନ ଓ ରୂପ ନାହିଁ । ଏହାକୁ ବେଦ, ଆଗମରେ ମଧ୍ୟ ବ୍ୟକ୍ତ କରି ହେବ ନାହିଁ । ଜଳରେ ପ୍ରତିବିମ୍ବିତ ଚନ୍ଦ୍ର ଯେପରି ପୂର୍ଣ୍ଣ ସତ୍ୟ ବା ମିଥ୍ୟାନୁହେଁ; ଶୂନ୍ୟ ବା ସହଜରେ ସ୍ୱରୂପ ସେଇ ଭଳି ବୋଲି ଲୁଇପା କହିଛନ୍ତି । ଏହି ଶୂନ୍ୟ ଅସ୍ତ୍ୟାତ୍ମକ ପୁଣି ନାସ୍ତ୍ୟାତ୍ମିକ । ସିଦ୍ଧାଚାର୍ଯ୍ୟ ସରହପାଦ ମଧ୍ୟ ତାଙ୍କର ଏକ 'ଦୋହା'ରେ ଶୂନ୍ୟତତ୍ତ୍ୱ ବା ସହଜ ତ୍ତ୍ୱର ସ୍ୱରୂପ ବର୍ଣ୍ଣନା କରି ଲେଖିଛନ୍ତି-

"ନ ଶୁଣଇ ଶୋଣାଉ ଦିଶଉ ନ ଆଣେ"
ପବନ ବହନ୍ତେ ତାଉ ସୋ ହଲ୍ଲଇ
ଜଳନ୍ତ ଜଳନ୍ତେ ତାଉ ସୋ ଭଜ୍‌ଝଇ
ଘଣ ବରିସନ୍ତେ ତାଉ ସୋମ୍ଭଇ ।"

## କାୟା ସାଧନା ବା ସହଜ ସାଧନା:

ସହଜ ସାଧନାର ମୂଳ ଉତ୍ସ ହେଲା ସାଧକର କାୟା ବା ଶରୀର । ସେମାନେ ପ୍ରଥମେ କାୟା ଶୁଦ୍ଧି ଓ ଚିତ୍ତ ଶୁଦ୍ଧି ଉପରେ ଗୁରୁତ୍ୱ ଦେଇଥାନ୍ତି । କାଳଚକ୍ରଯାନୀ ମାନେ ସେମାନଙ୍କ ସାଧନ ମାର୍ଗରେ ଯୋଗସାଧନା ବା ପ୍ରାଣାୟାମ୍ ଆଦି ଜ୍ଞାନ ସାଧନା ଉପରେ ଗୁରୁତ୍ୱ ଦେବା ସ୍ଥଳେ, ସହଜଯାନୀ ମାନେ ଦେହ ମଧ୍ୟ ଦେଇ ଦେହୀତୀତ ଓ ରୂପ ମଧ୍ୟଦେଇ ରୂପାତୀତ, ଅଦୃଶ୍ୟ, ଅଲୌକିକ ଆନନ୍ଦର ସନ୍ଧାନ କରନ୍ତି । ଏମାନଙ୍କର ସାଧନ ମାର୍ଗରେ ଯୋଗଜ୍ଞାନର ଜଟିଳ, ଦୁରୂହ ପଦ୍ଧତି ନଥିବାରୁ ସାଧନମାର୍ଗ ବେଶ୍ ସହଜ, ସରଳ ହୋଇଥିବାରୁ ଏହାକୁ ସହଜ ସାଧନା କୁହାଗଲା । ଏମାନଙ୍କ ଦୃଷ୍ଟିରେ- ଶରୀର ହେଉଛି- ଅନିତ୍ୟ ତରୁ ଓ ଇନ୍ଦ୍ରିୟମାନେ ଏହି କାୟାତରୁର ଡାଳ ସଦୃଶ । ଏହି କଥା ଲୁଇପାଦ ତାଙ୍କର 'କାୟା-ତରୁଚର୍ଯ୍ୟା'ରେ କହିଛନ୍ତି । ଲୁଇପାଙ୍କ ଭାଷାରେ-

"କାଆ ତରୁବର ପଞ୍ଚ ବିଡ଼ାଳ
ଚଞ୍ଚଳ ଚୀଏ ପଇଠା କାଳ ।
ଦିଢ଼ କରିଅ ମହାସୁହ ପରିମାଣ
ଲୁଇ ଭଣାଇ ଗୁରୁ ପୁଚ୍ଛିଅ ଜାଣ ।"

(କାୟା-ତରୁକେ- ପଦ ୧-୨)

ଏମାନେ କାୟା ସାଧନ ବା ସହଜ ସାଧନ୍ ପ୍ରକ୍ରିୟାରେ ପିଣ୍ଡ- ବ୍ରହ୍ମାଣ୍ଡ ତତ୍ତ୍ୱ ଉପରେ ଗୁରୁତ୍ୱ ଦେଇଛନ୍ତି । ଏହି ପିଣ୍ଡ- ବ୍ରହ୍ମାଣ୍ଡବାଦ ଭାରତୀୟ ଅଧ୍ୟାତ୍ମ ସାଧନାର ଏକ ମୂଳଭୂତ ରୂପ । ଉପନିଷଦ୍ ଯୁଗରୁ ମଣିଷର ପିଣ୍ଡକୁ ବ୍ରହ୍ମାଣ୍ଡ ରୂପରେ ପରିକଳ୍ପନା କରାଯାଇଛି । ବ୍ରହ୍ମାଣ୍ଡର ପ୍ରତୀକ ରୂପୀ ଏହି ଶରୀରରେ ପ୍ରାଣ, ଆତ୍ମା ବା ବ୍ରହ୍ମ ନିବାସ କରୁଅଛନ୍ତି । ଏହି ବ୍ରହ୍ମଙ୍କୁ ସୂକ୍ଷ୍ମ ସାଧନ ବା ଅନ୍ତର୍ମୁଖୀ ସାଧନାବଳରେ ହିଁ ଉପଲବ୍ଧି କରାଯାଇପାରେ । ଏହି ସୂକ୍ଷ୍ମ ସାଧନମାର୍ଗ, ପିଣ୍ଡ- ବ୍ରହ୍ମାଣ୍ଡବାଦ ଉପରେ ହିଁ ଆଧାରିତ । ଶାସ୍ତ୍ର ମତରେ- ମଣିଷ ଶରୀରରେ ୭୨ ହଜାର ନାଡ଼ୀ ପ୍ରବାହିତ । ତହିଁରୁ ତିନି ଗୋଟି ମୁଖ୍ୟ ପ୍ରାଣବାହୀ ନାଡ଼ୀ ହେଲା- ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା । ଯାହାକୁ ବୌଦ୍ଧ ତନ୍ତ୍ରରେ

ଲଳନା, ରସନା, ଅବଧୂତିକା କୁହାଯାଇଛି । ଇଡ଼ା ହେଉଛି ଶରୀରର ବାମ ଭାଗର ନାଡ଼ୀ ପିଙ୍ଗଳା ଦକ୍ଷିଣ ଭାଗର ନାଡ଼ୀ ଓ ସୁଷୁମ୍ନା ଶରୀରର ମଧ୍ୟ ଭାଗ ମେରୁଦଣ୍ଡ ମଧ୍ୟରେ ଅବସ୍ଥିତ । ଏହି ଇଡ଼ା-ପିଙ୍ଗଳା, ଲଳନା-ରସନା, ଧମଣ-ଚମଣ, ଶୂନ୍ୟତା- କରୁଣା, ପ୍ରଜ୍ଞା- ଉପାୟ ଓ ନାରୀ-ପୁରୁଷର ଯୁଗନଦ୍ଧ ମିଳନ ମାଧ୍ୟମରେ ହିଁ ସହଜାନନ୍ଦ ବା ମହାସୁଖ ଲାଭ ସମ୍ଭବ ବୋଲି ଏମାନେ କହିଛନ୍ତି ।

'ଚର୍ଯ୍ୟାଗୀତି'ରେ ସହଜସାଧନା ସଂପର୍କରେ କୁହାଯାଇଛି-

"ଏକ ସେ ଶୁଣ୍ଡିନୀ ଦୁଇ ଘରେ ସାନ୍ଧଅ
ଚୀଅଣ ବାକଳଅ ବାରୁଣୀ ବାନ୍ଧଅ ।
ସହଜେ ଥିର କରି ବାରୁଣୀ ସାନ୍ଧେ
ଜେଁ ଅଜରାମର ହୋଇ ଦିଢ଼ କାନ୍ଧେ ।"

ଅର୍ଥାତ୍- ଯେଉଁ ସାଧକ ସ୍ଥିର ମନ ଓ ଚିତ୍ତଶୁଦ୍ଧି ପୂର୍ବକ ପ୍ରାଣଶକ୍ତିକୁ ଜାଗ୍ରତ କରାଇ ଶୁଣ୍ଡିନୀ ରୂପୀ ଅବଧୂତିକା ମାର୍ଗରେ ପରିଚାଳିତ କରାଇ ପରିଶୁଦ୍ଧ ବୋଧିଚିତ୍ତକୁ ଲଳନା-ରସନା ଦୁଇ ଘର ସନ୍ଧି ମଧ୍ୟରେ ବାନ୍ଧି ରଖିବାକୁ ସମର୍ଥ ହୁଏ, ସେହି ଜନ୍ମ- ମୃତ୍ୟୁ ଚକ୍ରରୁ ବହିର୍ଗତ ହୋଇ ଜରା- ମୃତ୍ୟୁ ରହିତ ହୋଇପାରିବ ।

ସହଜସାଧକମାନେ ସହଜସାଧନା ପ୍ରକ୍ରିୟାରେ ଷଡ଼ଚକ୍ର ସାଧନା ଉପରେ ମଧ୍ୟ ଗୁରୁତ୍ୱ ଦେଇଥାନ୍ତି । ଏମାନେ ନାଭିମଣ୍ଡଳ ସ୍ଥିତ ମଣିପୁରଚକ୍ର ବା ନିର୍ମାଣଚକ୍ରରେ ବୋଧିଚିତ୍ତ ବା ପଞ୍ଚ ପ୍ରାଣବାୟୁକୁ ଅବଧୂତିକା ମାର୍ଗରେ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରାଇ ମସ୍ତିଷ୍କର ଲଲାଟଚକ୍ର ବା ଆଜ୍ଞାଚକ୍ର ଉପରେ ଥିବା ମହାସୁଖ ଚକ୍ର ବା ଉଷ୍ଣୀଷ କମଳରେ ଅବସ୍ଥାନ କରାଇ ମହାସୁଖ ଲାଭ କରିଥାନ୍ତି ।

## ମହାସୁଖ ବା ସହଜାନନ୍ଦ:-

ବୌଦ୍ଧ ସହଜିଆ ସାଧକମାନଙ୍କର ଚରମ ଲକ୍ଷ୍ୟ- ମହାସୁଖ ଲାଭ । ଏହି ମହାସୁଖ ବୌଦ୍ଧଧର୍ମର 'ନିର୍ବାଣ' ହିନ୍ଦୁ ଧର୍ମର 'ମୋକ୍ଷ' ଓ ତାନ୍ତ୍ରିକ ସାଧନାର 'ସମରସ' ପର୍ଯ୍ୟାୟବାଚୀ । ଏମାନେ ମହାସୁଖ ବା ସହଜାନନ୍ଦ ଲାଭ ପାଇଁ ମହାମୁଦ୍ରା ସାଧନା ବା ମୈଥୁନ ସାଧନାର ଆଶ୍ରୟ ନେଇଥାନ୍ତି । ସହଜସାଧନାରେ ନୈରାତ୍ମା ବା ନୈରାମଣି ଦେବୀ ମହାମୁଦ୍ରା ରୂପେ ପରିକଳ୍ପିତା । ଏହି ନୈରାମଣି ଦେବୀ ପୁଣି ସହଜ ସୁନ୍ଦରୀ ବା ଡ଼ୋମ୍ବୀ ରୂପରେ ମଧ୍ୟ ପରିକଳ୍ପିତା । ସିଦ୍ଧାଚାର୍ଯ୍ୟ କାହ୍ନୁପାଦ ତାଙ୍କ 'ଡୋମ୍ବୀଚର୍ଯ୍ୟା' ଗୀତିକାରେ ଡ଼ୋମ୍ବୀ ବା ସହଜ ସୁନ୍ଦରୀର ସାହଚର୍ଯ୍ୟରେ ମହାସୁଖ ଲାଭ ବା ମହା ମୁଦ୍ରା ସିଦ୍ଧି ଲାଭର କଥା କହିଛନ୍ତି । କାହ୍ନୁପାଦଙ୍କ ଭାଷାରେ-

"ଆଲୋ ଡୋମ୍ବୀ ତୋଏ ସମ କରିବ ମ ସଙ୍ଗ
ନିଘନ କାହ୍ନ କାପାଳି ଜୋଇଲାଙ୍ଗ ।"

(ଡୋମ୍ବୀଚର୍ଯ୍ୟା - ପଦ-୨)

ଏହି ପଦଟିରେ ନାରୀ- ପୁରୁଷର ଯୁଗନଦ୍ଧ ମିଳନଚିତ୍ର ଅବକାଶରେ ନିଗୂଢ଼ ଆଧ୍ୟାତ୍ମିକ ଦର୍ଶନର ତତ୍ତ୍ୱ ଫୁଟି ଉଠିଛି । ଏଥିରେ ଦ୍ୱି-ଅର୍ଥବୋଧକ ସାନ୍ଧ୍ୟଭାଷାରେ ଜଟିଳ ଗୁହ୍ୟସାଧନା, ପ୍ରଜ୍ଞୋପାୟ ଯୁଗନଦ୍ଧ ମୈଥୁନ ସାଧନାର କଥା କୁହାଯାଇଛି । ସାଧକ ହଠ ଯୋଗ ଦ୍ୱାରା ଶ୍ୱାସକ୍ରିୟାକୁ ନିରୋଧ କରି ସ୍ଥିରମନ ଓ ଚିତ୍ତଶୁଦ୍ଧି ପୂର୍ବକ ନାଭିମଣ୍ଡଳ ସ୍ଥିତ ଚକ୍ରରେ ପଞ୍ଚ ପ୍ରାଣବାୟୁକୁ ମିଳିତ କରାଇ ସୁଷୁମ୍ନାନାଡ଼ୀ ବା ଅବଧୂତିକା ମାର୍ଗରେ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରି ମସ୍ତିଷ୍କର ସହସ୍ରାର ଚକ୍ରରେ ଥିବା ଉଷ୍ଣୀଷ କମଳରେ ଅବସ୍ଥାପିତ କରି ଯୌନଯୋଗ ବା ମିଥୁନସାଧନା ମାଧ୍ୟମରେ ମହାସୁଖ ଲାଭ କରିଥାନ୍ତି । ନାରୀ-ପୁରୁଷର ଏହି ଯୁଗନଦ୍ଧ ମିଳନରେ ଦୈହିକ ସୁଖାନୁଭୂତି ପରିବର୍ତ୍ତେ ଆଧ୍ୟାତ୍ମିକ ଆନନ୍ଦ ବା ସହଜାନନ୍ଦ ମିଳିଥାଏ । ଆଚାର୍ଯ୍ୟ ଶବରୀପା ତାଙ୍କର 'ଶବର-ଶବରୀ ପ୍ରେମଚର୍ଯ୍ୟା'ରେ ଯୁଗନଦ୍ଧ ମୈଥୁନ ସାଧନା ମାଧ୍ୟମରେ ସହଜାନନ୍ଦ ପ୍ରାପ୍ତିର ନିଗୂଢ଼ ରହସ୍ୟ ବର୍ଣ୍ଣନା କରିଛନ୍ତି । ଶବରୀପାଙ୍କ ଭାଷାରେ-

"ଉଚାଁ ଉଚାଁ ପାବତ ଯହିଁ ବସଇ ସବରୀ ବାଳୀ
ମୋରଙ୍ଗୀ ପିଚ୍ଛ ପରହିଣ ଗିବତ ଗୁଞ୍ଜରୀ ମାଳି ।

× × × ×

ତିଅଧାଉ ଖାଟ ପାଡ଼ିଲା ସବରୋ ମହାସୁହେ ସେଜି ଛାଇଲା ।
ସବରୋ ଭୁଜଙ୍ଗ ନଇରାମଣୀ ଦାରୀପେମ୍ ହେ ରାତି ପୋହାଇଲା ।"

(ଶବର-ଶବରୀ ପ୍ରେମଚର୍ଯ୍ୟା,-ପଦ-୧-୩)

ଏହାର ସାଧାରଣ ଅର୍ଥ ହେଉଛି- ସୁଉଚ୍ଚ ପର୍ବତମାଳାର ଶଖର ଦେଶରେ ଶବରୀ କନ୍ୟା ବାସ କରେ । ସେ ମୟୂର ପୁଚ୍ଛ ଏବଂ ଗୁଞ୍ଜରିମାଳ ବା କାଇଁଚମାଳି ପରିଧାନ କରେ । ଶବର ସେଇ ସୁନ୍ଦରୀ କନ୍ୟା ସହିତ ସେଇ ପାର୍ବତ୍ୟ ଭୂମିରେ ସାରାରାତି ପ୍ରେମରସରେ ମଜ୍ଜି ରହେ । ମାତ୍ର- ଏହାର ନିଗୂଢ଼ ଅର୍ଥ ହେଲା- ମଣିଷ ଶରୀରର ଶୀର୍ଷ ଦେଶରେ ସହସ୍ରାରଚକ୍ର ବା ମହାସୁଖଚକ୍ର ଅବସ୍ଥିତ, ଯେଉଁଠି ନୈରାମଣି ଦେବୀ ଅବସ୍ଥାନ କରନ୍ତି । ଶବର ସ୍ଥିର ମନ ଓ ଏକାଗ୍ର ଚିତ୍ତରେ ଶର ସନ୍ଧାନ କଲା ପରି ସାଧକ ସ୍ଥିର ଚିତ୍ତ ପୂର୍ବକ ମନ ରୂପକବାଣ ସନ୍ଧାନ କରି ବୋଧିଚିତ୍ତକୁ ମହାସୁଖ ଚକ୍ରରେ ପ୍ରବେଶ କରାଇ

ନୈରାତ୍ମା ବା ନୈରାମଣି ଦେବୀ ସହିତ ମିଳିତ ହୁଏ । ଏହି ନୈରାତ୍ମା ସହିତ ବୋଧିଚିତ୍ତର ମିଳନ ହେଲେ ସାଧକ ସହଜାନନ୍ଦ ଲାଭ କରିପାରେ । ପୁନଶ୍ଚ ଶବରୀପା ତାଙ୍କ ମତ୍ତଶବର-ମୃତ୍ୟୁଚର୍ଯ୍ୟା'ରେ ମଧ୍ୟ ନୈରାମଣି ସହିତ ସାଧକ ତା'ର ବୋଧିଚିତ୍ତକୁ ମିଳିତ କରାଇ କିପରି ମହାସୁଖ ଲାଭ କରେ ତା'ର ଚିତ୍ର ଦେଇଛନ୍ତି । ଶବରୀପାଙ୍କ ଭାଷାରେ-

"ଗଅଣତ ଗଅଣତ ତଇଲା ବାଡ଼ୀ ହେଞ୍ଚେ କୁରାଢ଼ୀ
କଣ୍ଠେ ନୈରାମଣି ବାଳୀ ଜଗନ୍ତେ ଉପାଡ଼ି ।

× × ×

ମାରିଲ ଭବମତ୍ତାରେ ଦହଦିହେ ଦିଅଲିବାଳୀ
ହେର ସେ ସବର ନିରୋବଣ ଭଇଲା ଫିଟିଲା ସବରାଳୀ ।"

ଏହାର ନିଗୂଢ଼ ଅର୍ଥ ହେଲା- ସାଧକ ନିଜର ପରିଶୁଦ୍ଧ ବୋଧିଚିତ୍ତ ରୂପକ କୁରାଢ଼ୀ ଦ୍ୱାରା ଅବିଦ୍ୟା, ଅଜ୍ଞାନ ଆଦିକୁ ଖଣ୍ଡନ କରି ଶୂନ୍ୟ, ଅତି ଶୂନ୍ୟ ଦେଇ ମହାଶୂନ୍ୟରେ ପ୍ରବେଶ କରେ । ଏହି ମହା ଶୂନ୍ୟରେ ହିଁ ସାଧକ ନୈରାମଣି ସହ, ମିଳିତ ହୋଇ ସହାଜାନନ୍ଦ ବା ମହାସୁଖ ଲାଭକରେ । ଡୋମ୍ବୀ- ହେରୁକ ଚର୍ଯ୍ୟା'ରେ ମଧ୍ୟ ଏହି ସହଜାନନ୍ଦ ଲାଭର କଥା କୁହାଯାଇଛି । କାହ୍ନୁପାଦ ଲେଖିଛନ୍ତି-

"ନାଡ଼ି ଶକ୍ତି ଦିଢ଼ ଧରିଅ ଖର୍ଟେ
ଅନାହ ଡମରୁ ବଜାଇ ବୀର ନାଦେ
କାହ୍ନ କପାଳୀ ଯୋଗୀ ପଇଠ ଆଚାରେ
ଦେହ ନଅରୀ ବିହରଇ ଏକା କରେଁ ।"

**(ଡୋମ୍ବୀ- ହେରୁକ ଚର୍ଯ୍ୟା - ପଦ-୧-୨)**

ଏଠାରେ ନିଶ୍ୱଢ଼ ଗୁହ୍ୟ ସାଧନାର କଥା କୁହାଯାଇଛି । ସାଧକ ଯେତେବେଳେ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରାଇ ଉର୍ଦ୍ଧ୍ୱକୁ ଗତି କରାଏ, ସେତେବେଳେ ଏକ ଶବ୍ଦ ବା ନାଦ ସୃଷ୍ଟି ହୁଏ । ଯାହାକୁ ଏମାନେ ଅନାହତ ନାଦ ବା ଅନାହା ଡମ୍ବରୁ କହିଥାନ୍ତି । 'ନୌ-ଯାତ୍ରା ଚର୍ଯ୍ୟା'ରେ ମଧ୍ୟ ଏହି ସହଜାନନ୍ଦ ବା ମହାସୁଖ ଲାଭର କଥା କୁହଯାଇଛି । କାହ୍ନୁପାଙ୍କ ଭାଷାରେ-

"ପଞ୍ଚ ତଥାଗତ କରି କେଡୁଆଳ
ବାହିଲ କାୟା କାହ୍ନିଲ ମାୟାଜାଲ

ଗନ୍ଧ ପରସ ରସ ଯେସନ ତେସନ
ନିଦ ବିହୁଡନେ ସପନ ଯେସନ
ଚିତ୍ତ କର୍ଣ୍ଣଧାର ଶୂନ୍ୟତା ମଙ୍ଗେ
ଚଲିଲା କାହ୍ନୁ ମହାସୁଖ ସଙ୍ଗେ

ସାଧକ ଗନ୍ଧ, ସ୍ପର୍ଶ, ରସାଦି ପଞ୍ଚ ବିଷୟ ସୁଖ ତ୍ୟାଗ କରି ଅବଧୂତିକା ମାର୍ଗରେ କରୁଣାରୂପକ ନୌକାବାହି ଚିତ୍ତ ରୂପକ ମଙ୍ଗୁଆଳ ଦ୍ୱାରା ଶୂନ୍ୟତାରୂପକ ମଙ୍ଗ ମୋଡ଼ି ମାୟାଜାଲ ସଦୃଶ ଦୁସ୍ତରଭବସମୁଦ୍ରକୁ ପାରହୋଇ ମହାସୁଖ ଚକ୍ରରେ ପହଞ୍ଚିଲେ, ସହଜାନନ୍ଦ ପ୍ରାପ୍ତି ବା ସହଜସୁଖ ଲାଭ ସମ୍ଭବ ହୁଏ । ସେହିପରି 'ଡ଼ୋମ୍ବୀବିବାହ ଚର୍ଯା'ରେ ମଧ୍ୟ ସହଜାନନ୍ଦ ଲାଭର କଥା କୁହାଯାଇଛି । କବିଙ୍କ ଭାଷାରେ-

"ଅହନିଶି ସୁରତ ପ୍ରସଙ୍ଗେ ଯାଏ
ଯୋଗିନୀ ଜାଲେ ରଜନୀ ପୁହାଏ ।
ଡୋମ୍ବୀର ସଙ୍ଗେ ଯେ ଯୋଗୀ ରତ
କ୍ଷଣେ ହିଁ ନ' ଛାଡ଼େ ସହଜ ଉନ୍ମତ୍ତ ।"

ବିବାହ ପରେ ନବ-ଦମ୍ପତି ରତି ରସରେ ମଜି ରାତ୍ରୀ ଯାପନ କଲା ପରି ସାଧକ ସାଧନ ପ୍ରକ୍ରିୟାରେ ଡୋମ୍ବୀ ବା ନୈରାତ୍ମା ସହିତ ମିଳିତ ହୋଇ ସହଜ ସୁଖ ରସରେ ଉନ୍ମତ୍ତ ରହେ । ଏହି ସହଜାନନ୍ଦ ଲାଭ ଅବସ୍ଥାରେ ସାଧକର ପରିଶୁଦ୍ଧ ବୋଧିଚିତ୍ତ ନବୋଦିତ ପୂର୍ଣ୍ଣଚନ୍ଦ୍ର ପରି ଶୋଭାପାଏ । ତା' ହୃଦୟରୁ ସାଂସାରିକ ମୋହ, କାମ, ବାସନା ଆଦି ଅପସରି ଯାଇଥିବାରୁ ତା'ର ଚିତ୍ତ ହଂସଭଳି ପ୍ରତୀୟମାନ ହୁଏ । ହଂସ ଯେପରି ନୀର ମିଶ୍ରିତ କ୍ଷୀରରୁ କେବଳ କ୍ଷୀର ହିଁ ପାନ କରିଥାଏ, ସେହିପରି ସହଜାନନ୍ଦ ଅବସ୍ଥାରେ ସାଧକ ଭବ-ମାୟା-ବନ୍ଧନକୁ ଏଡ଼ାଇ ତା' ଭିତରୁ କେବଳ ପରମ ଆଧ୍ୟାତ୍ମିକ ଆନନ୍ଦ ରସହିଁ ପାନ କରିଥାଏ । ଯେଉଁଥି ପାଇଁ 'ରାଜହଂସ ଚର୍ଯା'ରେ କୁହାଯାଇଛି-

"ଜଇସେ ଚାନ୍ଦ ଉଇଆ ହୋଇ
ଚିଅରାଜ (ଚିତ୍ତ) ତଇସେ ସୋହିଅଇ ।
× × ×
ହଂସ ରାଅ ଜିମ ପାନି ଲୋଇ
ଭବ ଆହାରି ଏହୁ କାହ୍ନେ ଗାଇ ।"

## ଗୁରୁବାଦ:-

ଚର୍ଯାଗୀତିରେ ଗୁରୁବାଦ ବା ଗୁରୁ ପରମ୍ପରା ଉପରେ ଗୁରୁତ୍ୱ ଦିଆଯାଇଛି । ସହଜ ସାଧନା ହେଉଛି - "ଗୁହ୍ୟାତ୍ ଗୁହ୍ୟମ୍ ତତ୍ତ୍ୱ ।" ଅର୍ଥାତ୍- ଗୁପ୍ତ ବା ଗୂଢ଼ ରହସ୍ୟର ତତ୍ତ୍ୱ ! ଏହି ଗୁପ୍ତରହସ୍ୟ ବା ଗୂଢ଼ତତ୍ତ୍ୱକୁ ଜାଣିବାକୁ ହେଲେ ଉପଯୁକ୍ତ ଗୁରୁଙ୍କର ଆବଶ୍ୟକତା ରହିଛି । ବିନା ଗୁରୁରେ ଏହି ତତ୍ତ୍ୱକୁ ବୁଝିବା ଓ ସିଦ୍ଧି ଲାଭ ବା ସହଜାନନ୍ଦ ଲାଭ ଅସମ୍ଭବ ! ଯେଉଁଥି ପାଇଁ ସିଦ୍ଧାଚାର୍ଯ୍ୟମାନେ ସେମାନଙ୍କ ଗୀତିକା ଗୁଡ଼ିକରେ ବଜ୍ରଗୁରୁ, ବରଗୁରୁ ସଦ୍‌ଗୁରୁଙ୍କର କୃପାଲାଭ ଓ ନିର୍ଦ୍ଦେଶ ଗ୍ରହଣ ପୂର୍ବକ ସାଧନାରେ ପ୍ରବୃତ୍ତ ହେବାକୁ ପରାମର୍ଶ ଉପଦେଶ ଦେଇଛନ୍ତି । କାହ୍ନୁପା 'ନୟନବଳଚର୍ଯ୍ୟ'ରେ କହିଛନ୍ତି-

"ସଦ୍‌ଗୁରୁ ବାହେଁ ଜିତେଇ ଭବବନ୍ଦ ।"

ଅର୍ଥାତ୍ - ସଦ୍‌ଗୁରୁ ହିଁ ଏହି ଦୁସ୍ତର ଭବ ସଂସାରରୁ ପାରି କରାଇ ପାରିବେ ।

ପୁନଶ୍ଚ - କାହ୍ନୁପା ତାଙ୍କ 'ନିଷ୍ଫଳ ବୃକ୍ଷ ଛେଦ ଚର୍ଯା'ରେ କହିଛନ୍ତି- "ବର ଗୁରୁ ବଅଣେ କୁଠାର ଛିଜହ ।"

ଅର୍ଥାତ୍ - ବରଗୁରୁଙ୍କର ଆଶ୍ରୟରେ ଗୁରୁବଚନ ରୂପକ କୁରାଢ଼ୀ ଦ୍ୱାରା ସଂସାରର ମାୟା- ବନ୍ଧନକୁ କଟି ଛିନ୍ନ କର ।

ଲୁଇପା ମଧ୍ୟ ତାଙ୍କ ଗୀତିକାରେ ଗୁରୁଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ଲେଖିଛନ୍ତି-

"ଦିଢ଼ କରିଅ ମହାସୁହ ପରିମାଣ
ଲୁଇ ଭଣଇ ଗୁରୁ ପୁଛିଅ ଜାଣ ।"

ସରହପା ମଧ୍ୟ ତାଙ୍କର 'ନୌକାଚର୍ଯା' ଗୀତିକାର ପ୍ରଥମ ପଦରେ ଲେଖିଛନ୍ତି-

"କାଆଣା ବଢ଼ି ଖାଣ୍ଟି ମଣ କେଢୁଆଳ
ସଦ୍‌ଗୁରୁ ବଅଣେ ଧର ପତବାଳ ।"

ତେଣୁ ଏଥିରୁ ଜଣାଯାଏ- ଚର୍ଯାକାର ମାନେ ଗୁରୁ ଓ ଗୁରୁ ପରମ୍ପରା ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି ।

## ଭାଷା-ଶୈଳୀ:

ଚର୍ଯାଗୀତି ଗୁଡ଼ିକରେ ବ୍ୟବହୃତ ଭାଷା ମୁଖ୍ୟତଃ ଅପଭ୍ରଂଶ ଭାଷା । ମାତ୍ର- ଏହି ଭାଷାର ପ୍ରୟୋଗ ଶୈଳୀ ହେଉଛି- ସାନ୍ଧ୍ୟଭାଷା ବା ଗୂହ୍ୟାର୍ଥବୋଧକ ଭାଷା । ଏହି ଭାଷାରେ ସାଧାରଣ ଅର୍ଥ ଭିତରେ ଏକ ନିର୍ଦ୍ଦିଷ୍ଟ ନିଗୂଢ଼, ପ୍ରଛନ୍ନ ଅର୍ଥ ନିହିତ ଥାଏ । ଏହି

ଭାଷା ଅଧା ଅନ୍ଧାର ଓ ଅଧା ଆଲୁଅର ଭାଷା । ଏହାର ସାଧାରଣ ଅର୍ଥ ସହଜରେ ବୁଝି ହେଲେ ବି, ଏହାର ଜଟିଳ, ନିଗୂଢ଼ ଅର୍ଥ ଅବୁଝା ରହିଯାଏ । ସହଜିଆ ବୌଦ୍ଧ ସିର୍ଦ୍ଧାଚାର୍ଯ୍ୟ ମାନେ ସ୍ୱ-ଧର୍ମର ପ୍ରଚାର ଓ ତତ୍ତ୍ୱ- ଦର୍ଶନ ଆଦିର ପରିପ୍ରକାଶର ସହାୟକ ରୂପେ ଏହି ସାନ୍ଧ୍ୟଭାଷା ବା ଦ୍ୱି-ଅର୍ଥବୋଧକ ଭାଷାର ବ୍ୟବହାର କରିଥିଲେ । ଏହି ସାନ୍ଧ୍ୟଭାଷା ତାନ୍ତ୍ରିକ-ବୌଦ୍ଧ ପରମ୍ପରା ସିଦ୍ଧ । ତାନ୍ତ୍ରିକ ବୌଦ୍ଧ ସହଜିଆ ମାନେ ସେମାନଙ୍କର ଗହନ, ଜଟିଳ ସାଧନା ପ୍ରକ୍ରିୟା ଓ ଆଧାତ୍ମିକ ଅନୁଭବକୁ ସାଂକେତିକ ଗୁହ୍ୟ ଭାଷାରେ ଲେଖୁଥିଲେ । ସରହପାଦ ତାଙ୍କର ଏକ ଦୋହାରେ ଏହି କଥା ସୂଚିତ କରିଛନ୍ତି ।

'ସରହେ ଗହିଣ ଗହରି ଭାସ କହିଅ ।'

ଅର୍ଥାତ୍- ଏଥିରେ ଗହନ ଏବଂ ଗଭୀର କଥା ସୂଚିତ କରିଅଛି । 'ଚର୍ଯାଗୀତି'ରେ ସାଙ୍କେତିକ ସାନ୍ଧ୍ୟଭାଷା ପ୍ରୟୋଗର ଏକ ମନୋଜ୍ଞ ଉଦାହରଣ ହେଲା-

"ଦୁଲି ଦୁହି ପିଟା ଧରଣ ନ ଜାଅ
ରୁଖେର ତେନ୍ତୁଲି କୁମ୍ଭୀରେ ଖାଅ ।
ଆଙ୍ଗଣ ଘରପଣ ସୁସ ଭୋ ବିଆତୀ
କାନେର୍ଟ ଚୌରୀ ନିଲ ଅଧରାତି ।"

ଏହାର ସାଧାରଣ ଅର୍ଥ–

ଦୁହାଁ ହୋଇଥିବା ଦୁଧ ଠେକିରେ ଧରୁନାହିଁ । ଗଛର ତେନ୍ତୁଳି କୁମ୍ଭୀର ଖାଉଛି । ଘର ଅଗଣାରୁ ରାତି ଅଧରେ ଚୋର କାନ କାଟି ଅଳଙ୍କାର ଲୁଟିନେଲା ଇତ୍ୟାଦି । ମାତ୍ର- ଏହାର ଗୂହ୍ୟ, ନିଗୂଢ଼ ଅର୍ଥ ହେଉଛି- ସାଧକ ଇଡ଼ା- ପିଙ୍ଗଳା ନାଡ଼ୀ ଦ୍ୱୟ ଦେଇ ପଞ୍ଚ ପ୍ରାଣବାୟୁକୁ ନାଭିସ୍ଥିତ ମଣିପୁର ଚକ୍ରରେ ଏକତ୍ରୀତ କରାଇ ସୁଷୁମ୍ନା ବା ଅବଧୂତିକା ମାର୍ଗରେ ଉର୍ଦ୍ଧ୍ୱକୁ ଗତି କରାଇ ମସ୍ତିଷ୍କର ସହସ୍ରାର ଚକ୍ରରେ ନୈରାତ୍ମା ବା ନୈରାମଣୀ ସହିତ ମିଳିତ କରାଇ ସହଜାନନ୍ଦ ଲାଭ କରେ । ମୋଟାମୋଟି ଭାବରେ ସମଗ୍ର ଚର୍ଯାଗୀତିକା ହିଁ ଏହି ଦ୍ୱି-ଅର୍ଥବୋଧକ, ସାଙ୍କେତିକ, ସାନ୍ଧ୍ୟାଭାଷା- ଶୈଳୀରେ ହିଁ ରଚିତ । ପୁନଶ୍ଚ ଏହି ଭାଷା- ଶୈଳୀ ଭିତରେ ବିଭିନ୍ନ ରାଗ, ରାଗିଣୀ, ସୁମଧୁର ଛନ୍ଦ ଓ ଅଳଙ୍କାର ଆଦିର ପ୍ରୟୋଗ ମଧ କରାଯାଇଛି । ଏହି ଗୀତିକା ଗୁଡ଼ିକ ବେଶ୍ ଛନ୍ଦୋବଦ୍ଧ, ଆଳଙ୍କାରିକ, ସଂଗୀତ ଧର୍ମୀ ଓ ଗୀତିମୟ' ଏଥିରେ ଉପମା, ରୂପକ, ଉତ୍ପ୍ରେକ୍ଷା ଓ ଶ୍ଳେଷାତ୍ମକ ଶବ୍ଦ ଆଦିର ପ୍ରୟୋଗ କରାଯାଇଛି । ଏଥିରେ ପ୍ରୟୋଗ ହୋଇଥିବା ବିଭିନ୍ନ ରାଗ- ରାଗିଣୀ ଯୁକ୍ତ ଛନ୍ଦ ଗୁଡ଼ିକ ହେଲା- ପଟମଞ୍ଜରୀ, ଗଉଡ଼ା, ମାଳସୀ, ମଲ୍ଲାରୀ, ଗୁର୍ଜ୍ଜରୀ, ଭୈରବୀ, କାମଦ, ବରାଡ଼ି, ଶବରୀ, ଅରୁ, ଦେବକ୍ରୀ, ଧନସୀ, ବଙ୍ଗଳା, ଇନ୍ଦ୍ରତାଳ ଇତ୍ୟାଦି ।

ଆଲଙ୍କାରିକ ବର୍ଣ୍ଣନାରେ ଚର୍ଯ୍ୟାକାରମାନେ ମଧ୍ୟ ପଛେଇ ଯାଇ ନାହାଁନ୍ତି । ଆଚାର୍ଯ୍ୟ ଶବରୀପା ତାଙ୍କର "ଶବର-ଶବରୀ ପ୍ରେମଚର୍ଯ୍ୟା" ଗୀତିକାରେ ଶବର-ଶବରୀ ରୂପକ ମାଧ୍ୟମରେ ଜୀବ-ପରମର ମିଳନକୁ ହିଁ- ସୂଚିତ କରିଛନ୍ତି । କବି ଲୁଇପା ମଧ୍ୟ ମଣିଷ ଶରୀରକୁ ବୃକ୍ଷ ସହିତ ଓ ପଞ୍ଚ ଇନ୍ଦ୍ରିୟକୁ ବୃକ୍ଷର ଡାଳ ସହିତ ଉପମା ଦେଇଛନ୍ତି ।

"କାଆ ତରୁବର ପଞ୍ଚ ବିଡ଼ାଳ ।"

ସେହିପରି ଲୁଇପା ତାଙ୍କ 'ସହଜତତ୍ତ୍ୱଚର୍ଯ୍ୟା'ରେ ସୁନ୍ଦର ଉପମା ମାଧ୍ୟମରେ ଶୂନ୍ୟତତ୍ତ୍ୱ ବା ସହଜତତ୍ତ୍ୱର ବର୍ଣ୍ଣନା କରିଛନ୍ତି । ଲୁଇପା ମହାଶୂନ୍ୟ ବା ସହଜଶୂନ୍ୟକୁ ଜଳରେ ପ୍ରତିବିମ୍ବିତ ଚନ୍ଦ୍ର ସଙ୍ଗେ ତୁଳନା କରିଛନ୍ତି । ଯେଉଁଥିପାଇଁ ସେ ଉପମା ଛଳରେ କହିଛନ୍ତି-

"ଉଦକ ଚାନ୍ଦ ଜିମ ସାଚ ନା ମିଛା ।" ଆଚାର୍ଯ୍ୟ ଭୁସୁକୁପାଦ ତାଙ୍କର ଏକ ଗୀତିକାରେ ରୂପକ ମାଧ୍ୟମରେ ଶୃଙ୍ଗାର ଚିତ୍ର ବର୍ଣ୍ଣନା କରିଛନ୍ତି ।

"ଅଧରାତି ଭର କମଳ ବିକସଉ
ବତିସ ଜାଇଣୀ ତସୁ ଅଙ୍ଗ ଉଲ୍ଲସଉ ।"

ଆଚାର୍ଯ୍ୟ କାହ୍ନୁପା ମଧ୍ୟ ତାଙ୍କ 'ଡୋମ୍ବୀଚର୍ଯ୍ୟା'ରେ ଶୃଙ୍ଗାର ରସର ଆଳଂକାରିକ ବର୍ଣ୍ଣନା କରିଛନ୍ତି । ଏହିସବୁ ଆଲୋଚନା ଦୃଷ୍ଟିରୁ ଦେଖିଲେ ଜଣାଯାଏ ଚର୍ଯ୍ୟାଗୀତିର ସାମାଜିକ, ଆଧ୍ୟାତ୍ମିକ ଓ ନୈତିକ ସାଙ୍କେତିକ ମୂଲ୍ୟବୋଧ ବେଶ୍ ଅକ୍ଷୁର୍ଣ୍ଣ ରହିପାରିଛି । ଏହି ଚର୍ଯ୍ୟାଗୀତିର ଶବ୍ଦମାନ, ବିଭକ୍ତି, ପ୍ରତ୍ୟୟ ସର୍ବନାମ, କ୍ରିୟାବିଧି, ବାକ୍ୟଗଠନ ରୀତି ପ୍ରାଚୀନ ଓଡ଼ିଆ ଭାଷା ହେଲେ ହେଁ, ଏହା ଆଧୁନିକ ଓଡ଼ିଆ ଭାଷାର ବେଶ୍ ନିକଟବର୍ତ୍ତୀ । ବାସ୍ତବରେ ଏହି ଗ୍ରନ୍ଥଟି ପ୍ରାଚୀନ ଓଡ଼ିଆ ଭାଷା ସାହିତ୍ୟରେ ଏକ ଅମୂଲ୍ୟ, ଅଭ୍ରାନ୍ତ ସ୍ମାରକୀ ।



# ନାଥଧର୍ମଦର୍ଶନ ଓ ଓଡ଼ିଆ ନାଥସାହିତ୍ୟ

ଖ୍ରୀଷ୍ଟିୟ ଏକାଦଶ-ଦ୍ୱାଦଶ ଶତାବ୍ଦୀ ବେଳକୁ ଓଡ଼ିଶାର ଧର୍ମ ଦିଗ୍‌ବଳୟରେ ଯୋଗ କୈନ୍ଦ୍ରିକ, ସଂଯମଶୀଳ ଏକ ନୂତନ ଧର୍ମଦର୍ଶନର ଅଭ୍ୟୁଦୟ ଘଟିଥିଲା । ଏହି ନୂତନ ସୃଷ୍ଟି ଧର୍ମ ଥିଲା ନାଥଧର୍ମ । ଏହି ଧର୍ମର ଅଭ୍ୟୁଦୟ ସମୟବେଳକୁ ଭାରତୀୟ ଅଧ୍ୟାତ୍ମିକ ଦିଗ୍‌ବଳୟ ବୌଦ୍ଧତନ୍ତ୍ର ଓ ସହଜିଆ ବୌଦ୍ଧଧର୍ମର ଉଚ୍ଛୃଙ୍ଖଳ ଯୌନଚର୍ଯ୍ୟା, ଯୌନ ବ୍ୟଭିଚାର, ଭ୍ରଷ୍ଟାଚାରରେ ଭାରାକ୍ରାନ୍ତ ହୋଇ ପଡ଼ିଥିଲା । ଯା' ଫଳରେ ତତ୍କାଳୀନ ସମାଜ ଜୀବନ ଓ ଧର୍ମୀୟ ଜୀବନ ମଧ୍ୟ କଳୁଷିତ ପର୍ଯ୍ୟୁଷିତ ହୋଇ ପଡ଼ିଥିଲା । ଭାରତୀୟ ସନାତନୀ ହିନ୍ଦୁଧର୍ମ ଓ ବୈଦିକ ଆର୍ଯ୍ୟ ସଂସ୍କୃତିରେ ମଧ୍ୟ ବିପର୍ଯ୍ୟୟ ଦେଖା ଦେଇଥିଲା । ଏହି ଭଳି ଏକ ବିଡ଼ମ୍ବିତ ମୁହୂର୍ତ୍ତରେ ତତ୍କାଳୀନ ସମାଜ ଓ ଧର୍ମୀୟ ଜୀବନକୁ ଭ୍ରଷ୍ଟାଚାର, ବ୍ୟଭିଚାର, କଳୁଷିତା ଓ ଅବକ୍ଷୟର ଗଣ୍ଡି ମଧ୍ୟରୁ ଉଦ୍ଧାର କରି ସମାଜ ଓ ଧର୍ମୀୟ ଜୀବନକୁ ସୁସଂହତ, ମାର୍ଜିତ, ଶୁଦ୍ଧପୂତ କରିବାର ଲକ୍ଷ୍ୟ ନେଇ ନାଥଧର୍ମର ଆବିର୍ଭାବ ଘଟିଥିଲା । ଏହି ଧର୍ମର ପ୍ରାଣ ପ୍ରତିଷ୍ଠାତା, ମହାଯୋଗୀ ସିଦ୍ଧସାଧକମାନେ ସମାଜ ଓ ଆଧ୍ୟାତ୍ମିକ ଜୀବନକୁ ସଂଯମ, ସନ୍ନ୍ୟାସ, ଯୋଗସାଧନା, ନିର୍ବାଣ ବା ମୁକ୍ତିର ମାର୍ଗ ଦେଖାଇଥିଲେ । ଏହି ନାଥଧର୍ମର ପ୍ରମୁଖ ମହାନ୍ ସିଦ୍ଧସାଧକମାନେ ଥିଲେ ମୀନନାଥ, ମତ୍ସ୍ୟେନ୍ଦ୍ରନାଥ, ଗୋରେକ୍ଷନାଥ । ଏହି ସାଧକମାନେ ନିଜର ସଂଯମ, ଏକାଗ୍ରତା, ଏକନିଷ୍ଠତା, କୃଚ୍ଛ୍ର ସାଧନା, କାୟାସିଦ୍ଧି, ଯୋଗାଭ୍ୟାସ ଓ ଯୋଗଲବ୍ଧ ଅଲୌକିକଜ୍ଞାନ ଓ ଶକ୍ତିଦ୍ୱାରା ଜନସମାଜକୁ ଚମତ୍କୃତ ଓ ଆକୃଷ୍ଟ କରି ଯୋଗମାର୍ଗକୁ ଏକ ସର୍ବଭାରତୀୟ ଧର୍ମପନ୍ଥା ରୂପେ ପ୍ରତିଷ୍ଠିତ କରାଇ ପାରିଥିଲେ ।

'ନାଥ' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ପ୍ରଭୁ ବା ସ୍ୱାମୀ । ମାତ୍ର- 'ନାଥ୍' ଧାତୁର ଅର୍ଥ ହେଉଛି ତାପ, ଐଶ୍ୱର୍ଯ୍ୟ, ପ୍ରାର୍ଥନା ବା ଆଶୀର୍ବାଦ । ତେଣୁ ଯାହାଙ୍କ ଠାରୁ ଐଶ୍ୱର୍ଯ୍ୟ, ଆଶୀର୍ବାଦ ଓ କଲ୍ୟାଣ ଲାଭ ହୁଏ ସେହି ପ୍ରଭୁ, ସ୍ୱାମୀ ବା ନାଥ ପଦବାଚ୍ୟ । ପଦ୍ମପୁରାଣ, କପିଳଗୀତା, ରାଜଗୁହ୍ୟ ଆଦିରେ 'ନାଥ' ସଂପର୍କୀତ ବହୁ ଉଲ୍ଲେଖ ରହିଛି । 'ରାଜଗୁହ୍ୟ'ରେ କୁହାଯାଇଛି-

"ନକାରୋଽନାଦି ରୂପଞ୍ଚ ଥକାରଃ ସ୍ଥାପତ୍ୟେ ସଦା
ଭୁବନତ୍ରୟମେବୈକଃ ଶ୍ରୀ ଗୋରକ୍ଷ ନମସ୍ତୁତେ ।"

ଏଥିରୁ ଜଣାଯାଏ 'ନାଥ' ହେଉଛି ଗୋରେଖପନ୍ଥୀ ଯୋଗୀମାନଙ୍କର ଏକ ଉପାଧି । ଓଡ଼ିଶାରେ ଏହି 'ନାଥ' ଶବ୍ଦ ଯୋଗୀ ଜାତିକୁ ହିଁ ବୁଝାଇଥାଏ ।

ଓଡ଼ିଶାରେ ଖ୍ରୀଷ୍ଟୀୟ ଏକାଦଶ-ଦ୍ୱାଦଶ ଶତାବ୍ଦୀ ବେଳକୁ ନାଥଧର୍ମର ଅଭ୍ୟୁଦୟ ଓ କ୍ରମ ପ୍ରସାରିତ ହୋଇଥିଲେ ହେଁ, ଭାରତୀୟ ଆଧାତ୍ମିକ ଦିଗ୍‌ବଳୟରେ ବହୁ ପ୍ରାଚୀନ କାଳରୁ ଏହାର ଅସ୍ତିତ୍ୱ ବିଦ୍ୟମାନ ଥିବାର ସୂଚନା ମିଳେ । ବୈଦିକ ଯୁଗରେ ନାଥମାନେ 'ବ୍ରାତ୍ୟ' ନାମରେ ଅଭିହିତ ଥିବାର ଜଣାଯାଏ । ଅଥର୍ବବେଦର 'ବ୍ରାତ୍ୟକାଣ୍ଡ' ତତ୍କାଳୀନ ନାଥଧର୍ମ ଓ ନାଥ ଯୋଗୀମାନଙ୍କର ସଂକେତ ବହନ କରେ । ବୈଦିକ ଯୁଗର ଏହି 'ବ୍ରାତ୍ୟ' ପରବର୍ତ୍ତୀ ଉପନିଷଦ ଓ ପୁରାଣ ଯୁଗରେ ନାଥ ଓ ଯୋଗୀ ନାମରେ ଅଭିହିତ ହୋଇଥିବାର  ଜଣାଯାଏ ।

ଐତରେୟ ଉପନିଷଦ, ଶ୍ୱେତାଶ୍ୱତର ଉପନିଷଦ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ, କଠୋପନିଷଦ, ଋକ୍‌ବେଦ ସଂହିତା ପ୍ରଭୃତିରେ ନାଥଧର୍ମର ଯୋଗସାଧନା ପ୍ରଣାଳୀ, ଅଦ୍ୱୟ ତାରକ, ଧ୍ୟାନବିନ୍ଦୁ, ନାଦବିନ୍ଦୁ, ତ୍ରିଶିଖ, ଯୋଗକୁଣ୍ଡଳୀ ଆଦିର ବର୍ଣ୍ଣନା ମିଳେ । ସେହିପରି ବ୍ରହ୍ମପୁରାଣ, ସ୍କନ୍ଦପୁରାଣ, ଶିବପୁରାଣ ପ୍ରଭୃତି ମଧ୍ୟ ନାଥଧର୍ମ ଦର୍ଶନ ଓ ନାଥଧର୍ମର ପ୍ରାଚୀନତା ସଂପର୍କରେ ପ୍ରାମାଣିକ ସୂଚନା ମିଳେ ।

ନାଥଧର୍ମର ପ୍ରଧାନ ଆରାଧ୍ୟ ଦେବତା ହେଉଛନ୍ତି ଯୋଗାଧିପତି ସ୍ୱୟଂ ଭଗବାନ ଶିବ । ଶୈବଧର୍ମର ସଂଯମ, ତ୍ୟାଗଦୀପ୍ତ ଓ ଯୋଗସାଧନା ପିଣ୍ଡିତ ଧାରାର ପ୍ରଭାବ ନାଥଧର୍ମ ଉପରେ ପଡ଼ିଅଛି । ବହୁ ପ୍ରାଚୀନ କାଳରୁ ଓଡ଼ିଶାର ଆର୍ଯ୍ୟେତର ଆଦିମ ଅଧିବାସୀମାନେ ଶିବଙ୍କୁ 'ଆଦିଦେବ' ବା 'ଆଦିନାଥ' ରୂପେ ପୂଜା କରୁଥିଲେ । ଓଡ଼ିଶାର ନାଥଧର୍ମ ଇତିହାସରୁ ଜଣାଯାଏ- ଓଡ଼ିଶାର ଗଙ୍ଗବଂଶୀ ରାଜା ଭାନୁଦେବଙ୍କ ପୁତ୍ର ଶୈଳେନ୍ଦ୍ରଦେବ ଯୋଗସାଧନାରେ ନିବିଷ୍ଟ ହୋଇ ନିଜକୁ 'ଶୈଳନାଥ' ନାମରେ ପରିଚିତ କରାଇଥିଲେ । ସେ ରାଜନଗର ଠାରେ ଏକ ମଠ ସ୍ଥାପନା କରି ସେଥିରେ ନାଥ ସିଦ୍ଧାଚାର୍ଯ୍ୟ ମହାଯୋଗୀ ମତ୍ସ୍ୟେନ୍ଦ୍ରନାଥଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରିଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଶାର ଅନ୍ୟତମ ସିଦ୍ଧଗୁରୁ ଗୋରେଖନାଥଙ୍କ ନାମରେ ଓଡ଼ିଶାରେ ବହୁ ଗାଦୀ ଓ ମଠମାନ ପ୍ରତିଷ୍ଠା ହୋଇଥିବାର ଜଣାଯାଏ । ଖ୍ରୀଷ୍ଟିୟ ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀବେଳକୁ ଗୋରେଖନାଥଙ୍କର ଶିଷ୍ୟ କପିଳମୁନି ଭୁବନେଶ୍ୱର ଠାରେ 'କାପାଳୀମଠ' ସ୍ଥାପନ କରିଥିଲେ । ନାଥଧର୍ମାବଲମ୍ବୀମାନଙ୍କର ଅନ୍ୟ ଏକ ପ୍ରଧାନ ମଠ ହେଲା କଟକ ଜିଲ୍ଲାର

କେନ୍ଦ୍ରାପଡ଼ାସ୍ଥିତ କାରିଆ ବାଙ୍କ ମଠ । ଏହି ମଠ ହେଉଛି କାନଫଟା ବା କାନାଚିରା ଯୋଗୀମାନଙ୍କର ପ୍ରଧାନ ପୀଠ । ଏହାଛଡ଼ା କଟକ ଜିଲ୍ଲାର ହରିପୁର, ପଦ୍ମପୁର, ସାଲେପୁର, ଆଳି, ଚଉଦକୁଲାଟ, ଲହଙ୍ଗା ଠାରେ ନାଥ ସଂପ୍ରଦାୟର ବିଭିନ୍ନ ଗାଦୀ ଓ ମଠମାନ ପରିଦୃଷ୍ଟ ହୁଏ । ପୁରୀ ସହରରେ ମଧ ନାଥଯୋଗୀମାନଙ୍କର ଏକ ପ୍ରାଚୀନ ମଠ 'ସତ୍ୟନାଥ ମଠ' ରହିଛି । ବ୍ରହ୍ମାଙ୍କର ଅନ୍ୟ ନାମ ସତ୍ୟନାଥ ହୋଇଥିବାରୁ ଏହି ଯୋଗୀମାନେ ନିଜକୁ ବ୍ରହ୍ମ ସଂପ୍ରଦାୟୀ ରୂପରେ ଅଭିହିତ କରିଥାନ୍ତି । ଏହି ସତ୍ୟନାଥ ମଠରେ ଏକପାଦ ବିଶିଷ୍ଟ ଭୈରବ ମୂର୍ତ୍ତି ପୂଜା ପାଉଛନ୍ତି ।

ପୁରୀ ଜିଲ୍ଲାର ପିପିଲି ଅନ୍ତର୍ଗତ 'ପାଣି ଦୋଳମଠ' ନାଥ ସଂପ୍ରଦାୟର ଏକ ପ୍ରମୁଖ ମଠ । ଢେଙ୍କାନାଳ ଜିଲ୍ଲା ହେଉଛି ନାଥଯୋଗୀମାନଙ୍କର ଏକ ପ୍ରମୁଖ ପୀଠ । ନାଥଧର୍ମର ମହାନ୍ ସିଦ୍ଧସାଧକ ମହାଯୋଗୀ ଗୋରେଖନାଥ ଢେଙ୍କାନାଳରେ ବହୁ କାଳ ଧରି ଅବସ୍ଥାନ କରିଥିଲେ । ଢେଙ୍କାନାଳର ପ୍ରସିଦ୍ଧ ଶୈବପୀଠ କପିଳାସଠାରେ ସେ ନାଥଗୁରୁ ମତ୍ସ୍ୟେନ୍ଦ୍ରନାଥଙ୍କର ସାନ୍ନିଧ ଲାଭ କରିଥିଲେ । ମତ୍ସ୍ୟେନ୍ଦ୍ରନାଥଙ୍କର ସଂସ୍ପର୍ଶରେ ଆସିବା ଯୋଗୁଁ ଗୋରେଖନାଥଙ୍କର କବିତ୍ୱ, ବ୍ୟକ୍ତିତ୍ୱ ଓ ପ୍ରତିଭା ଆହୁରି ବିକଶିତ ହୋଇଥିଲା । ଏଥରୁ ଜଣାଯାଏ ଯେ ଶୈବପୀଠ କପିଳାସ ମଧ ଏହି ନାଥଧର୍ମାବଲମ୍ବୀମାନଙ୍କର ପ୍ରଧାନ ପୀଠ ଥିଲା । ଏହି ନାଥଯୋଗୀମାନେ ତ୍ରିଶୂଳ, ଡମ୍ବରୁ, ମୃଗଛାଲ, ଶଙ୍ଖ, କଙ୍କଣ, କୌପୀନ, କେନ୍ଦରା, ଏକତାରା ପ୍ରଭୃତି ବ୍ୟବହାର କରୁଥିଲେ । କେବଳ କପିଳାସ ନୁହେଁ; ଢେଙ୍କାନାଳ ଜିଲ୍ଲାରେ ବାଲିବନ୍ଧ, ଯୋରନ୍ଦା, କନ୍ଦରପୁର, ଟିକରପଡ଼ା ସିମିଳିଆ, ମାର୍ଥାପୁର ପ୍ରଭୃତି ସ୍ଥାନମାନଙ୍କରେ ଏହି ନାଥସଂପ୍ରଦାୟୀମାନେ ବସବାସ କରୁଛନ୍ତି । ସମ୍ବଲପୁର ଜିଲ୍ଲାରେ ମଧ ନାଥଯୋଗୀମାନଙ୍କର ବହୁ ମଠ ପରିଦୃଷ୍ଟ ହୁଏ । ଏମାନଙ୍କୁ ପଣ୍ଡିମାଯୋଗୀ କୁହାଯାଏ । ଏମାନେ କାନଫଟା ସଂପ୍ରଦାୟଭୁକ୍ତ । ଏମାନେ କର୍ଣ୍ଣରେ ତମ୍ବାର କୁଣ୍ଡଳ, ହାତରେ ତମ୍ବାର ବଳୟ ଓ ଗୈ°ୀକବସ୍ତ୍ର ପରିଧାନ କରନ୍ତି । ସମ୍ବଲପୁର ଜିଲ୍ଲାର ନୂଆପଲ୍ଲୀ, ପରମାନନ୍ଦପୁର, ପଦ୍ମପୁର, ବିଜାଡ଼ିହ, ବୋଡ଼ାସମ୍ବର ପ୍ରଭୃତି ଠାରେ ଏହି ସଂପ୍ରଦାୟର ମଠ ମାନ ଅବସ୍ଥିତ । ଏହା ଛଡ଼ା ଗଞ୍ଜାମ, ଆଠମଲ୍ଲିକ, ବୌଦ୍ଧ ପ୍ରଭୃତି ଅଞ୍ଚଳରେ ମଧ ନାଥସଂପ୍ରଦାୟ ମାନଙ୍କର ମଠମାନ ନିର୍ମିତ ହୋଇଥିଲା । ଏ ସମସ୍ତ ଧର୍ମୀୟ ପ୍ରତିଷ୍ଠାନମାନଙ୍କ ସହିତ ବହୁ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ କୃତିମାନଙ୍କରୁ ମଧ ନାଥଧର୍ମଦର୍ଶନ ଓ ଏହି ସଂପ୍ରଦାୟ ସଂପର୍କରେ ଅନେକ ସୂଚନା ମିଳେ ।

ନାଥଧର୍ମ ଦର୍ଶନ ସଂପର୍କିତ ଗ୍ରନ୍ଥଗୁଡ଼ିକ ହେଲା ଶିଶୁବେଦ, ଅମରକୋଷଗୀତା, ଗୋରେଖସଂହିତା, ମତ୍ସ୍ୟେନ୍ଦ୍ରଗୀତା, ଗୋରେଖବାଣୀ, ସପତାଙ୍ଗ ବା ସପ୍ତାଙ୍ଗଯୋଗସାଧନା

ପ୍ରଭୃତି । ଏତଦ୍‌ଭିନ୍ନ ନାଥଧର୍ମଦର୍ଶନ ଦ୍ୱାରା ପ୍ରଭାବିତ ଆହୁରି ଅନେକ ଗ୍ରନ୍ଥ ମଧ୍ୟ ରହିଛି । ଯେଉଁ ଗୁଡ଼ିକରୁ ମଧ୍ୟ ନାଥଧର୍ମଦର୍ଶନ ସଂପର୍କୀୟ ସୂଚନା ମିଳେ ।

ଏହି ସବୁ ଗ୍ରନ୍ଥଗୁଡ଼ିକ ହେଲା ପଞ୍ଚସଖା ଯୁଗର ବରେଣ୍ୟ କବି ଅଚ୍ୟୁତାନନ୍ଦ ଦାସଙ୍କର ଶୂନ୍ୟସଂହିତା, ଯଶୋବନ୍ତ ଦାସଙ୍କର ଟୀକାଗୋବିନ୍ଦଚନ୍ଦ୍ର, ଶିବ ସ୍ୱରୋଦୟ ଆତ୍ମପରଚେଗୀତା, ଅନନ୍ତ ଦାସଙ୍କର ହେତୁଉଦୟଭାଗବତ, ବଳରାମ ଦାସଙ୍କ ସପ୍ତାଙ୍ଗ ଯୋଗସାର ଟୀକା । ଏହା ସହିତ ଚୈତନ୍ୟ ଭାଗବତ ଓ ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କର ରୁଦ୍ରସୁଧାନିଧି ଗ୍ରନ୍ଥ ମଧ୍ୟ ନାଥଧର୍ମଦର୍ଶନ ପ୍ରଭାବିତ । ଏହିସବୁ ନାଥଧର୍ମଦର୍ଶନ ସଂପର୍କିତ ଗ୍ରନ୍ଥଗୁଡ଼ିକ ସଂପର୍କରେ ଶୂନ୍ୟ ସଂଚାରୀ ଦୃଷ୍ଟିପାତ କରାଯାଇପାରେ ।

**ସୀସୁଦେବ:-**

ଏହା ନାଥଧର୍ମଦର୍ଶନ ସମ୍ବଳିତ ଏକ ପ୍ରାଚୀନ ଗ୍ରନ୍ଥ । ଏହି ଗ୍ରନ୍ଥରେ ପଚିଶ ଗୋଟି ଶ୍ଳୋକ ରହିଛି । ଏହି ଗ୍ରନ୍ଥଟି ଖ୍ରୀଷ୍ଟିୟ ଏକାଦଶ-ଦ୍ୱାଦଶ ଶତାବ୍ଦୀରେ ଗୋରେଖନାଥଙ୍କ ଦ୍ୱାରା ରଚିତ ହୋଇଥିବାର ଜଣାଯାଏ । ଏହାର ଭାଷାଶୈଳୀ ଉଭୟ ଗଦ୍ୟ ଏବଂ ପଦ୍ୟାତ୍ମକଶୈଳୀ । ଅପଭ୍ରଂଶ ଭାଷା ମିଶ୍ରିତ ପ୍ରାଚୀନ ଓଡ଼ିଆ ଭାଷାରେ ଏହା ରଚିତ । ନାଥସଂପ୍ରଦାୟର ଆଧ୍ୟାତ୍ମିକତତ୍ତ୍ୱ ଓ ସାଧନ ମାର୍ଗ ଏଥିରେ ପ୍ରକଟିତ ହୋଇଛି । ଏହି ଗ୍ରନ୍ଥରେ ନାଥ ସାଧନ ମାର୍ଗର ଦୁଇ ଗୋଟି ଧାରା ଯଥା- ଷଡ଼ଚକ୍ର ସାଧନା ଓ ଓଲଟ ସାଧନାର କଥା କୁହାଯାଇଛି ।

ଗୋରେଖନାଥ ମଣିଷର ଜନ୍ମ-ମୃତ୍ୟୁଚକ୍ର ଆତ୍ମତତ୍ତ୍ୱ ଓ ଯୋଗତତ୍ତ୍ୱର ନିଗୂଢ଼ ସାଧନ ମାର୍ଗ ସଂପର୍କରେ କହିଛନ୍ତି-

'ଆହୁଟ ହାତ କଲେ କର ଭିତର
କାହିଂ ଥାଇଂ ଜୀବ ଦେଉଛି ଉତର ।
ତଦପାନ୍ତ ଯଦି ଜପାଜପ ନାହିଁ
ମଲେ ପ୍ରାଣ ପୁଣି କାହିଂ ସମ୍ଭଇ ।"

ସୀସୁବେଦରେ ମଧ୍ୟ ମୋକ୍ଷ ବା ମହାସୁଖ ଲାଭର କଥା କୁହାଯାଇଛି । ଗୋରେଖନାଥ କହିଛନ୍ତି ଷଡ଼ଚକ୍ର ସାଧନା ମାଧମରେ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରାଇ ପ୍ରାଣବାୟୁକୁ ସୁଷୁମ୍ନା ମାର୍ଗ ଦେଇ ଉର୍ଦ୍ଧ୍ୱକୁ ଉତ୍ତୋଳିତ କରି ସହସ୍ରାର ଚକ୍ରରେ ନିରଞ୍ଜନ ସହ ମିଳିତ କରାଇଲେ ମହାସୁଖ ଲାଭ ସମ୍ଭବ ହେବ । କବିଙ୍କ ଭାଷାରେ-

"ପବନ ପାଲଟିବେ ଷଡ଼ଚକ୍ର ଫୁଟିବେ
ସତ ରହିବେ, ଶୁଖିଯିବେ ପାଣି ।
ଚନ୍ଦ୍ର, ସୂର୍ଯ୍ୟ ଯେଉଁ ଯୋଗୀ ଗଣ୍ଠି ପାଡ଼ି ପାରଇ
ସେ ଯୋଗୀ ଅତି ଗରୁହ ବିନ୍ଧାଣୀ ।"

ଏହି ସବୁ ନିଗୂଢ଼ ଯୋଗ ସାଧନା କଥା ସହିତ ଏଥିରେ ସହଜ ସମାଧି ଯୋଗର ମଧ୍ୟ ବର୍ଣ୍ଣନା ରହିଛି ।

କବିଙ୍କ ଭାଷାରେ-

"ବଗ ଯେସେ ମନ
ମାଛ ଯେସେ ପବନ
ନୀର ଯେସେ ବିନ୍ଦୁଟି
ମନପବନକୁ ଲୟ କଲେ
ବଗ, ମାଛ ଯେ' ଅଚଳ ହୁଅଇଟି ।
ଏହାକୁ ସହଜ ସମାଧି କହିଂ ।"

**ଗୋରେଖ ସଂହିତା:-**

ଏହା ନାଥଧର୍ମର ଏକ ମହାନ୍ ଯୋଗତତ୍ତ୍ୱ ଗ୍ରନ୍ଥ । ଏହି ଗ୍ରନ୍ଥରେ ଗୋରେଖନାଥ ବହୁ ଅଲୌକିକ କଥାବସ୍ତୁର ଅବତାରଣା କରିଛନ୍ତି । ନାଥଧର୍ମଦର୍ଶନ ପ୍ରତି ଲୋକମାନଙ୍କୁ ଆକୃଷ୍ଟ କରାଇବା ଉଦ୍ଦେଶ୍ୟରେ ଏଥିରେ ଅଲୌକିକ କଥାବସ୍ତୁର ଉପସ୍ଥାପନା କରାଯାଇଛି । ଏହା ସହିତ ନାଥଧର୍ମର ଯୋଗତତ୍ତ୍ୱ, ଓ ଯୋଗୀମାନଙ୍କର କୁଛୁ ସାଧନା ପ୍ରଣାଳୀ ଏଥିରେ ବର୍ଣ୍ଣିତ ହୋଇଛି । ଏହି ଗ୍ରନ୍ଥ ଆରମ୍ଭରେ ନୀଳାଦ୍ରିବିହାରୀ ନିରଞ୍ଜନ ପୁରୁଷଙ୍କ ବନ୍ଦନା କରାଯାଇ ହାଡ଼ିପା ଓ ଗୋବିନ୍ଦଚନ୍ଦ୍ରଙ୍କ କଥୋପକଥନ ଛଳରେ ବିଷୟବସ୍ତୁର ଆରମ୍ଭ ହୋଇଛି । ପ୍ରସଙ୍ଗ କ୍ରମେ ଏଥିରେ ଷଡ଼ଚକ୍ର ସାଧନା, ଅଷ୍ଟାଙ୍ଗ ଯୋଗସାଧନା, ଅଜପାଜପ ପ୍ରଭୃତିର ବର୍ଣ୍ଣନା କରାଯାଇଛି । ଗୋରେଖନାଥ ନାଥଧର୍ମର ଷଡ଼ଚକ୍ର ସାଧନାର ନିଗୂଢ଼ ପଦ୍ଧତିକୁ ଏଥିରେ ସରଳ ଭାବରେ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"କେବଣ ପରଚେ ହେଲେ ବନ୍ଦୀ ଦିଢ଼ ହୋଇ
କେବଣ ହିଁ ଚକ୍ରେ ଦେବଚନ୍ଦ୍ର ଯେ ରହଇଂ ।
କେଉଁ ଚକ୍ରଠାରେ ସେ ପବନ ଅବିରୋଧ

କେବଣ ହିଁ ଚକ୍ର ଯେ ମନକୁ ପ୍ରବୋଧେ
ଚକ୍ର ସେ କେବଣ ଠାରେ ଧରଇଂ ଧ୍ୟାନ
କେବଣ ହିଁ ଚକ୍ରଠାରେ ବିଶ୍ରାମଇଂ ମନ ।

ଏହି ଗ୍ରନ୍ଥରେ ପରମାତ୍ମାଙ୍କୁ ହଂସ ରୂପରେ, ଉଷ୍ଣୀଷଚକ୍ରକୁ କାଳିନ୍ଦୀ ରୂପରେ ସହସ୍ରାର ଚକ୍ରକୁ ସହସ୍ର ଦଳ ପଦ୍ମ ରୂପରେ ଏବଂ ଶରୀରକୁ ଦେବାଳୟ ରୂପରେ ବର୍ଣ୍ଣନା କରାଯାଇଛି ।

## ସପତାଙ୍ଗ ବା ସପ୍ତାଙ୍ଗ ଯୋଗ:-

ଏହା ପଦ୍ୟାତ୍ମକଶୈଳୀରେ ରଚିତ ଏକ ଗଦ୍ୟ ରଚନା । ପିଣ୍ଡ ବ୍ରହ୍ମାଣ୍ଡତତ୍ତ୍ୱ ସମ୍ୱଳିତ ନାଥଧର୍ମର ଏହା ଏକ ଯୋଗଗ୍ରନ୍ଥ । ଗୋରେଖନାଥ ଏବଂ ତାଙ୍କ ଶିଷ୍ୟ ମଲ୍ଲିକାନାଥଙ୍କ କଥୋପକଥନ ମାଧ୍ୟମରେ ନାଥଧର୍ମର ନିଗୂଢ଼ ଯୋଗତତ୍ତ୍ୱ ଏଥିରେ ବର୍ଣ୍ଣିତ ହୋଇଛି । କାବ୍ୟାରମ୍ଭରେ ଶିଷ୍ୟ ମଲ୍ଲିକାନାଥ ଗୁରୁଙ୍କୁ ପ୍ରଶ୍ନ କରିଛନ୍ତି-

"ଅଲେଖ ନିରଞ୍ଜନଙ୍କୁ ଚିହ୍ନିବି କେମନ୍ତ
ଏ ଦେହ ଘେନିଣ ସ୍ୱାମୀ ରହିବି ଯେମନ୍ତ ।
ଯେତେ ବୋଲି ମଲ୍ଲିକାନାଥ ଗୁରୁପାଦ ଧରି
ଘଟଯୋଗ ସ୍ୱାମୀ ମୋତେ କହିବା ବିସ୍ତାରି ।"

ଏଥିରୁ ସ୍ପଷ୍ଟ ଜଣାଯାଏ- ନାଥଧର୍ମଦର୍ଶନର ଘଟଯୋଗ ବା ହଠଯୋଗର ତାତ୍ତ୍ୱିକ ବର୍ଣ୍ଣନା ଏଥିରେ କରାଯାଇଛି । ପଞ୍ଚସଖା ଯୁଗର କବି ବଳରାମ ଦାସଙ୍କ ନାମରେ 'ସପ୍ତାଙ୍ଗଯୋଗ ସାରଟୀକା' ନାମରେ ଏକ ଗ୍ରନ୍ଥ ମଧ୍ୟ ରହିଛି । ସେଥିରେ ମଧ୍ୟ ଗୁରୁଶିଷ୍ୟ ସମ୍ବାଦ ଛଳରେ ନାଥଧର୍ମର ଜଟିଳ, ଗହନ ଯୋଗତତ୍ତ୍ୱର ବ୍ୟାଖ୍ୟା କରାଯାଇଛି ।

## ଅମରକୋଷ ଗୀତା:-

ଏହା ନାଥ ସଂପ୍ରଦାୟର ନାଥତତ୍ତ୍ୱ ସମ୍ୱଳିତ ଏକ ଯୋଗଗ୍ରନ୍ଥ । ଏହି ଗ୍ରନ୍ଥଟି ସମ୍ବାଦଶୈଳୀରେ ରଚିତ । ଏହି ଗ୍ରନ୍ଥର ଆରମ୍ଭରେ ଗୁରୁବନ୍ଦନା କରାଯାଇଛି । ଏହି ପରିପ୍ରେକ୍ଷୀରେ ପଞ୍ଚନାଥ ସିଦ୍ଧଙ୍କର ବନ୍ଦନା ଏଥିରେ କରାଯାଇଛି ।

କବିଙ୍କର ଭାଷାରେ-

"ବନ୍ଦଇଂ ସାବରୀନାଥ ମୂଳ କମଳ ଧାରୀ
ବନ୍ଦଇଂ କକ୍ଷଡ଼ୀନାଥ ଗହିର ଗମ୍ଭିରୀ ।

ବନ୍ଦଇଂ ଜାଳନ୍ଧରୀ ଜ୍ଞାନତତ୍ତ୍ୱ ପରିମାଣି
ବନ୍ଦଇଂ ଗୋବିନ୍ଦ ଚନ୍ଦ୍ର ଲକ୍ଷ ପରମଣି ।"

ଗୁରୁବନ୍ଦନା ପରେ ଏହି ଗ୍ରନ୍ଥରେ ପିଣ୍ଡ ବ୍ରହ୍ମାଣ୍ଡତତ୍ତ୍ୱ, ଯୋଗସାଧନା ଓ ଜ୍ଞାନସାଧନା ସଂପର୍କରେ ଆଲୋଚନା କରାଯାଇଛି ।

**ଅଷ୍ଟାଙ୍ଗଯୋଗ ଧାରଣ :-**

ଏହା ନାଥଧର୍ମଦର୍ଶନ ସଂପର୍କୀତ ଏକ ମନୋଜ୍ଞ ଗ୍ରନ୍ଥ । ଅଷ୍ଟାଙ୍ଗଯୋଗ ସଧନା ସଂପର୍କରେ ଏଥିରେ ବହୁ ତତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟା କରାଯାଇଛି ।

**ଅମର ପଟ୍ଟଳ:-**

ଏହା ଏକ ସଂକ୍ଷିପ୍ତ ରଚନା । ନାଥଧର୍ମଦର୍ଶନର ଏହା ଏକ ତାତ୍ତ୍ୱିକ ଗ୍ରନ୍ଥ ।

**ଗୋରେଖ ବାଣୀ:-**

ଏହା ଏକ କ୍ଷୁଦ୍ର ରଚନା । ନାଥଧର୍ମର ବିଭିନ୍ନ ନିଗୂଢ଼ ତତ୍ତ୍ୱ ଓ ବାଣୀ ଏଥିରେ ରହିଛି । ମୁଖ୍ୟତଃ ଷଡ଼ଚକ୍ର ସାଧନା ସଂପର୍କୀୟ ଏଥିରେ ତାତ୍ତ୍ୱିକ ବର୍ଣ୍ଣନା କରାଯାଇଛି ।

ନାଥଧର୍ମ ଦର୍ଶନର ଏହି ସବୁ ଗ୍ରନ୍ଥ ଗୁଡ଼ିକ ସହିତ ପଞ୍ଚସଖାମାନଙ୍କର କତିପୟ ଗ୍ରନ୍ଥରେ ନାଥଧର୍ମ ଦର୍ଶନ ଓ ତତ୍ତ୍ୱ ମଧ୍ୟ ପ୍ରକଟିତ ହୋଇଛି । ସେଗୁଡ଼ିକ ହେଲା-

**ଟୀକା ଗୋବିନ୍ଦଚନ୍ଦ୍ର:-**

ଏହାର ରଚୟିତା ପଞ୍ଚସଖା ଯୁଗର ବରେଣ୍ୟ କବି ଯଶୋବନ୍ତ ଦାସ । ଏହି ଗ୍ରନ୍ଥଟି ବଙ୍ଗଦେଶର ରାଜା ଗୋବିନ୍ଦ ଚନ୍ଦ୍ର ଓ ତାଙ୍କ ମାତା ମୁକୁତା ଦେଈଙ୍କ ଉପାଖ୍ୟାନ ଉପରେ ଆଧାରିତ । ରାଜା ଗୋବିନ୍ଦ ଚନ୍ଦ୍ର ସକଳ ଐଶ୍ୱର୍ଯ୍ୟ ଭୋଗ ବିଳାସ ତ୍ୟାଗ କରି କିପରି ସିଦ୍ଧନାଥ ଯୋଗୀ ହାଡ଼ିପାଙ୍କୁ ଗୁରୁ କରି ତାଙ୍କ ଉପଦେଶରେ ଯୋଗୀ ବେଶ ଧାରଣ କରି ମୋକ୍ଷ ମାର୍ଗର ପଥିକ ସାଜିଥିଲେ, ତାହା ଏହି ଗ୍ରନ୍ଥଟିରେ ବର୍ଣ୍ଣିତ ହୋଇଛି । ଏହା ସହିତ ତାଙ୍କ ଶିବ ସ୍ୱରୋଦୟରେ ଯୋଗସାଧନାର ବିଭିନ୍ନ ପ୍ରଣାଳୀର ବର୍ଣ୍ଣନା ସହିତ 'ଆତ୍ମପରଚେ' ଗ୍ରନ୍ଥରେ ବ୍ରହ୍ମଜ୍ଞାନ ତତ୍ତ୍ୱର ମନୋଜ୍ଞ ବ୍ୟାଖ୍ୟା କରିଛନ୍ତି । ପାଞ୍ଚ ସର୍ଗ ବିଶିଷ୍ଟ ଏଇ ଗ୍ରନ୍ଥଟିରେ ମନୁଷ୍ୟ ନିଜକୁ ଚିହ୍ନିବାର ଜାଣିବାର ଉପାୟ, ଶରୀର ମଧ୍ୟରେ ବ୍ରହ୍ମଙ୍କର ଅବସ୍ଥିତି ଓ ଲୀଳାଖେଳା ସଂପର୍କରେ ତାତ୍ତ୍ୱିକ ଆଲୋଚନା କରାଯାଇଛି ।

**ହେତୁ ଉଦୟ ଭାଗବତ :**

ଏହି ଗ୍ରନ୍ଥର ରଚୟିତା ପଞ୍ଚସଖା ଯୁଗର ବିଶିଷ୍ଟ ସିଦ୍ଧ ସାଧକ ଶିଶୁ ଅନନ୍ତ ଦାସ । ଦଶକୋଟି ଅଧ୍ୟାୟ ବିଶିଷ୍ଟ ଏଇ ଗ୍ରନ୍ଥରେ ବ୍ରହ୍ମଜ୍ଞାନତତ୍ତ୍ୱର ବିଶଦ ବ୍ୟାଖ୍ୟା କରାଯାଇଛି ।

ଏହି କାବ୍ୟରେ ପ୍ରଥମେ ଗୁରୁବନ୍ଦନା କରାଯାଇ ପରେ ଜୀବ ପରମତତ୍ତ୍ୱର ବ୍ୟାଖ୍ୟା କରାଯାଇଛି । ହେତୁ ଓ ମନର କଥୋପକଥନ ଛନ୍ଦରେ ଏହି ଗ୍ରନ୍ଥଟି ରଚିତ । ଏ ଗ୍ରନ୍ଥରେ ଜୀବ- ପରମତତ୍ତ୍ୱ ଓ ବ୍ରହ୍ମଜ୍ଞାନ ତତ୍ତ୍ୱର ବ୍ୟାଖ୍ୟା ସହିତ ଗୁରୁବାଦ, ପିଣ୍ଡ- ବ୍ରହ୍ମାଣ୍ଡତତ୍ତ୍ୱ, ଗାୟତ୍ରୀତତ୍ତ୍ୱ ଅବଧୂତ ବୃତ୍ତାନ୍ତ ଆଦିର ବର୍ଣ୍ଣନା ରହିଛି ।

## ରୁଦ୍ର ସୁଧାନିଧି :

ଏହି ଗ୍ରନ୍ଥର ରଚୟିତା ନାରାୟଣା ନନ୍ଦ ଅବଧୂତ ସ୍ୱାମୀ । ଯେ' କି ଜଣେ ସିଦ୍ଧ ନାଥ ଗୁରୁଥିଲେ । ଏହି ଗ୍ରନ୍ଥଟିରେ ହିନ୍ଦୁ ଷଡ୍‌ଦର୍ଶନ ଅର୍ଥାତ୍ ଶୈବ, ଶାକ୍ତ, ନାଥ, ସହଜିଆ ବୌଦ୍ଧ, କାପାଳିକ ଓ ବୈଷ୍ଣବ ପ୍ରଭୃତି ଧର୍ମଦର୍ଶନର ସୂଚନା ରହିଛି । ଏହି ଗ୍ରନ୍ଥର ଆରମ୍ଭରେ ଲେଖକ ଉଭୟ ଶୈବ ଏବଂ ନଥଧର୍ମର ଆରାଧ୍ୟ ଦେବତା ଶିବଙ୍କର ମହିମା ବର୍ଣ୍ଣନା କରିଛନ୍ତି ।

## ନାଥଧର୍ମର ବିଭିନ୍ନ ଦାର୍ଶନିକ ତତ୍ତ୍ୱ:-

ନାଥଧର୍ମ ଦର୍ଶନରେ ପ୍ରତିଫଳିତ ବିଭିନ୍ନ ଆଧାତ୍ମିକ ଓ ଦାର୍ଶନିକ ତତ୍ତ୍ୱ ଗୁଡ଼ିକ ହେଲା-

୧. ଯୋଗ ସାଧନା ।

୨. କାୟା ସାଧନା

୩. ବାୟୁ ସାଧନା ବା ହଠ ଯୋଗ

୪. ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ।

୫. ଷଡ୍‌ଚକ୍ର ସାଧନା

୬. ଶୂନ୍ୟ ସାଧନା

୭. ଓଲଟ ସାଧନା

୮. ସହଜତତ୍ତ୍ୱ ବା ସହଜ ସାଧନା

୯. ଗୁରୁବାଦ

୧୦. ଅବତାରବାଦ

## ଯୋଗସାଧନା :

ସହଜିଆ ବୌଦ୍ଧଧର୍ମ ସହିତ ନାଥ ସଂପ୍ରଦାୟର ଘନିଷ୍ଠ ସଂପର୍କ ପରିଲକ୍ଷିତ ହୁଏ । କତିପୟ ବୌଦ୍ଧ ସିଦ୍ଧାଚାର୍ଯ୍ୟ ନାଥ ସଂପ୍ରଦୟର ଗୁରୁ ରୂପେ ସ୍ୱୀକୃତ ଲାଭ କରିଛନ୍ତି ।

ଗୋରେଖନାଥଙ୍କ ସୀସୁ ବେଦ, ଗୋରେଖ ସଂହିତା ଆଦି ଗ୍ରନ୍ଥରେ ବୌଦ୍ଧ ସିଦ୍ଧାଚାର୍ଯ୍ୟ କାହ୍ନୁପା, ଶବରୀପା ପ୍ରଭୃତିଙ୍କ ନାମ ପରିଦୃଷ୍ଟ । ନାଥଧର୍ମର ଯୋଗ ସାଧନା, ସହଜ ସାଧନା, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ଷଡ଼ଚକ୍ର ସାଧନା, ପ୍ରାଣାୟମ, ହଠଯୋଗ, ନିଃସ୍ୱତି ଯୋଗ, ସପ୍ତାଙ୍ଗ ଓ ଅଷ୍ଟାଙ୍ଗ ଯୋଗ, କାୟାକଳ୍ପ ପ୍ରଭୃତିରେ ସହଜିଆ ବୌଦ୍ଧ ଧର୍ମଦର୍ଶନର ପ୍ରଭାବ ପରିଲକ୍ଷିତ ।

ନାଥଧର୍ମାବଲମ୍ବୀମାନେ ଯୋଗସାଧନା ଉପରେ ବେଶୀ ଗୁରୁତ୍ୱ ଦେଉଥିବାରୁ ସେମାନଙ୍କୁ 'ଯୋଗୀ' କୁହାଯାଏ । ସାମାଜିକ ଜୀବନକୁ ମାର୍ଜିତ, ସଂଯତ, ସୁ-ସଂହତ ଓ ଧର୍ମନିଷ୍ଠ କରାଇବା ପାଇଁ ନାଥ ସିର୍ଦ୍ଧାଚାର୍ଯ୍ୟମାନେ ଏକ ସଂଯମଶୀଳ ଯୋଗମାର୍ଗର ଅବଲମ୍ବନ କରିବା ପାଇଁ ଜନସମାଜକୁ ଆହ୍ୱାନ ଦେଇଥିଲେ । ନାଥଧର୍ମର ଯୋଗ ସାଧନାରେ ମୁଖ୍ୟତଃ ସପ୍ତାଙ୍ଗଯୋଗ, ଅଷ୍ଟାଙ୍ଗଯୋଗ, ହଠଯୋଗ, ଘଟଯୋଗ ଉପରେ ଗୁରୁତ୍ୱ ଦିଆଯାଇଛି । ହଠଯୋଗର ସାଧନା ପାଇଁ ଏମାନେ ସାତଗୋଟି ସାଧନା ଅଙ୍ଗର କଥା କହିଛନ୍ତି । ସେଗୁଡ଼ିକ ହେଲା- ଷଟ୍‌କର୍ମ, ଆସନ, ମୁଦ୍ରା, ପ୍ରତ୍ୟାହାର, ପ୍ରାଣାୟାମ୍, ଧ୍ୟାନ ଓ ସମାଧି । ଏହି ସପ୍ତଅଙ୍ଗକୁ ସଫଳ କରିବା ପାଇଁ ଏମାନେ ଏହା ସହିତ ସପ୍ତଭୂମି, ସପ୍ତଜ୍ଞାନ, ସପ୍ତଆବରଣ, ସପ୍ତଚକ୍ର, ସପ୍ତବୀଜ, ସପ୍ତଶକ୍ତି, ଓ ସପ୍ତଗୁରୁଙ୍କୁ ଯୋଡ଼ି ଦେଇଛନ୍ତି । ନାଥଧର୍ମରେ ପତଞ୍ଜଳିଙ୍କର ଅଷ୍ଟାଙ୍ଗ ଯୋଗମାର୍ଗ ମଧ୍ୟ ସ୍ୱୀକୃତି ଲାଭ କରିଛି । ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି- ଏହି ଆଠ ଗୋଟି ସାଧନାର ସ୍ତର ଦେଇ ଏମାନେ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରାଇ ପଞ୍ଚ ପ୍ରାଣବାୟୁକୁ ସହସ୍ରାର ପଦ୍ମସ୍ଥିତ ପରଂବ୍ରହ୍ମଙ୍କ ସହିତ ମିଳିତ କରାଇ ସିଦ୍ଧିଲାଭ କରିଥାନ୍ତି ।

**କାୟାସାଧନା:-**

ସାଧନାରେ ପ୍ରବିଷ୍ଟ ହେବାକୁ ହେଲେ ଯୋଗୀକୁ ପ୍ରଥମେ କାୟା ବା ଶରୀର ସିଦ୍ଧିର ଆବଶ୍ୟକତା ରହିଛି । ସୀସୁବେଦରେ କୁହାଯାଇଛି- କାୟା ସିଦ୍ଧି ନହେଲେ ନୟନ ନିଶ୍ଚଳ ହୁଏ ନାହିଁ । ନୟନ ନିଶ୍ଚଳ ନହେଲେ ମନସ୍ଥିର ହୁଏ ନାହିଁ । ମନସ୍ଥିର ନହେଲେ ଯୋଗୀ ସମାଧିସ୍ଥ ହୋଇପାରେ ନାହିଁ ବା ପରମପଦ ଲାଭ କରି ପାରେନାହିଁ । ତେଣୁ ପ୍ରଥମେ କାୟାସାଧନାର ଆବଶ୍ୟକତା ରହିଛି । ନାଥ ସିର୍ଦ୍ଧାଚାର୍ଯ୍ୟମାନେ ଶରୀରସାଧନା ବା କାୟାସାଧନା ଉପରେ ଗୁରୁତ୍ୱ ଦେଇଛନ୍ତି । କାୟାସାଧକ ବା ହଠଯୋଗୀ ଦୃଢ଼ ଏବଂ ସ୍ଥିର ଚିତ୍ତରେ ମନ, ପବନ ଓ ବିନ୍ଦୁକୁ ଧାରଣ କରିବା ଉଚିତ୍ । ଏହି ମନ, ପବନ ଓ ବିନ୍ଦୁରେ ସ୍ଥିରତା ଆସିଲେ ସାଧକର ଆଶା, କାମନା, ବାସନାର ବିନାଶ ହୁଏ । ଯେଉଁଥି ପାଇଁ ସୀସୁବେଦରେ କୁହାଯାଇଛି ।

"ପବନ ଥିରାନ୍ତେ ଆଶା ଛେଦଇ
ମନ ଥିରାନ୍ତେ କାମନ୍ତ ରୁନ୍ଧଇ
ସୁହେତି ଅଚଳ ବାନ୍ଧିଲେ ଜାଣ
ତେସେ ପିଣ୍ଡକୁ ପରଚେ ପ୍ରାଣ ।"

ଗୋରେଖନାଥ ମଧ୍ୟ କାୟା ସାଧନାରେ 'ବିନ୍ଦୁ ଧାରଣ' ଉପରେ ଗୁରୁତ୍ୱାରୋପ କରିଛନ୍ତି । ସେ କହିଛନ୍ତି "ମରଣମ୍ ବିନ୍ଦୁ ପାତନେ ଜୀବନ ବିନ୍ଦୁ ଧାରଣାତ୍ ।" ବିନ୍ଦୁ ଅସ୍ଥିର, ଚଞ୍ଚଳ ହେଲେ ଜରା-ମୃତ୍ୟୁ ନିଶ୍ଚିତ । ଏଥିପାଇଁ ବିନ୍ଦୁ ଧାରଣ କରି ବିନ୍ଦୁକୁ ସ୍ଥିର ରଖିବା ସାଧକର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ । ଏହି ବିନ୍ଦୁ ଧାରଣ ପରେ ସେମାନେ ହଠଯୋଗ ବା ପ୍ରାଣାୟାମ ସାହାଯ୍ୟରେ କାୟାକୁ ସିଦ୍ଧ କରିଥାନ୍ତି ।

**ବାୟୁସାଧନା ବା ହଠଯୋଗ:-**

ନାଥ ସାଧକମାନେ ବାୟୁ ସାଧନା ବା ହଠଯୋଗ ଉପରେ ଗୁରୁତ୍ୱ ଦେଇଥାନ୍ତି । ଏହି ହଠଯୋଗ (ଘଟଯୋଗ) ସାଧନା ମୁଖ୍ୟତଃ ସାତ ପ୍ରକାର । ଯଥା- ଶୋଧନ, ଦୃଢ଼ତା, ସ୍ଥିରତା, ଧୈର୍ଯ୍ୟ, ଲାଘବ, ପ୍ରତ୍ୟକ୍ଷ ଓ ନିର୍ଲିପ୍ତତ୍ୱ ।

ଏହି ସାତଗୋଟି ସାଧନା ପାଇଁ ଏମାନେ ସପ୍ତଅଙ୍ଗର ସାହାଯ୍ୟ ନେଇଥାନ୍ତି । ସାଧକ ବା ଯୋଗୀର ପ୍ରଥମ କାର୍ଯ୍ୟ ହେଲା- ସ୍ୱଭାବତଃ ଚଞ୍ଚଳ ମନ ଓ ପବନକୁ ନିୟନ୍ତ୍ରିତ ଓ ନିରୋଧ କରିବା । ମଣିଷ ଶରୀରର ୭୨ ହଜାର ନାଡ଼ି ଭିତରେ ଏହି ପବନ ବା ବାୟୁ ପ୍ରବାହିତ ହେଉଥାଏ । ଏଥି ମଧ୍ୟରୁ ପାଞ୍ଚ ଗୋଟି ମୁଖ୍ୟ ବାୟୁ ରହିଛି । ସେଗୁଡ଼ିକୁ ପଞ୍ଚ ପ୍ରାଣାବାୟୁ କୁହାଯାଏ । ଏହି ପଞ୍ଚ ପ୍ରାଣବାୟୁ ଗୁଡ଼ିକ ହେଲା- କଣ୍ଠଚକ୍ରସ୍ଥିତ ସମାନବାୟୁ, ହୃଦୟଚକ୍ରସ୍ଥିତ ପ୍ରାଣବାୟୁ, ନାଭିଚକ୍ରସ୍ଥିତ ବ୍ୟାନବାୟୁ, ସ୍ୱାଧିଷ୍ଠାନଚକ୍ରସ୍ଥିତ ଅପାନବାୟୁ ଓ ମୂଳାଧାରାଚକ୍ରସ୍ଥିତ ଉଦାନବାୟୁ । ସାଧକ ଏହି ପଞ୍ଚ ପ୍ରାଣବାୟୁକୁ ନିରୋଧ କରି ଷଡ଼ଚକ୍ର ଭେଦାଇ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରି ସହସ୍ର ଦଳ ଚକ୍ରରେ ପହଞ୍ଚାଇ ସହସ୍ର ଦଳ ମଧ୍ୟରେ ବିରାଜିତ ପରମାତ୍ମାଙ୍କୁ ଦର୍ଶନ କରେ ଏବଂ ପରମାତ୍ମାଙ୍କର ବିପୁଳ ଜ୍ୟୋତି ମଧ୍ୟରେ ଆତ୍ମଲୀନ ହୋଇ ବ୍ରହ୍ମମୟ ହୋଇଯାଏ ଓ ସାଧକର ସମାଧିସ୍ଥ ଲାଭ ହୁଏ । ଏହି ସମାଧି ଯୋଗ ହେଉଛି ନାଥ ଯୋଗୀମାନଙ୍କର ସର୍ବଶେଷ ଲକ୍ଷ୍ୟ । ଏଇଠି ଯୋଗୀ ମହାସୁଖ ଲାଭପାଏ ।

**ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ:-**

ପିଣ୍ଡ-ବ୍ରହ୍ମାଣ୍ଡତତ୍ତ୍ୱ ହେଉଛି ଭାରତୀୟ ଆଧ୍ୟାତ୍ମିକ ସାଧନାର ମୂଳଭୂତ ତତ୍ତ୍ୱ । ପିଣ୍ଡ-ବ୍ରହ୍ମାଣ୍ଡର ଅର୍ଥ ହେଉଛି- ଶରୀର ମଧ୍ୟରେ ବ୍ରହ୍ମାଣ୍ଡର ପରିକଳ୍ପନା ଓ ଶରୀର ମଧ୍ୟସ୍ଥ ଆତ୍ମାକୁ

ଈଶ୍ୱରଙ୍କ ସତ୍ତାରୂପେ ଉପଲବ୍‌ଧି କରିବା । ଉପନିଷଦମାନଙ୍କରେ ପିଣ୍ଡ ମଧ୍ୟରେ 'ବ୍ରହ୍ମ'ଙ୍କର ଅବସ୍ଥିତିର କଥା କୁହାଯାଇଛି । ମୈତ୍ରେୟ ଉପନିଷଦରେ କୁହାଯାଇଛି- ଏହି ଶରୀର ଦେବାଳୟ ଅଟେ । ଏହି ଦେବାଳୟରେ ପରମାତ୍ମା ଅବସ୍ଥାନ କରନ୍ତି । ଏହି ଆଦର୍ଶରେ ନାଥଧର୍ମାବଲମ୍ବୀମାନେ ମଧ୍ୟ ପିଣ୍ଡ ଭିତରେ ବ୍ରହ୍ମାଣ୍ଡର ପରିକଳ୍ପନା କରିଛନ୍ତି । ନାଥଧର୍ମର ସାଧନ ଗ୍ରନ୍ଥ ସୀସୁବେଦ, ଅମରକୋଷଗୀତା, ସପତାଙ୍ଗ ପ୍ରଭୃତିରେ ଏହି ପିଣ୍ଡ-ବ୍ରହ୍ମାଣ୍ଡତତ୍ତ୍ୱର ବ୍ୟାଖ୍ୟା କରାଯାଇଛି । ଜୀବର ଶରୀର ମଧ୍ୟରେ ଜୀବାତ୍ମା-ପରମାତ୍ମା, ଗଙ୍ଗା-ଯମୁନା-ସରସ୍ୱତୀ, କାଳିନ୍ଦୀ, ସହସ୍ରଦଳ ପଦ୍ମ, ଦେବାଳୟ, ଚନ୍ଦ୍ର-ସୂର୍ଯ୍ୟ ଆଦିର ପରିକଳ୍ପନା କରାଯାଇଛି । ପୁଣି ଏହି ଶରୀର ମଧ୍ୟରେ ସପ୍ତଭୂମି, ସପ୍ତଆବରଣ, ସପ୍ତବୀଜ, ସପ୍ତଖଣ୍ଡ, ସପ୍ତଶକ୍ତି, ସପ୍ତଗୁରୁ, ଦଶଦ୍ୱାର, ଦଶପବନ, ଦଶଧ୍ୱନି, ପଞ୍ଚଭୂତ ପ୍ରଭୃତିର ପରିକଳ୍ପନା କରାଯାଇଛି । ନାଥ ସିଦ୍ଧାଚାର୍ଯ୍ୟମାନଙ୍କ ମତରେ- ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ସଚ୍ଚିଦାନନ୍ଦ ବିଗ୍ରହ ପରଂବ୍ରହ୍ମ ଶିବଙ୍କର ଚିଦ୍‌ବିଳାସରୁ ହିଁ ସୃଷ୍ଟି ଲାଭ କରିଛି । ତେଣୁ ନାଥମାନେ ବିଶ୍ୱବ୍ରହ୍ମାଣ୍ଡର ପ୍ରତ୍ୟେକ ବସ୍ତୁ ଓ ଜୀବ ମଧ୍ୟରେ ପାରସ୍ପରିକ ସମ୍ବନ୍ଧ ନିର୍ଣ୍ଣୟ କରିଥାନ୍ତି । ନାଥଯୋଗୀ ସମାଧିସ୍ଥ ଅବସ୍ଥାରେ ଅନନ୍ତ କୋଟି ବିଶ୍ୱବ୍ରହ୍ମାଣ୍ଡର ସତ୍ତା ଉପଲବ୍‌ଧି କରିଥାଏ । ଏହି ସମାଧି ଅବସ୍ଥାରେ ସାଧକ ନିଜକୁ ଆକାଶ ସହ ମିଶାଇ ଦେଇଥାଏ । ଏହାହିଁ ନାଥଧର୍ମର ସର୍ବଶ୍ରେଷ୍ଠ ସିଦ୍ଧି । ସିଦ୍ଧନାଥ ଗୋରେଖନାଥଙ୍କ ମତରେ-

"ପିଣ୍ଡମଧ୍ୟେ ଚରାଚରୈ ଯୋ ଜାନାତି ସଯୋଗୀ
ପିଣ୍ଡସ ମୂର୍ତ୍ତି ଭବତି । ।"

ଅର୍ଥାତ୍ ଯେଉଁ ଯୋଗୀ ନିଜ ଶରୀର ମଧ୍ୟରେ ସଚରାଚର ବିଶ୍ୱକୁ ଅନୁଭବ କରେ, ସେହିଁ ପ୍ରକୃତ ପିଣ୍ଡତତ୍ତ୍ୱଦର୍ଶୀ । ଯୋଗୀ ତା'ର ଶରୀର ମଧ୍ୟରେ ତିନିଲୋକ, ସପ୍ତପାତାଳ, ସପ୍ତସମୁଦ୍ର, ସପ୍ତଦ୍ୱୀପ, ନବଖଣ୍ଡ, ନବନଦୀ ଓ ଅଷ୍ଟକୁଳ ପର୍ବତର ସତ୍ତା ଅନୁଭବ କରିଥାଏ । ପୁନଶ୍ଚ- ଯୋଗୀ ତା'ର ହସ୍ତ କୋଷ୍ଠୀରେ ସପ୍ତବିଂଶତି ନକ୍ଷତ୍ର, ଦ୍ୱାଦଶ ରାଶି, ନବଗ୍ରହ, ପଞ୍ଚଦଶତିଥି, ବାହୁରୋମ କୂପରେ ତେତିଶ କୋଟି ଦେବତା, ବକ୍ଷରେ କୁଳନାଗ, କକ୍ଷ ରୋମରେ ସନକାଦି ମୁନିଗଣ, ଅଶ୍ରୁପାତରେ ମେଘମାଳ, ନେତ୍ର ଦ୍ୱୟରେ ବ୍ରହ୍ମା, ଜାନୁରୋମରେ ଗୁଳ୍ମ, ତୃଣ ଓ କୀଟପତଙ୍ଗ ଆଦିର ବାସସ୍ଥଳୀ ନିର୍ଣ୍ଣୟ କରିଥାଏ ।

**ଷଡ୍‌ଚକ୍ର ସାଧନା:-**

ଷଡ୍‌ଚକ୍ର ସାଧନା ଭାରତୀୟ ଆଧ୍ୟାତ୍ମିକ ସାଧନାର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ଏହି ସାଧନା ମାଧ୍ୟମରେ ଦିବ୍ୟଜ୍ଞାନ ଲାଭ ବା ମହାସୁଖ ଲାଭ କରିବା ନାଥସାଧକମାନଙ୍କର ପ୍ରଧାନ ଲକ୍ଷ୍ୟ । ତେଣୁ ସାଧକ ପ୍ରଥମେ ସାଧନାରେ ଅଭିନିବିଷ୍ଟ ହୋଇ ମନ, ପବନ ଓ

ବିନ୍ଦୁର ସ୍ଥିରତା ଆଣେ । ତାପରେ-ପ୍ରାଣୟାମ ସାଧନାଦ୍ୱାରା ମୂଳାଧାର ଚକ୍ରସ୍ଥିତ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରାଇବା ପାଇଁ ପ୍ରାଣବାୟୁକୁ ସୁଷୁମ୍ନା ନାଡ଼ୀ ମଧ ଦେଇ ଉତ୍ତୋଳିତ କରାଇ ଶରୀରର ବିଭିନ୍ନ ଚକ୍ରକୁ ଭେଦ କରାଇ ସହସ୍ରାର ଚକ୍ରରେ ଅବସ୍ଥିତ ନିରଞ୍ଜନ ପୁରୁଷ ସହ ମିଳିତ କରାଏ । ଯା' ଫଳରେ ସାଧକ ଦିବ୍ୟଜ୍ଞାନ ଲାଭ କରି ସିଦ୍ଧିଲାଭ କରେ ବା ମହାସୁଖ ଲାଭ କରେ । ଏହି ଷଡ଼ଚକ୍ର ସାଧନାର ତାତ୍ତ୍ୱିକ ବ୍ୟାଖ୍ୟା ସୀସୁବେଦରେ କରାଯାଇଛି ।

"ପବନ ପାଲଟିବେ ଛଡ଼ ଚକ୍ର ଫୁଟିବେ
ସତ ରହିବେ, ଶୁଖିଯିବେ ପାଣି ।
ଚନ୍ଦ୍ର-ସୂର୍ଯ୍ୟ ଯେଉଁ ଯୋଗୀ ଗଣ୍ଠି ପାଡ଼ି ପାରଇ
ସେ ଯୋଗୀ ଅତି ଗରୁହ ବିନ୍ଧାଣୀ ।"

**ଶୂନ୍ୟ ସାଧନା:-**

ଭାରତୀୟ ଆଧ୍ୟାତ୍ମିକ ସାଧନ ମାର୍ଗରେ ଶୂନ୍ୟବାଦ ବା ଶୂନ୍ୟସାଧନା ବୈଦିକ ଯୁଗରୁ ପ୍ରଚଳିତ । ଋକ୍‌ବେଦର 'ନାସଦୀୟ ସୂକ୍ତ'ରେ ଶୂନ୍ୟକୁ ଏକ ସତ୍ତା ବିଶିଷ୍ଟ ଏବଂ ଏକ ଅଦ୍ୱିତୀୟ ରୂପରେ ବର୍ଣ୍ଣନା କରାଯାଇଛି । ଉପନିଷଦମାନଙ୍କରେ ମଧ୍ୟ ବ୍ରହ୍ମଙ୍କର ନିର୍ଗୁଣ, ନିର୍ବିଶେଷ, ଶୂନ୍ୟ ରୂପର ବର୍ଣ୍ଣନା କରାଯାଇଛି । ଉପନିଷଦୀୟ ଶୂନ୍ୟ ବା ବ୍ରହ୍ମ ଚେତନା ନାଥ ସଂପଦାୟରେ ଗୃହୀତ ଏବଂ ସ୍ୱୀକୃତ ହୋଇଛି । ମାତ୍ର ନାଥଧର୍ମରେ ଏହି ଶୂନ୍ୟ ଅଲେଖ, ନିରଞ୍ଜନ ପୁରୁଷ ରୂପରେ ସ୍ଥାନ ପାଇଛନ୍ତି ।

'ସପତାଙ୍ଗ'ରେ କୁହାଯାଇଛି-
'ଅଲେକ ନିରଞ୍ଜନଙ୍କୁ ଚିହ୍ନିବି କେମନ୍ତ'

ଏଥିରୁ ଜଣାଯାଏ- ଅଲେଖ ନିରଞ୍ଜନ ହେଉଛନ୍ତି ଶୂନ୍ୟରୂପ । ନାଥମାନେ ଏହି ଶୂନ୍ୟ ଉପରେ ବେଶୀ ଗୁରୁତ୍ୱ ଦେଇଛନ୍ତି । ଏପରିକି ଏମାନେ ସମାଧି ଅବସ୍ଥାରେ ଶୂନ୍ୟରୂପୀ ଆକାଶ ସହ ମିଶିଯାଇ ଶୂନ୍ୟକୁ ଉପଲବ୍‌ଧି କରିଥାନ୍ତି । ଏପରିକି ଏମାନେ 'ନିର୍ବାଣ'କୁ ଶୂନ୍ୟ ସମାଧି ରୂପରେ ବିଚାର କରନ୍ତି । ସାଧକ ସମାଧିସ୍ଥ ଅବସ୍ଥାରେ ନିଜର ବ୍ୟକ୍ତି ସତ୍ତା ହରାଇ ମହାଜାଗତିକ ସତ୍ତାର ଶୂନ୍ୟତା ଉପଲବ୍‌ଧି କରିଥାଏ । ଏହା ସହିତ ସେ ଅନନ୍ତ ଶୂନ୍ୟରୁ ଉଦ୍‌ଭୁତ ପ୍ରଣବଧ୍ୱନି ମଧ୍ୟ ଶ୍ରବଣ କରେ । ଏହିଠାରେ ଶୂନ୍ୟତା ପୂର୍ଣ୍ଣତାରେ ଓ ପୂର୍ଣ୍ଣତା ଶୂନ୍ୟତାରେ ପରିଣତ ହୁଏ । ଏହି ଅବସ୍ଥାରେ ଯୋଗୀ ବା ସାଧକର ଚିତ୍ତ ପୂର୍ଣ୍ଣତା ପ୍ରାପ୍ତ ହୋଇଥାଏ ।

### ଓଲଟ ସାଧନା:-

ନାଥଧର୍ମର ଏକ ପ୍ରମୁଖ ସାଧନା ହେଉଛି- ଓଲଟ ସାଧନା । ଏହି ଓଲଟ ସାଧନ ଦ୍ୱାରା ସାଧକ ଅମୃତର ରସକୁ ରକ୍ଷା କରେ ଓ କାଳଜୟୀ ହୁଏ । ଶାସ୍ତ୍ର ମତରେ ମଣିଷ ଶରୀରର ନାଭି ଦେଶରେ ଅଗ୍ନିମୟ ସୂର୍ଯ୍ୟ ଓ ତାଲୁରେ ଅମୃତାତ୍ମା ଚନ୍ଦ୍ର ବାସ କରେ । ଚନ୍ଦ୍ର ନିମ୍ନମୁଖୀ ହୋଇ ଅମୃତ ବର୍ଷା କରେ ଓ ସୂର୍ଯ୍ୟ ଉର୍ଦ୍ଧ୍ୱମୁଖୀ ହୋଇଥିବାରୁ ସେହି ଅମୃତ ପାନ କରେ । ଅମୃତ ନାଶ ହେବା ଫଳରେ ମନୁଷ୍ୟର ମୃତ୍ୟୁ ହୁଏ । ତେଣୁ ଓଲଟ ସାଧନ ଦ୍ୱାରା ଏହି ଅମୃତକୁ ରକ୍ଷା କରିବା ପ୍ରତ୍ୟେକ ଯୋଗୀର କର୍ତ୍ତବ୍ୟ । ସେଥିପାଇଁ ନାଥଯୋଗୀ ବା ସାଧକମାନେ 'ଖେଚରୀମୁଦ୍ରା' ସାହାଯ୍ୟରେ 'ଅମର ବାରୁଣୀ' ପାନ କରି ଚନ୍ଦ୍ରରୁ କ୍ଷରିତ ଅମୃତକୁ ରକ୍ଷା କରିଥାନ୍ତି । ଗୁରୁକୃପା ଓ ଗୁରୁ ଉପଦେଶ ବଳରେ ସାଧକ ସୂର୍ଯ୍ୟକୁ ଉପରେ ଓ ଚନ୍ଦ୍ରକୁ ନିମ୍ନରେ ଅବସ୍ଥାନ କରାଇ ଅମୃତ କ୍ଷୟକୁ ରକ୍ଷାକରେ ଓ କାଳଜୟୀ ହୁଏ ।

### ସହଜତତ୍ତ୍ୱ ବା ସହଜ ସାଧନା:-

ନାଥଧର୍ମର ସହଜତତ୍ତ୍ୱ ସହଜିଆ ବୌଦ୍ଧମାନଙ୍କର ସହଜ ସାଧନାଠାରୁ ଭିନ୍ନ ଓ ସ୍ୱତନ୍ତ୍ର । ସହଜିଆ ବୌଦ୍ଧମାନଙ୍କର ସହଜ ସାଧନା ଯୌନଭିତ୍ତିକ ମାତ୍ର- ନାଥଧର୍ମର ସହଜ ତତ୍ତ୍ୱ ହେଉଛି- ଆଧ୍ୟାତ୍ମିକ ଉପଲବ୍ଧିର ତତ୍ତ୍ୱ । ନାଥ ସାଧକମାନେ ଈଶ୍ୱରାନୁଭକ୍ତି ପୂର୍ବକ ଯୋଗସାଧନାରେ ପ୍ରବୃତ୍ତ ହୋଇ ଅନ୍ତିମ ପର୍ଯ୍ୟାୟରେ ଶୂନ୍ୟଚକ୍ରରେ ଶିବ- ଶକ୍ତିଙ୍କର ମିଳନ ଘଟାଇ ସାମରସ ବା ସହଜ ମିଳନ କରାଇଥାନ୍ତି । ଏହି ଅବସ୍ଥାରେ ସାଧକ ପରମେଶ୍ୱରଙ୍କର ସ୍ଥିତି, ଶକ୍ତି ଓ ଅଦ୍ୱୟଭାବ ଉପଲବ୍ଧି କରିଥାଏ । ଏଥିପାଇଁ ତାନ୍ତ୍ରିକ ପଞ୍ଚମ କା'ର ବା ବୌଦ୍ଧ ପ୍ରବୃତ୍ତି ନିଯୋଗର କୌଣସି ଆବଶ୍ୟକତା ନଥାଏ । କେବଳ ନିର୍ବିକଳ୍ପ ସମାଧି ଯୋଗରେ ସାଧକ ଏହି ତତ୍ତ୍ୱ ବା ସହଜାବସ୍ଥାର ଉପଲବ୍ଧି କରିପାରେ ।

### ଗୁରୁବାଦ:-

ନାଥଧର୍ମରେ ଗୁରୁବାଦ ବା ଗୁରୁ-ଶିଷ୍ୟ ପରମ୍ପରା ଉପରେ ଗୁରୁତ୍ୱ ଦିଆଯାଇଛି । ସାଧନାରେ ସିଦ୍ଧିଲାଭ ଓ ପରମତତ୍ତ୍ୱର ଉପଲବ୍ଧି ପାଇଁ ସଦ୍‌ଗୁରୁଙ୍କ ସାହଚର୍ଯ୍ୟର ଆବଶ୍ୟକତା ରହିଛି । ନାଥଧର୍ମର ଗୁରୁଙ୍କୁ 'ଅବଧୂତ' କୁହାଯାଏ । ଏହି ଗୁରୁ ତ୍ରି-ଗୁଣାତ୍ମିକା ମାୟାର ବିଭିନ୍ନ ରୂପ ଓ ରହସ୍ୟର ଦ୍ରଷ୍ଟା । ସେ ସାଧକକୁ ସାଧନ ସମୟରେ ବିଭିନ୍ନ ଉପଦେଶ ଦେଇ ତା'ର ସାଧନାକୁ ତ୍ୱରାନ୍ୱିତ କରାଇଥାନ୍ତି । 'ସୀସୁବେଦ'ରେ କୁହାଯାଇଛି- ଗୁରୁ ଉପଦେଶ ସାହାଯ୍ୟରେ ହିଁ ସାଧକ ସାଧନା କଲେ ସିଦ୍ଧିପ୍ରାପ୍ତ ହୁଏ ।

ନାଥଧର୍ମ ଦର୍ଶନ ସମ୍ବଳିତ ତତ୍ତ୍ୱ ଗ୍ରନ୍ଥ ଅମରକୋଷଗୀତାରେ ଗୁରୁଙ୍କ ବନ୍ଦନା କରାଯାଇ ଗୁରୁଙ୍କର ମହତ୍ତ୍ୱ ପ୍ରକଟନ କରାଯାଇଛି । ଏହି ଗ୍ରନ୍ଥରେ ନାଥ ସଂପ୍ରଦାୟର ସିଦ୍ଧିଗୁରୁ ଆଦିନାଥ, ଗୋରେଖନାଥ, ଶବରୀନାଥ, ମଛିନ୍ଦ୍ରନାଥ ପ୍ରଭୃତିଙ୍କର ମହିମା ପ୍ରଖ୍ୟାପନ କରାଯାଇଛି । 'ସପତାଙ୍ଗ' ଗ୍ରନ୍ଥରେ ମଧ୍ୟ ଗୋରେଖନାଥ ଓ ମଲ୍ଲିକାନାଥ ପ୍ରଭୃତି ଗୁରୁ-ଶିଷ୍ୟ ପରମ୍ପରା ଉପରେ ଗୁରୁତ୍ୱ ଦିଆଯାଇଛି ।

**ଅବତାରବାଦ:-**

ଭାରତୀୟ ଆଧ୍ୟାତ୍ମିକ ଦିଗ୍‌ବଳୟରେ ଅବତାରବାଦର ବିଶେଷ ଗୁରୁତ୍ୱ ରହିଛି । ନାଥ ସଂପ୍ରଦାୟର ଅବତାରବାଦ ଅନ୍ୟାନ୍ୟ ଧର୍ମସଂପ୍ରଦାୟର ଅବତାରବାଦ ଠାରୁ ଭିନ୍ନ ଓ ସ୍ୱତନ୍ତ୍ର । ଗୋରେଖନାଥଙ୍କର ସିଦ୍ଧାନ୍ତ ଅନୁସାରେ-ସର୍ବୋପରି ଅଦ୍ୱୈତ ଉପରେ ନିରାକାର ବ୍ରହ୍ମ ଓ ସାକାର ବ୍ରହ୍ମଙ୍କର ଅବସ୍ଥିତି । ଏହି ବ୍ରହ୍ମରୁ ନିରାକାର ଜ୍ୟୋତି ସ୍ୱରୂପ ନାଥ ବ୍ରହ୍ମଙ୍କର ପରିପ୍ରକାଶ । ଏହି ନିରାକାର ଜ୍ୟୋତି ସ୍ୱରୂପ ନାଥବ୍ରହ୍ମଙ୍କ ଠାରୁ ସାକାର ନାଥ ଏବଂ ସାକାର ନାଥଙ୍କ ଠାରୁ ଭୈରବୀ ଶକ୍ତିର ଉତ୍ପତ୍ତି । ସେହି ଭୈରବୀ ଶକ୍ତି ଠାରୁ ବିଷ୍ଣୁ ଓ ବିଷ୍ଣୁଙ୍କ ଠାରୁ ବ୍ରହ୍ମାଙ୍କର ସୃଷ୍ଟି । ଏହି ରୂପରେ ନାଥଧର୍ମର ଅବତାର ତତ୍ତ୍ୱ ପରିକଳ୍ପିତ ହୋଇଛି ।



# ସାରଳା ସ୍ମୃତିସମ୍ଭାର

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ବେଳକୁ ଓଡ଼ିଆ ସାରସ୍ୱତ ଜଗତରେ ମହାକବି ସାରଳା ଦାସଙ୍କର ଆବିର୍ଭାବ ଘଟିଥିଲା । ସାରଳା ଦାସ ଓଡ଼ିଶାର ତତ୍କାଳୀନ ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ର ଦେବଙ୍କର ସମସାମୟିକ ଥିବାର ଜଣାଯାଏ । ସାରଳାଙ୍କ ପିତୃଦତ୍ତ ନାମ ଥିଲା- ସିଦ୍ଧେଶ୍ୱର ପରିଡ଼ା । ତାଙ୍କର ଜୀବୀକା ମୁଖ୍ୟତଃ ଥିଲା- କୃଷି । ଏକଦା ସେ ସମ୍ରାଟ କପିଳେନ୍ଦ୍ର ଦେବଙ୍କର ସୈନ୍ୟ ବାହିନୀରେ ଜଣେ ସୈନିକ ଥିବାର ମଧ୍ୟ ଜଣାଯାଏ । ସାରଳା ଦାସ ଆଧୁନିକ କଟକ ଜିଲ୍ଲାର ଝଙ୍କଡ଼ ଗ୍ରାମରେ ଶୂଦ୍ର କୁଳରେ ଜନ୍ମ ଗ୍ରହଣ କରିଥିଲେ । ଶୂଦ୍ର କୁଳରେ ଜନ୍ମ ହେଇ ମଧ୍ୟ ସେ ନିଜର ଅସାମାନ୍ୟ ପ୍ରତିଭା, ପାଣ୍ଡିତ୍ୟ ଓ ବିଦ୍‌ବତ୍ତା ବଳରେ ଓଡ଼ିଆ ସାହିତ୍ୟର ଆଦି ତୋରଣ ଉଦ୍‌ଘାଟିତ କରିଥିଲେ । କବି ନିଜେ ଏକ ଯୁଗୀୟ ପ୍ରତିଭାର ଅଧିକାରୀ । ତାଙ୍କର କତିପୟ ଗ୍ରନ୍ଥ ଏକ ନିର୍ଦ୍ଦିଷ୍ଟ ସମୟ ଖଣ୍ଡକୁ ନିୟନ୍ତ୍ରିତ ଓ ପ୍ରଭାବିତ କରି 'ସାରଳାଯୁଗ' ନାମରେ ନିଜର ଅସପତ୍ନ ପ୍ରତିଭା ଓ ପ୍ରତିଷ୍ଠା ଲାଭ କରିପାରିଥିଲା । ସେହିଁ ବାସ୍ତବରେ ଥିଲେ ଓଡ଼ିଆ ସାହିତ୍ୟରେ ଆଦିସ୍ରଷ୍ଟା, ଆଦିକବି । ପ୍ରାଚୀନ ଗ୍ରୀକ୍ ସାହିତ୍ୟରେ 'ହୋମ୍‌ର' ଏବଂ ଇଂରାଜୀ ସାହିତ୍ୟର 'ଚସର୍‌'ଙ୍କ ପରି ସେ ନିଜର ପ୍ରଜ୍ଞା, ପ୍ରତିଭା ଓ ପାଣ୍ଡିତ୍ୟର ଔଜ୍ଜଲ୍ୟରେ ଓଡ଼ିଆ ସାହିତ୍ୟ ଜଗତରେ ମହାକବି ରୂପରେ ନିଜର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି ।

**ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି :**

ସାରଳାଙ୍କ ପୂର୍ବରୁ ଦୀର୍ଘ ସାତଶହ ବର୍ଷ ଧରି ତାନ୍ତ୍ରିକ ସାଧନାର ପୃଷ୍ଠଭୂମିରେ ଏ ଦେଶରେ ସମାଜ ଓ ସାଂସ୍କୃତିକ ଜୀବନ ଧାରାରେ ଘୋର ଯୌନ ବ୍ୟଭିଚାର, ଭ୍ରଷ୍ଟାଚାର, ଅସଂଯମ, ଅବକ୍ଷୟ ଘଟି ଏ ଦେଶର ଜନସାଧାରଣଙ୍କ ନୈତିକ ଓ ଆଧ୍ୟାତ୍ମିକ ଜୀବନକୁ ବିଡ଼ମ୍ବିତ ଓ କଳୁଷିତ କରିଦେଇଥିଲା । ସାମାଜିକ ଜୀବନରେ ନାରୀ ସମ୍ଭୋଗ, ଉଚ୍ଛୃଙ୍ଖଳ ଯୌନଚର୍ଯ୍ୟା ବିଳାସବ୍ୟସନ, ପରସ୍ତ୍ରୀ, ଲୋଲୁପତା, ବ୍ୟଭିଚାର ସମାଜର ଲୋକ ଜୀବନକୁ ବିଭ୍ରାନ୍ତ, ପର୍ଯ୍ୟୁଷିତ କରିବା ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ଜୀବନ ଓ ଆଧ୍ୟାତ୍ମ ସାଧନକୁ ବି ଭ୍ରଷ୍ଟ, ବିଡ଼ମ୍ବିତ କରି ପକାଇଥିଲା । ତେଣୁ ସାରଳା ଦାସ ସମାଜ ଜୀବନର ଉନ୍ନତି, ବ୍ୟକ୍ତି

ଜୀବନର ସଂଯମ, ପବିତ୍ରତା, ସାଂସ୍କୃତିକ ଜୀବନର ପୁନଃର୍ନବୀକରଣ, ଅଧ୍ୟାତ୍ମିକଭାବନାର ଉତ୍ତରଣ ଓ ନୈତିକତାର ପୁନଃ ପ୍ରତିଷ୍ଠା ଲାଗି ଅଦମ୍ୟ ପ୍ରଚେଷ୍ଟା କରିଥିଲେ । ସାରଳା ଜଣେ ସଂସ୍କାରକ ରୂପେ ସମାଜ ଓ ଆଧ୍ୟାତ୍ମିକ ଜୀବନକୁ ଯୌନ ବ୍ୟଭିଚାର, ନୈତିକ ଅବକ୍ଷୟ ଓ ଅସଂଯମର ଅତଳ ପଙ୍କରୁ ଉଦ୍ଧାର କରି ସମାଜରେ ଅଦ୍ୱୈତ ଶୂନ୍ୟ ଉପାସନା, ଓ ଯୋଗ ସଂଯମ ପିଣ୍ଡିତ ଆଧ୍ୟାତ୍ମିକ ସାଧନାର ବାର୍ତ୍ତା ପ୍ରଚାର କରିଥିଲେ । ସାରଳାଙ୍କ ସମୟ ବେଳକୁ ତତ୍କାଳୀନ ସମାଜ ଜୀବନ ଉଚ୍ଚବର୍ଗର ବ୍ରାହ୍ମଣ୍ୟ ପଣ୍ଡିତମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ସମାଜରେ ବ୍ରାହ୍ମଣମାନଙ୍କର ହିଁ ପୂର୍ଣ୍ଣକର୍ତ୍ତୃତ୍ୱ ଥିଲା । ବ୍ରାହ୍ମଣ ପଣ୍ଡିତ ମାନେହିଁ କେବଳ ସଂସ୍କୃତ ଶାସ୍ତ୍ର ଗ୍ରନ୍ଥମାନଙ୍କର ଅଧ୍ୟୟନ, ଆଲୋଚନା ଓ ବିଶଦ ଚର୍ଚ୍ଚା କରିପାରୁ ଥିଲେ । ଅନ୍ୟ ଜାତିମାନଙ୍କର ସଂସ୍କୃତ ପଠନ, ଅନୁଶୀଳନ କିମ୍ବା କାବ୍ୟଚର୍ଚ୍ଚା କରିବାର ଅଧିକାର ନଥିଲା । ବେଦ, ଉପନିଷଦ, ପୁରାଣାଦି ପଠନରୁ ବ୍ରାହ୍ମଣେତର ଜାତି ନିବୃତ ଥିଲେ । ଏପରିକି ପ୍ରାଦେଶିକ ଭାଷାରେ ପୁରାଣାଦି ରଚନା କରିବା ସଂପୂର୍ଣ୍ଣ ନିଷିଦ୍ଧ ଥିଲା । କେବଳ ଦେବଭାଷା ସଂସ୍କୃତ ଛଡ଼ା ଅନ୍ୟ କୌଣସି ଭାଷାରେ ପୁରାଣାଦି ରଚନା ବୈଦିକ ଧର୍ମ, ପରମ୍ପରାର ବିରୋଧୀ ଥିଲା । ବ୍ରାହ୍ମଣମାନଙ୍କର ଆଧିପତ୍ୟ ଯୋଗୁଁ ଲୋକଭାଷା ବା ପ୍ରାଦେଶିକ ଭାଷାରେ ପୁରାଣାଦି ରଚନା ସମ୍ଭବ ହୋଇ ପାରୁନଥିଲା । ଏପରିକି ପୂର୍ବରୁ ଅନେକ ଓଡ଼ିଆ କବିଙ୍କର ପୁରାଣ ରଚନା ପ୍ରୟାସ ମଧ ବ୍ରାହ୍ମଣମାନଙ୍କର ପ୍ରତିରୋଧ ଓ ପ୍ରତିହତ ଯୋଗୁଁ ସମ୍ଭବ ହୋଇ ପାରିନଥିଲା । ଏହି କାରଣରୁ ସାରଳାଙ୍କ ଲେଖନୀ ଚାଳନାବେଳକୁ ଶୁଦ୍ଧ, ଲୋକକଥିତ ଓଡ଼ିଆ ଭାଷାରେ କୌଣସି ସୁଦୃଶ୍ୟ ସାହିତ୍ୟ ପରିଲକ୍ଷିତ ହୋଇ ପାରିନଥିଲା । ଓଡ଼ିଆ ଭାଷା ମଧ ହେୟ, ଅବହେଳିତ, ଅନୁନ୍ନତ ଅବସ୍ଥାରେ ଥିଲା । କେବଳ କେତେକ ପ୍ରାଚୀନ ଲୋକକଥା, ଲୋକଗୀତ, କିମ୍ବଦନ୍ତୀ ଓ ସହଜିଆ ବୌଦ୍ଧ, ଶୈବ ଓ ନାଥ ଧର୍ମର କତିପୟ ଅବିକଶିତ, ଅଶୁଦ୍ଧ ଓଡ଼ିଆ ସୃଷ୍ଟି ଭିତରେ ଓଡ଼ିଆ ସାହିତ୍ୟ ସୀମାବଦ୍ଧ ଥିଲା ।

ମାତ୍ର ସାରଳା ଦାସ ତତ୍କାଳୀନ ସମାଜର ଅଲିଖିତ ନୀତି – ନିୟମ ଓ ସମାଜର ବଡ଼ ପଣ୍ଡାମାନଙ୍କର ନାଲି ଆଖିକୁ ଖାତିର୍ ନକରି ସ୍ପର୍ଦ୍ଧାର ସହିତ ଦୁଃସାହସିକ ପଦକ୍ଷେପ ନେଇ ପ୍ରାଦେଶିକ ଭାଷାରେ ପୁରାଣାଦି ରଚନା ଅୟମାରମ୍ଭ କଲେ । ସଂସ୍କୃତ, ପ୍ରାକୃତ ସାହିତ୍ୟ ଓ ବ୍ରାହ୍ମଣମାନଙ୍କର ଅପ୍ରତିହତ ପ୍ରଭାବ, ପ୍ରତିଷ୍ଠାକୁ ବିନଷ୍ଟ କରି ସାରଳା ଦାସ ଗ୍ରାମୀଣ, ଲୋକକଥିତ, ବିଶୁଦ୍ଧ ଓଡ଼ିଆ ଭାଷାରେ କାବ୍ୟ ସାହିତ୍ୟର ନବହର୍ମ୍ୟ ନିର୍ମାଣ କଲେ । ସାରଳା ଥିଲେ ଅତ୍ୟନ୍ତ ସୁଚତୁର ଓ ବୁଦ୍ଧିମାନ । ସାହିତ୍ୟ ରାଜ୍ୟରେ ବ୍ରାହ୍ମଣମାନଙ୍କର ଏକଚାଟିଆ ଅଧିକାରକୁ ପ୍ରତିହତ କରିବା ପାଇଁ ସେ ଅତି ଚତୁରତାର ସହିତ ନିଜକୁ

ଦେବୀ ପୁତ୍ର ଏବଂ ଦେବୀଙ୍କ ନିର୍ଦ୍ଦେଶରେ କାବ୍ୟ ରଚନା କରିଥିବାର ସୂଚିତ କରିଛନ୍ତି । ଯେଉଁଥି ପାଇଁ ସାରଳା 'ମହାଭାରତ ଗ୍ରନ୍ଥ'ର ଆଦି ପର୍ବରେ ଲେଖିଛନ୍ତି-

"ସାରୋଳୋ ଦେବୀ ଚଣ୍ଡୀ ଅଟଇ ବଇଷ୍ଣବୀ
ତାହାଙ୍କର ପୁତ୍ର ମୁ ସାରଳା ଦାସ କବି ।"

କେବଳ ସେତିକି ନୁହେଁ, କବି ନିଜକୁ ଦେବୀ ଚଣ୍ଡୀଙ୍କର ପରମଭକ୍ତ, ଦାସ ରୂପରେ ଏବଂ ଶୂଦ୍ରମୁନି ନାମରେ ମଧ୍ୟ ସୂଚିତ କରିଛନ୍ତି । କବି ତାଙ୍କର 'ହରିବଂଶ ମହାଭାରତ'ରେ ଲେଖିଛନ୍ତି-

"ହରିପାଦେ ଶରଣ ସାରୋଳା ଚଣ୍ଡୀଦାସ
× × ×
ଭାରତ ହରିବଂଶ ଯେ ହୋଇଲା ସଂପୂର୍ଣ୍ଣ
ସାରୋଳା ଚଣ୍ଡୀ ଦାସ ପଶିଲା ଶରଣ ।"

ପୁନଶ୍ଚ- କବି ଗଭୀର ବିନୟ ଓ ଅସୂୟା ଶୂନ୍ୟ ଭାବରେ ନିଜକୁ ଶୂଦ୍ରମୁନି ରୂପେ ପରିଚୟ ଦେଇଛନ୍ତି । କବିଙ୍କ ଭାଷାରେ-

"ଜଗନ୍ନାତା ଯହୁଁ ପ୍ରସନ୍ନ ମୋତେ ହେଲେ
ଶୂଦ୍ରମୁନି ସାରଳା ଦାସ ନାମ ଦେଲେ ।"

ସାରଳା ଦାସ ସଂସ୍କୃତ ପଣ୍ଡିତମାନଙ୍କର ପ୍ରତିସ୍ପର୍ଦ୍ଧୀ ଭାବରେ ଆଞ୍ଚଳିକ ଓଡ଼ିଆ ଭାଷାରେ ଗ୍ରନ୍ଥ ରଚନା କରିଥିବାରୁ ସଂସ୍କୃତ ପଣ୍ଡିତମାନଙ୍କର ବିଷଦୃଷ୍ଟିରେ ପଡ଼ିବାର ସମ୍ଭାବନା କରି ଅତି ଚତୁରତାର ସହିତ ନିଜକୁ ମୂର୍ଖ ଅପଣ୍ଡିତ କହି ଦେବୀ ସାରଳାଙ୍କ ନିର୍ଦ୍ଦେଶରେ ଗ୍ରନ୍ଥ ରଚନା କରିଛନ୍ତି ବୋଲି 'ଚଣ୍ଡୀପୁରାଣ' ଗ୍ରନ୍ଥରେ ସୂଚିତ କରିଛନ୍ତି ।

ଏହି ଶୂଦ୍ରକବି ନିଜର ଅସାଧାରଣ ପାଣ୍ଡିତ୍ୟ, ପ୍ରତିଭା ଓ ଦୁଃସାହସ ବଳରେ ଓଡ଼ିଆ ଭାଷାରେ ମୌଳିକ କାବ୍ୟ-ସାହିତ୍ୟ ରଚନା କରି ଓଡ଼ିଆ ଜାତିର ଅକ୍ଷୟ ଗୌରବ ରଖିଯାଇଛନ୍ତି । ସାରଳା ତାଙ୍କର ସ୍ୱକୀୟ ପ୍ରତିଭାର ସହଜାତ ଅନ୍ତର୍ଦୃଷ୍ଟି ଓ ପ୍ରତ୍ୟକ୍ଷ, ବାସ୍ତବ ଅଭିଜ୍ଞତା ଫଳରେ ତତ୍କାଳୀନ ସମାଜ ଓ ସାଂସ୍କୃତିକ ଜୀବନଧାରାର ବାସ୍ତବ ଚିତ୍ର ଚିତ୍ରଣ କରିଛନ୍ତି । ସମ୍ରାଟ କପିଳେନ୍ଦ୍ର ଦେବଙ୍କର ରାଜତ୍ୱ କାଳୀନ ସୁ-ଶାସନ ଯୋଗୁଁ ଓଡ଼ିଶାର ସାମାଜିକ, ରାଜନୈତିକ, ଧାର୍ମିକ, ସାଂସ୍କୃତିକ ଜୀବନ ଓ ପରମ୍ପରା ଯେଉଳି ଭାବରେ ବଳିଷ୍ଠ, ସମୃଦ୍ଧ, ସମୁନ୍ନତ ଓ ଉର୍ଜସ୍ୱଳ ହୋଇ ଉଠିଥିଲା, ତା'ର ବାସ୍ତବ ଚିତ୍ର ସାରଳା ତାଙ୍କ ସାହିତ୍ୟ ଭିତରେ ପ୍ରତିଭାତ କରିଛନ୍ତି । ସମ୍ରାଟ କପିଳେନ୍ଦ୍ର ଦେବ ଆପଣାର ଅସାଧାରଣ

ମନୀଷା ଓ ପୁରୋଦୃଷ୍ଟି ବଳରେ ଓଡ଼ିଶାର ଜାତୀୟ ଜୀବନକୁ ସଂପୂର୍ଣ୍ଣ ସ୍ୱାଧୀନ ଓ ମୌଳିକ ଭାବ ଚେତନାର ପୃଷ୍ଠଭୂମିରେ ନୂତନ ରୂପରେ ସଂଘଠିତ କରି ଏ ଜାତିକୁ ଏକ ବଳିଷ୍ଠ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ କରିଥିଲେ । ଏ ଜାତିର ନିଜସ୍ୱ ମୌଳିକତା, ଆତ୍ମସ୍ୱାଭିମାନ, ସୁ-ଉଚ୍ଚଆଧାତ୍ମିକ ପରଂପରା, ମହାନ୍ ସାଂସ୍କୃତିକ ବିଚାରଧାରା, ସମୁନ୍ନତ ସମର ବିଳାସ, ଜାତୀୟ ଐକ୍ୟ, ଅଖଣ୍ଡତା ଓ ଐତିହ୍ୟର ସଂକେତ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ସୁସ୍ପଷ୍ଟ ହୋଇ ଉଠିଥିଲା । ଏହିଭଳି ଏକ ସମୃଦ୍ଧ ରାଜନୈତିକ ପରମ୍ପରା, ମହନୀୟ ସଂସ୍କୃତି ଓ ସୁ-ସଂସ୍କୃତ, ମାର୍ଜିତ ସାମାଜିକ ପରିବେଶ ମଧ୍ୟରେ ସାରଳା ଦାସଙ୍କର ଆବିର୍ଭାବ ଘଟିଥିଲା ।

## ସାରସ୍ୱତ ସୃଷ୍ଟି:-

ସାରଳା ଦାସ ଓଡ଼ିଆ ଭାଷା ଓ ସାହିତ୍ୟକୁ ସଂସ୍କୃତ ଭାଷା- ସାହିତ୍ୟର ପ୍ରଭାବ ଓ ପ୍ରାଧାନ୍ୟରୁ ମୁକ୍ତ କରି ଏକ ସ୍ୱତନ୍ତ୍ର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ କରାଇଥିଲେ । ସେ ସଂସ୍କୃତ ଶାସ୍ତ୍ର ଗ୍ରନ୍ଥଗୁଡ଼ିକୁ ଗଭୀର ଭାବରେ ଅଧ୍ୟୟନ ଓ ଅନୁଶୀଳନ କରି ତାକୁ ଆତ୍ମିକ ରସରେ ଜାରିତ କରି ଓଡ଼ିଆ ଭାଷାରେ ମୌଳିକ କାବ୍ୟକୃତିମାନ ରଚନା କଲେ । ତାଙ୍କର ଅମଳିନ, ଅମର କାବ୍ୟକୃତି ଗୁଡ଼ିକ ହେଲା- ଓଡ଼ିଆ ମହାଭାରତ, ବିଲଙ୍କା ରାମାୟଣ, ଭାରତ ହରିବଂଶ, ଚଣ୍ଡୀପୁରାଣ, ଲକ୍ଷ୍ମୀନାରାୟଣ ବଚନିକା ଓ ବିଚିତ୍ର ରାମାୟଣ । ଏହି ସବୁ ଗ୍ରନ୍ଥଗୁଡ଼ିକ ମହାକାଳର କପୋଳରେ ଏକ ଏକ ଉଜ୍ଜ୍ୱଳ ବହ୍ନିଟୀକା ରୂପେ ଚିର ଯାଜ୍ଜ୍ୱଲ୍ୟମାନ । ସାରଳା ତାଙ୍କ କାବ୍ୟ କୃତି ଗୁଡ଼ିକର ରଚନା କ୍ରମ ସଂପର୍କରେ ସୂଚନା ଦେବାକୁ ଯାଇ 'ଚଣ୍ଡୀ ପୁରାଣ' ଗ୍ରନ୍ଥରେ ଲେଖିଛନ୍ତି-

"ପ୍ରଥମେ ରାମାୟଣ ଦ୍ୱିତୀୟେ ମହାଭାରତ
ତୃତୀୟେ ଲେଖନ ମୁ କଲଇ ଭାଗବତ ।"

ଏଥିରୁ ଜଣାଯାଏ କବି ପ୍ରଥମେ ବିଲଙ୍କା ରାମାୟଣ ଦ୍ୱିତୀୟରେ ମହାଭାରତ ଗ୍ରନ୍ଥ ଓ ତୃତୀୟର ଦେବୀ ଭାଗବତ ବା ଚଣ୍ଡୀପୁରାଣ ଗ୍ରନ୍ଥ ରଚନା କରିଛନ୍ତି । ତାପରେ ସେ ଲକ୍ଷ୍ମୀନାରାୟଣ ବଚନିକା, ବିଚିତ୍ର-ରାମାୟଣ ଓ ଭାରତ ହରିବଂଶ ଗ୍ରନ୍ଥ ରଚନା କରିଛନ୍ତି ।

## ବିଲଙ୍କା ରାମାୟଣ:-

ସଂସ୍କୃତ 'ଅଦ୍ଭୁତ ରାମାୟଣ'ର ଅବଲମ୍ବନରେ ସାରଳା ବିଲଙ୍କା ରାମାୟଣ ଗ୍ରନ୍ଥ ରଚନା କରିଛନ୍ତି । ଏହା ଶାକ୍ତ ଧର୍ମ-ଦର୍ଶନ ମୂଳକ ଏକ ମହାନ୍ ସୃଷ୍ଟି । ସାଧାରଣତଃ ଶାକ୍ତ ଧର୍ମରେ ପୁରୁଷ ଅପେକ୍ଷା ପ୍ରକୃତି ବା ନାରୀ ଶକ୍ତିର ପ୍ରାଧାନ୍ୟ ପରିଲକ୍ଷିତ ହୋଇଥାଏ ।

ବିଲଙ୍କା ରାମାୟଣରେ ମର୍ଯ୍ୟାଦାବନ୍ତ ପୁରୁଷ ଶ୍ରୀରାମଚନ୍ଦ୍ରଙ୍କ ଅପେକ୍ଷା ଦେବୀ ସୀତାଙ୍କର ପ୍ରାଧାନ୍ୟ ଓ ମହିମା ବର୍ଣ୍ଣିତ ହୋଇଛି । ରାମଚନ୍ଦ୍ର ଲଙ୍କେଶ୍ୱର ଦଶାନନ ରାବଣକୁ ନିହତ କରିବା ପରେ ପୁଷ୍କର ଦ୍ୱୀପର ସହସ୍ରାଶିରା ରାବଣକୁ ବଧ କରିବାରେ ଅସମର୍ଥ ହୋଇଛନ୍ତି । କାରଣ ସହସ୍ର ଶିରା ରାବଣ ବ୍ରହ୍ମାବରରେ ଥିଲା ବଳୀୟାନ୍ । ସ୍ୱୟଂ ବ୍ରହ୍ମା ଏବଂ ବୃହଷ୍ପତି ତା' ଘରେ କାର୍ଯ୍ୟ କରିଥାନ୍ତି । ଏ ସମ୍ପର୍କରେ ବିଲଙ୍କା ରାମାୟଣରେ କବି ଲେଖିଛନ୍ତି-

"ବ୍ରହ୍ମା ବୋଇଲେ ମୋର ନାହିଁ ତ ଆୟତ୍ତ
ସହସ୍ର ଶିରା ରାବଣ ଲକ୍ଷଶିରା ପୁତ ।
ମୁହିଁ ଯାଇଁ ବେଦ ପଢ଼େ ପ୍ରଭାତ କାଳରେ
ବୃହସ୍ପତି ପାଞ୍ଜି ପଢ଼େ ଯମ ବାଡ଼ି-ତାଟି
ଅପସରୀ ମାନେ ଥାନ୍ତି ନୃତ୍ୟ-ଗୀତେ ଖଟି ।"

ଏହି ମହାବଳୀ ଅସୁର ସହସ୍ର ଶିରା ରାବଣ ସହିତ ରାମଚନ୍ଦ୍ର ଭୟଙ୍କର ଯୁଦ୍ଧ କରି ମଧ୍ୟ ତାକୁ ଯୁଦ୍ଧରେ ପରାସ୍ତ, ବଧ କରିପାରି ନାହାଁନ୍ତି । ତେଣୁ ରାମଚନ୍ଦ୍ର ଦେବୀ ସୀତାଙ୍କର ସହାୟତା ଲୋଡ଼ିଛନ୍ତି । ଦେବୀ ସୀତା ସିଂହବାହିନୀ ମହାମାୟୀଦୁର୍ଗାଙ୍କ ସ୍ତୁତି କରି ତାଙ୍କ ଠାରୁ ପୁଷ୍ପଧନୁ ଓ ପଞ୍ଚଶର ଲାଭ କରିଛନ୍ତି । ରାମ ଓ ସହସ୍ର ଶିରା ରାବଣ ମଧ୍ୟରେ ଭୟଙ୍କର ଯୁଦ୍ଧ ଚାଲିଥିବା ବେଳେ ଦେବୀ ସୀତା ମୋହିନୀ ରୂପ ଧାରଣ କରି ବିଲଙ୍କା ରାବଣ ସମ୍ମୁଖରେ ଅବତୀର୍ଣ୍ଣ ହୋଇ ତା' ଉପରକୁ କାମଶର ନିକ୍ଷେପ କରିଛନ୍ତି । ସମ୍ମୁଖରେ ବିବସନା ଅପରୂପା ଦେବୀ ମୂର୍ତ୍ତିକୁ ଦେଖି, କାମବାଣର ପ୍ରଭାବରେ ଅସୁର ଚିତ୍ତରେ ଶିହରଣ ଓ କାମ ଭାବନା ଉଦ୍ରେକ ହେବାରୁ ସେ ହୀନବୀର୍ଯ୍ୟ ଓ ହୀନବଳ ହୋଇ ପଡ଼ିଛି । ସାରଳା ଦାସ ଏହି ଦୃଶ୍ୟକୁ ବର୍ଣ୍ଣନା କରିବାକୁ ଯାଇ ବିଲଙ୍କା ରାମାୟଣରେ ଲେଖିଛନ୍ତି-

ଅପୂର୍ବ ମୂରତି ଧଇଲେକ ବଇଦେହୀ
ଅସୁର ଆଗରେ ଉଭାହେଲେ ଦେବୀ ଯାଇଁ ।
ଯହୁଁ ଗଗନକୁ ଚାହିଁ ଦେଲାକ ଅସୁର
ମହାକୋପେ ଦୈତ୍ୟଅଙ୍ଗ କମ୍ପେ ଥରହର
ନବ ଯଉବନ ସତୀ ଦେଲେକ ଦେଖାଇ
ବେଗେ ପଞ୍ଚଶର ପୁଷ୍ପଧନୁରେ ପୁରାଇ ।
× × ×
କନ୍ଦର୍ପର ପଞ୍ଚଶର ଅଙ୍ଗରେ ବାଜିଲା ।
ବେଲୁ ବେଳ ଦୈତ୍ୟ ତନୁ ଆତୁର ହୋଇଲା ।

ବିଲଙ୍କା ରାବଣର ଏହି କାମାସକ୍ତ, ବିବଶ ଅବସ୍ଥାର ସୁଯୋଗ ନେଇ ରାମଚନ୍ଦ୍ର ଶରଦ୍ୱାରା ଅସୁରକୁ ନିଧନ କରିଛନ୍ତି । ତେଣୁ କବି ଏ ଗ୍ରନ୍ଥରେ ମୁଖ୍ୟତଃ ଦେବୀଦୁର୍ଗା ଏବଂ ସତୀସୀତାଙ୍କର ହିଁ ମହିମା ଓ ମହତ୍ତ୍ୱର ପ୍ରକଟନ କରିଛନ୍ତି ।

**ଚଣ୍ଡୀ ପୁରାଣ:-**

ଏହା ମଧ୍ୟ ଏକ ଶକ୍ତି ଉପାସନା ମୂଳକ ଗ୍ରନ୍ଥ । ସଂସ୍କୃତ ଦେବୀ ଭାଗବତ ଓ ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ସପ୍ତସତୀ ଚଣ୍ଡୀର ଅନୁସରଣରେ ଏହି ଗ୍ରନ୍ଥ ରଚିତ । ମୂଳ ସପ୍ତସତୀ ଚଣ୍ଡୀ ପୁରାଣର ମହିଷାମର୍ଦ୍ଦିନୀ ଦେବୀଦୁର୍ଗା ସାରଳାଙ୍କ ଚଣ୍ଡୀ ପୁରାଣରେ ଏକାଧାରରେ ଖଡ଼୍‌ଗ- ଖର୍ପର ଧାରଣୀ ମହିଷାମର୍ଦ୍ଦିନୀଦୁର୍ଗା ଓ ବୀଣାବାଦିନୀ ବାଗ୍‌ଦେବୀ ସରସ୍ୱତୀ ରୂପେ ଚିତ୍ରିତା ଓ ବନ୍ଦିତା ହୋଇଛନ୍ତି । ଚଣ୍ଡୀ ସ୍ୱରୂପିଣୀ ଦେବୀଦୁର୍ଗା ଓ ମହିଷାସୁର ମଧ୍ୟରେ ଯୁଦ୍ଧ ଓ ଦେବୀଙ୍କ ଶକ୍ତି ବଳରେ ଅସୁରର ନିଧନ ପ୍ରସଙ୍ଗ ହିଁ ଚଣ୍ଡୀ ପୁରାଣର ମୁଖ୍ୟ କଥାବସ୍ତୁ । କାବ୍ୟାରମ୍ଭରେ କବି ଗଣେଷଙ୍କର ବନ୍ଦନା କରି ତାପରେ ଝଙ୍କଡ଼ ବାସିନୀ ଦେବୀ ସାରଳା, ବ୍ରହ୍ମା-ବିଷ୍ଣୁ-ଶିବ ଓ ଅଗ୍ନିଦେବଙ୍କର ବନ୍ଦନା କରି କାବ୍ୟ ବିଷୟ ବସ୍ତୁର ଅୟମାରମ୍ଭ କରିଛନ୍ତି । ଏହାର କଥାବସ୍ତୁ ସମ୍ବାଦ ଶୈଳୀରେ ରଚିତ । ବ୍ରହ୍ମଶାପ ମୋଚନ ଓ ଦୁର୍ଗତି ଖଣ୍ଡନ ନିମିତ୍ତ ମୁନି ଶ୍ରେଷ୍ଠ ଶୁକଦେବ ରାଜା ପରୀକ୍ଷିତଙ୍କୁ ଶକ୍ତିମୟୀ ଦେବୀ ଦୁର୍ଗାଙ୍କର ଚରିତ ଶୁଣାଇଛନ୍ତି ।

ରାକ୍ଷସ ରାଜା ବଜ୍ରସିଂହର ପୁତ୍ର କପିଳ ସିଂହ କଠୋର ତପସ୍ୟା ବଳରେ ଭଗବାନ ଶିବଙ୍କୁ ସନ୍ତୁଷ୍ଟ କରି ବରପ୍ରାପ୍ତି ଦ୍ୱାରା ସ୍ତମ୍ଭନ ବିଦ୍ୟା ଆୟତ୍ତ କରି ଶୃଙ୍ଗାର ରସରେ ନିପୁଣ ହୋଇଥିଲା । କପିଳ ସିଂହର ଉଗ୍ର ଏବଂ ନିଷ୍ଠୁର ରମଣରେ ଅତିଷ୍ଠ ହୋଇ ତା'ର ସ୍ତ୍ରୀ ସିଂହଳ ଦ୍ୱୀପକୁ ପଳାୟନ କରି ମଇଁଷି ରୂପରେ ଆତ୍ମଗୋପନ କରିଥିଲା । ଏହି ସମୟରେ ଯମ ବାହନ କୃତାନ୍ତ ମହିଷ ତାକୁ ବଳପୂର୍ବକ ରମଣ କଲା । ଯାହା ଫଳରେ ମଣିଷ ଶରୀର ଓ ମଇଁଷି ମସ୍ତକଧାରୀ ଏକ ସନ୍ତାନ ଜନ୍ମ ନେଲା । ସେହି ସନ୍ତାନ ହିଁ ମହିଷ ବା ମହିଷାସୁର ରୂପେ ଖ୍ୟାତ ହେଲା । ମହିଷାସୁର ବ୍ରହ୍ମାଙ୍କୁ କଠୋର ତପସ୍ୟାରେ ସନ୍ତୁଷ୍ଟ କରି ତାଙ୍କଠାରୁ ବରପ୍ରାପ୍ତ ହେଲା ଯେ ସେ ସମସ୍ତ ଦେବତାଙ୍କ ଠାରୁ ଜୟଲାଭ କରିବ । ସେ ଅଗ୍ନିରେ ପୋଡ଼ିବ ନାହିଁ, ଖଡ଼୍‌ଗରେ ଛିଡ଼ିବ ନାହିଁ କି ଜଳରେ ବୁଡ଼ିବ ନାହିଁ । ମାତ୍ର ବ୍ରହ୍ମା ବରପ୍ରଦାନ ସମୟରେ କହିଥିଲେ ମର୍ତ୍ତ୍ୟରେ ଜନ୍ମ ହୋଇ କେହି ଅମର ହୋଇପାରିବ ନାହିଁ, ତେଣୁ ତୋତେ ଅବଶ୍ୟ ମରିବାକୁ ହେବ । ତୁ ଏକ ରମଣୀ ହସ୍ତରେ ନିଧନ ହେବୁ । ଏହା ଶୁଣି ମହିଷାସୁର ବ୍ରହ୍ମାଙ୍କୁ କହିଛି- ମୁଁ ଯଦି ନାରୀ ହସ୍ତରେ ନିଧନ ହେବି, ତେବେ ନାରୀର ଉନ୍ମୁକ୍ତ ଯୌବନ ଦେଖି ମୁଁ ମୃତ୍ୟୁବରଣ କରିବି । କବିଙ୍କ ଭାଷାରେ-

"ମୈଷା ବୋଲେ ଯେବେ ସ୍ତିରୀହାତରେ ନିଧନ
ହୋଇବି, ମୁଁ ଚାହିଁଥିବି ତା' ସ୍ତନ ଯୌବନ।"

ଏହି କାରଣରୁ ଦେବୀଦୁର୍ଗାଙ୍କୁ ବିବସନା ହୋଇ ମହିଷାସୁରକୁ ବଧ କରିବାକୁ ପଡ଼ିଥିଲା।

ମହିଷାସୁର ବ୍ରହ୍ମା ବର ବଳରେ ବଳୀୟାନ୍ ହୋଇ ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ଜୟ କଲା। ତା'ର ଅତ୍ୟାଚାରରେ ଅତିଷ୍ଠ, ଭୀତତ୍ରସ୍ତ ଓ ହତାଶ ହୋଇ ଦେବଗଣ ଭଗବାନ ବିଷ୍ଣୁଙ୍କ ପାଖରେ ଶରଣ ପଶିଲେ। ବିଷ୍ଣୁଙ୍କ ନିର୍ଦ୍ଦେଶରେ ହିଁ ଏକ ମହାଯଜ୍ଞର ଆୟୋଜନ କରାଗଲା। ଯେଉଁ ଯଜ୍ଞାନଳରୁ ମହାତେଜ ଶାଳିନୀ ଦେବୀ କାତ୍ୟାୟନୀ ଚଣ୍ଡୀ ରୂପରେ ଆବିର୍ଭୂତା ହେଲେ। କବିଙ୍କ ଭାଷାରେ-

"ଅନଳ ଶାନ୍ତ୍ୟାର୍ଥେ ବ୍ରହ୍ମା ଦେଲେ ଯେ ଆହୁତି
ମହାଅନଳ ମଧ୍ୟରେ ବିକଶିଲା ଜ୍ୟୋତି
ଅଗ୍ନିରୁ ତହିଁ ବହୁତ ବିକାଶିଲା ତେଜ
ବେନିପାଦ, ଏକଶିର ସହସ୍ରେକ ଭୁଜ।
ଅଭୟା କାତ୍ୟାୟନୀ ସେ ଅନାଦି ଶକତି
ମହା ବଇଷ୍ଣବୀ ଦେବୀ ହେଲେ ଉତପତ୍ତି।"

ଏହି ଅନଳ ସମ୍ଭୁତା ଦେବୀ ଦୁର୍ଗାଙ୍କୁ ତେତିଶ କୋଟି ଦେବତାମାନେ ସେମାନଙ୍କର ତେଜପୁଞ୍ଜ ପ୍ରଦାନ କରି ଦେବୀଙ୍କୁ ଆହୁରି ଶକ୍ତିମୟୀ, ତେଜୀୟାନ୍ କରିଛନ୍ତି। କବିଙ୍କ ଭାଷାରେ-

"ତେତିଶ କୋଟି ଦେବଙ୍କ ମହାତେଜ ଘେନି
        ଆଦି ଅନ୍ନପୂର୍ଣ୍ଣା ଜନ୍ମ ହୋଇଲେ ମେଦିନୀ।
ଦୁର୍ଗତି କାଳରେ ସେହୁ ହେଲେ ଉତପନ୍ନ
        ହୃଦୟ ବ୍ୟାକୁଳ ଛାଡ଼ି ଦେଲେ ସର୍ବଜନ।
        ×        ×        ×
ଦୁର୍ଗତକୁ ଯେଣୁ କରି ପାରନ୍ତି ସେ ଦୂର
        ତେଣୁ କରି ଦୁର୍ଗା ନାମ ଅଟଇ ତାଙ୍କର।"

ମହିଷାସୁରକୁ ବଧ କରିବା ପାଇଁ ଯଜ୍ଞାନଳ ସଂଭୂତା ଦେବୀ କାତ୍ୟାୟନୀ ଦୁର୍ଗାଙ୍କୁ ଦେବତାମାନେ ସ୍ତୁତି କରିଛନ୍ତି । ଦେବୀ ସନ୍ତୁଷ୍ଟ ହେବା ପରେ ଦେବତାମାନେ ତାଙ୍କୁ ନିଜ ନିଜର ଅସ୍ତ୍ର-ଶସ୍ତ୍ର ପ୍ରଦାନ କରିଛନ୍ତି । ଦେବୀଦୁର୍ଗା ମହିଷାସୁରକୁ ବଧ କରିବା ପାଇଁ ନିଜ ଶରୀରରୁ ନବ କକ୍ଷଚଣ୍ଡୀ, ଚଉଷଠୀ ଯୋଗିନୀ ଓ ବହୁ ଚାମଣ୍ଡା ସୃଷ୍ଟି କରିଛନ୍ତି । ଏ ସଂପର୍କରେ ଚଣ୍ଡୀ ପୁରାଣରେ କୁହାଯାଇଛି ଦୁର୍ଗାଙ୍କର ଶ୍ରମଝାଳରୁ ନାରାୟେଣୀ, ଡାକରୁ ଡାକେଶ୍ୱରୀ, ନାଭିରୁ ଚନ୍ଦ୍ରକାନ୍ତି, ଗଣ୍ଡସ୍ଥଳୀରୁ କମଳା, ଗର୍ଭରୁ ବିକରାଳୀ ଏହିପରି ଶରୀରର ବିଭିନ୍ନ ସ୍ଥାନ ଓ ଅଙ୍ଗମାନଙ୍କରୁ ଚଉଷଠୀ ଯୋଗିନୀ, ଚଣ୍ଡୀ, ଚାମଣ୍ଡାମାନେ ସୃଷ୍ଟି ହୋଇଛନ୍ତି । ଏହିମାନେ ହିଁ ମହିଷାସୁରର ଦୁର୍ଦ୍ଦାନ୍ତ ସେନାପତି ଓ ସୈନ୍ୟମାନଙ୍କୁ ନିଧନ କରିବାରେ ଦେବୀଙ୍କୁ ସହାୟତା କରିଛନ୍ତି । ପରିଶେଷରେ ଦେବୀଦୁର୍ଗା ମହିଷାସୁରକୁ ନିଧନ କରିଛନ୍ତି ।

ସାରଳା ଦାସ ଏହି ଗ୍ରନ୍ଥର ଶେଷରେ, ଓଡ଼ିଶାର ପ୍ରସିଦ୍ଧ ଶାକ୍ତପୀଠ ଓ ସେ ପୀଠର ଅଧିଷ୍ଠାତ୍ରୀ ଦେବୀମାନଙ୍କୁ ସ୍ତୁତି କରିଛନ୍ତି । ଏହି ଦେବୀମାନଙ୍କୁ ସାରଳା ଦେବୀଦୁର୍ଗାଙ୍କର ଭିନ୍ନ ଭିନ୍ନ ରୂପ ରୂପେ ଚିତ୍ରଣ କରି ତାଙ୍କର ବନ୍ଦନା ଓ ସ୍ତୁତି କରିଛନ୍ତି । କବିଙ୍କ ଭାଷାରେ-

"ଝଙ୍କଡ଼େ ରହିଲୁ ମାଗୋ ସାରଳା ନାମ ବହି
କାକଟ ପୁରେ ରହିଲୁ ମାଗୋ ମଙ୍ଗଳା ବୋଲାଇ ।
ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ

× × ×

ବାଙ୍କୀରେ ରହିଲୁ ମାଗୋ ଚର୍ଚ୍ଚିକା ବୋଲାଇ
ଯାଜପୁରେ ରହିଲୁ ବିରଜା, କାକଟ ପୁରେ ମଙ୍ଗଳା
ପଶ୍ଚିମ ଦିଗେ ରହିଲୁ ବୋଲାଇ ହିଙ୍ଗୁଳା ।"

ବାସ୍ତବରେ ଏହି ଚଣ୍ଡୀପୁରାଣ ଗ୍ରନ୍ଥଟି କବି ସାରଳା ଦାସଙ୍କର ଏକ ମହାର୍ଘ ସୃଷ୍ଟି । ଶାକ୍ତଧର୍ମ ଦର୍ଶନ ସମ୍ବଳିତ ଏହା ଏକ ମହାନ ପ୍ରାମାଣିକ ଗ୍ରନ୍ଥ ।

### ଭାରତ ହରିବଂଶ:-

ଏହି ଗ୍ରନ୍ଥଟି ସାରଳା ଦାସଙ୍କର ଏକ ଆନାଲୋଚିତ ଅଜ୍ଞାତ ମହାକାବ୍ୟ । ଏହି ଗ୍ରନ୍ଥ ସଂପର୍କରେ ପ୍ରଥମେ ଡକ୍ଟର ଦୁର୍ଗା ପ୍ରସନ୍ନ ପଣ୍ଡା ଓଡ଼ିଶା ସାହିତ୍ୟ ଏକାଡ଼େମୀର ମୁଖପତ୍ର 'କୋଣାର୍କ' ୭୪ ତମ ସଂଖ୍ୟା ୧୯୮୯ ରେ ସୂଚନା ପ୍ରଦାନ କରିଛନ୍ତି ।

ଏହି ଗ୍ରନ୍ଥଟି ସାରଳା ପରିଣତ ବୟସରେ ଏବଂ ସର୍ବଶେଷରେ ରଚନା କରିଥିବାର ଜଣାଯାଏ । ମହର୍ଷି କୃଷ୍ଣ ଦୈପାୟନ ବେଦବ୍ୟାସ କୃତ ସଂସ୍କୃତ ମହାଭାରତ ଓ ସଂସ୍କୃତ

ଭାଗବତର ଯୁଗ୍ମ କଥାବସ୍ତୁକୁ ନେଇ କବି 'ଭାରତ ହରିବଂଶ' କାବ୍ୟର ହର୍ମ୍ୟ ନିର୍ମାଣ କରିଛନ୍ତି । ସ୍ୱୟଂ ଭଗବାନ ଶିବ, ମହାଦେବୀ ପାର୍ବତୀଙ୍କୁ ଏହି ଭାରତ ହରିବଂଶର ଯେଉଁ କଥା ଶୁଣାଇଛନ୍ତି, ସେହି ଦିବ୍ୟ କଥାକୁ ଅଗସ୍ତି ମୁନି ରାଜା ବୈବସ୍ୱତଙ୍କୁ ଶୁଣାଇଛନ୍ତି । ଏହି ଗ୍ରନ୍ଥଟି ସମ୍ବାଦଶୈଳୀରେ ରଚିତ । ଏଥିରେ ଭାଗବତର ଗୋପଲୀଳା ଓ ଦ୍ୱାରକାଲୀଳା ସହିତ କୃଷ୍ଣ ତାଙ୍କ ସଖା ଅକ୍ରୂରଙ୍କୁ ହସ୍ତୀନା କଟକ ପଠାଇବା, ଯୁଦ୍ଧିଷ୍ଠିରଙ୍କ ସହ ଅକ୍ରୂରଙ୍କ ସାକ୍ଷାତ, ଅକ୍ରୂରଙ୍କ ପରାମର୍ଶରେ ଅର୍ଜ୍ଜୁନଙ୍କର କୃଷ୍ଣଙ୍କ ନିକଟକୁ ଗମନ ଓ ତାଙ୍କର ସଖ୍ୟତା ଲାଭ, କୃଷ୍ଣଙ୍କର ମହାପ୍ରୟାଣ, ପାଣ୍ଡବମାନଙ୍କର ସ୍ୱର୍ଗଯାତ୍ରା ପ୍ରସ୍ତୁତି ଓ ବିଭିନ୍ନ ପରୀକ୍ଷାର ସମ୍ମୁଖୀନ ହେବାପାଇଁ ଯୁଧିଷ୍ଠିରଙ୍କର 'ସୁଧର୍ମା ସଭା' ଗମନ ଆଦି ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

ଏହି କାବ୍ୟର ଆରମ୍ଭରେ କବି ବାଗ୍‌ଦେବୀ ସାରଳାଙ୍କୁ ସ୍ତୁତି କରିବା ସହିତ ତାଙ୍କ ଚଣ୍ଡୀ ରୂପର ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ଜୟ ତୁ ସାରଳା ଦେବୀ ମହିମା କିଶୋରୀ
ତୋହର ସୁଦୟାରେ ପଦ, ଅର୍ଥ ଦିଶଇ ।"

କବି ଏହି କାବ୍ୟ ରଚନାର ଶକ୍ତି ଓ ସାମର୍ଥ୍ୟ ଲାଭ ପାଇଁ ବାଗ୍‌ଦେବୀଙ୍କ ସ୍ତୁତି କରିବା ପରେ ଦେବୀଙ୍କ ଚଣ୍ଡୀରୂପର ମନୋଜ୍ଞ ବର୍ଣ୍ଣନା କରିଛନ୍ତି । ଦେବୀ ମହିଷାସୁରର ନିଧନ କରି ତା'ର ରୁଧିର ପାନ କରିବାର ଦୃଶ୍ୟକୁ କବି ବର୍ଣ୍ଣନା କରି ଲେଖିଛନ୍ତି-

"ବାଜିଣ ତ୍ରିଶୂଳ ହୃଦୟ ଫାଟି ଗଲା
ଶଗଡ଼ ସ୍ତମ୍ଭ ପ୍ରମାଣେ ରୋଧିର ବହିଲା ।
ହସ୍ତରେ ଖପରତୁ ଘେନିଲୁ ଶୁଭ୍ର କେଶୀ
ଖପର ପାତି ମାଗୋ ଗର୍ଭକୁ ଦେଲୁ ଖେପି ।"

× × ×

ସଂସାର ରକ୍ଷା ନିମନ୍ତେ ରୋଧିର ସମ୍ଭାଳିଲୁ
ସପ୍ତସିନ୍ଧୁ ରୋଧିର ଗର୍ଭରେ ପୁରାଇଲୁ ।"

ମହିଷାସୁରର ରକ୍ତପାନ ପରେ ଦେବୀ ଉଗ୍ରମୂର୍ତ୍ତି ଧାରଣା କରି ଦେବତାମାନଙ୍କୁ ମଧ୍ୟ ଗୋଡ଼ାଇଛନ୍ତି । କେବଳ ମହାଦେବଙ୍କୁ ଛାଡ଼ି ଅନ୍ୟ ସମସ୍ତ ଦେବତାମାନେ ଭୟରେ ପଳାଇଛନ୍ତି । ପରେ ଦେବୀ ଶିବଙ୍କୁ ବର ପ୍ରାର୍ଥନା କରିବାକୁ କହିଛନ୍ତି । ଶିବ ଦେବୀଙ୍କୁ ପତ୍ନୀରୂପେ ପାଇବାକୁ ଚାହିଁବାରୁ ଶ୍ରୀଚଣ୍ଡୀ ଶିବଙ୍କୁ ରମଣ ପ୍ରଦାନ କରିଛନ୍ତି ଓ ଶାନ୍ତ ପଡ଼ିଛନ୍ତି ।

ଏହି ଗ୍ରନ୍ଥଟିରେ କବି ମହାଭାରତୀୟ ଆର୍ଯ୍ୟ ସଭ୍ୟତା ସଂସ୍କୃତିର ଜୟଗାନ ସହିତ ଭାରତୀୟ ଆର୍ଯ୍ୟ ନାରୀର ଗୌରବ ଓ ମହତ୍ତ୍ୱକୁ ପ୍ରକଟନ କରିଛନ୍ତି । କବି ଦ୍ରୌପଦୀଙ୍କୁ ଆଦିଶକ୍ତି ରୂପେ ବର୍ଣ୍ଣନା କରିଛନ୍ତି । ସତ୍ୟାସନ୍ଧ, ଧର୍ମରାଜ ଯୁଧିଷ୍ଠିର ନିଜର କୃତକର୍ମ ପାଇଁ ଦ୍ରୌପଦୀଙ୍କ ପଦତଳେ ପଡ଼ି କ୍ଷମା ଓ ମୁକ୍ତି ଭିକ୍ଷା କରିବାର ପ୍ରସଙ୍ଗ କବି ଏଥିରେ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ଅନ୍ତପୁରେ ଯାଇଁ ଯୁଧିଷ୍ଠି ପଡ଼ିଲେ ଦେବୀ ପାଦ
ଦେଖିଣ ଦ୍ରୁପଦୀ ହୋଇଲେ ଆଶ୍ଚର୍ଯ୍ୟ
ବୋଇଲେ ଭୋ ସ୍ୱାମୀ: ମୁ ତୁମ୍ଭର ଯେ ନାରୀ
ମୋତେ ଓଳଗିଲ ସେ କଥା ନ' ବିଚାରି ।"

କେବଳ ଏତିକି ନୁହେଁ; ଶ୍ରୀକୃଷ୍ଣଙ୍କ ପରାମର୍ଶରେ ଯୁଧିଷ୍ଠିର ଦ୍ୱିତୀୟବାର ମଧ୍ୟ ଦ୍ରୌପଦୀଙ୍କୁ କ୍ଷମା ଯାଚନା କରିଛନ୍ତି । ଦ୍ରୌପଦୀ ସ୍ନାନସାରି ନୂତନ ବସ୍ତ୍ର ପରିଧାନ କରିବାକୁ ଯିବା ସମୟରେ ଯୁଧିଷ୍ଠିର ଦ୍ରୌପଦୀଙ୍କ ପଦତଳେ ବସି ତାଙ୍କ ଆର୍ଦ୍ରବସ୍ତ୍ର ଧରି ପ୍ରାର୍ଥନା କରି କହିଛନ୍ତି-

"ୟେହିବର ମୋତେ ଦିଅ ହେ ଯିଘ୍ନ ସେନୀ
ତୁହି ଦୟା କଲେ ସଂସାରୁ ଯିବ ଜିଣି ।
ୟେତେ ବୋଲି ଯୁଧିଷ୍ଠି ଧଇଲେ ପାଦ ବେନି ।"

ଦ୍ରୌପଦୀଙ୍କ ପାଦଧରି ମୁକ୍ତି ଭିକ୍ଷା କରିବାର ପରବର୍ତ୍ତୀ ସମୟରୁ ହିଁ ଯୁଧିଷ୍ଠିର ଦ୍ରୌପଦୀଙ୍କୁ ପରମପୂଜ୍ୟା, ଆଦିଶକ୍ତି, ମାତୃରୂପରେ ଗ୍ରହଣ କରି ନେଇଛନ୍ତି । ଯେଉଁଥି ପାଇଁ କବି ଲେଖିଛନ୍ତି-

"ମାତା ସମକରି ମାନିଲେ ଯୁଧିଷ୍ଠିର
ସେହି ଦିନୁ ଆଉ ନ' କଲେ ଶୃଙ୍ଗାର ।"

କବିଙ୍କ ଦୃଷ୍ଟିରେ ଏହି 'ଭାରତ ହରିବଂଶ' ଗ୍ରନ୍ଥ ଏକ ଅଗାଧ ବାରିଧି ସଦୃଶ । ଏହାର ଭିତରେ ଗୁପ୍ତ ହୋଇ ରହିଥିବା ଅଜ୍ଞାତ, ଧନାଲୋଚିତ, ଦୁର୍ଲ୍ଲଭ ବିଷୟବସ୍ତୁର ଉନ୍ମୋଚନ ପାଇଁ କବି ଏହି ଅଗାଧ ସିନ୍ଧୁର ମନ୍ଥନ ପ୍ରୟାସ କରିଛନ୍ତି । କବିଙ୍କ ଭାଷାରେ-

"ଭାରତ ହରିବଂଶୟେ ଅପୂର୍ବ ବାରାନିଧି
ୟେହା ମନ୍ଥିବାକୁ ମୁ କରିଅଛି ବୁଧି ।"

ସାରଳା ଏହି ଗ୍ରନ୍ଥର ଉପସଂହାରରେ ଉତ୍କଳର ଆରାଧ୍ୟ ଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅପୂର୍ବ ମହିମାର ପ୍ରକଟନ କରିଛନ୍ତି । କବିଙ୍କ ଭାଷାରେ-

"ଆହେ ସାଧୁଜନମାନେ ମୋ ଦୋଷ ନ' ଧରିବ
ମୁହିଁ ସିନା ମୂଢ଼ ଅଜ୍ଞାନ ମାନବ ।
ଯେଣୁ ଜଗନ୍ନାଥ ଦୟା ମୋତେ କରି
ତେଣୁ ସେ ସାହସେ ଲେଖିଲି ବିଚାରି ।
ଶ୍ରୀଜଗନ୍ନାଥ ଚରଣେ ପଡ଼ଇ ପୁନଃ ପୁନଃ
ଅଭୟ ଗତି ଯେବେ ଦେବା ଭଗବାନ ।"

ବାସ୍ତବରେ ଏହି ଗ୍ରନ୍ଥଟି କବିଙ୍କର ଏକ ଅମଳିନ, ମୌଳିକ କଳା ସୃଷ୍ଟି । ଏହି କାବ୍ୟର କଥାବସ୍ତୁ ଚୟନରେ, ବହୁ ନୂତନ ପ୍ରସଙ୍ଗ ଓ ଉପାଖ୍ୟାନର ଉପସ୍ଥାପନରେ ସର୍ବୋପରି ଚରିତ୍ର ଆଦି ସଂଯୋଜନାରେ କବିଙ୍କର ସ୍ୱାତନ୍ତ୍ୟ ଓ ମୌଳିକତା ଫୁଟି ଉଠିଛି । ନୀଳକାନ୍ତି ଉପାଖ୍ୟାନ, ନଟୁଚୋରୀ, ନାବକେଳି, ପୂତନାଜନ୍ମ ପ୍ରସଙ୍ଗ, ଅପୁତ୍ରିକ ନନ୍ଦ-ଯଶୋଦାଙ୍କୁ ପ୍ରଜାମାନଙ୍କର ରାଜ୍ୟରୁ ବିତାଡ଼ିତ ପ୍ରସଙ୍ଗ, କଂସର ଚିଟାଉ ଆଦି ବିଷୟ ବସ୍ତୁକୁ କବି ଏଥିରେ ନୂତନ ଭାବରେ ସଂଯୋଜିତ କରିଛନ୍ତି । ଏ ଗ୍ରନ୍ଥଟି କବିଙ୍କର ଅସାଧାରଣ କବିତ୍ୱ, ପାଣ୍ଡିତ୍ୟ ଓ ପ୍ରତିଭାର ଅନୁପମ ନିଦର୍ଶନ ।

**ମହାଭରତ:-**

ମହର୍ଷି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ କୃତ 'ସଂସ୍କୃତ ମହାଭାରତ' ଅନୁକରଣରେ ସାରଳା ଦାସ ଓଡ଼ିଆ ମହାଭାରତ ଗ୍ରନ୍ଥ ରଚନା କରିଥିଲେ ହେଁ; ଏଥିରେ କବିଙ୍କର ଅସାଧାରଣ ସୃଜନୀ ପ୍ରତିଭା, ସ୍ୱକୀୟ ଚିନ୍ତା-ଚେତନା, ମୌଳିକ କବି କଳ୍ପନା ଓ ଅପୂର୍ବ କବିତ୍ୱ, ପାଣ୍ଡିତ୍ୟ ଫୁଟି ଉଠିଛି । ଏହା ଓଡ଼ିଆ ଭାଷାରେ ଏକ କ୍ରାନ୍ତିକାରୀ, କାଳଜୟୀ, ବିଶାଳ ପୂର୍ଣ୍ଣାଙ୍ଗ ମହାକାବ୍ୟ । ଏହା ପ୍ରକୃତରେ ଓଡ଼ିଆ ଜାତୀୟ ଜୀବନର ବେଦ, ଓଡ଼ିଆ ସମାଜ ଜୀବନର ମହାଭାଷ୍ୟ ଓ ଓଡ଼ିଆ ଆଧ୍ୟାତ୍ମିକ- ସାଂସ୍କୃତିକ ଜୀବନର ମନୋଜ୍ଞ, ମନ୍ମୟ ପ୍ରତିଛବି । ସାରଳା ଦାସ ମହାଭାରତର ସଂପୂର୍ଣ୍ଣ କଥାବସ୍ତୁକୁ ପୂର୍ଣ୍ଣାଙ୍ଗ ରୂପଦେଇ ଓଡ଼ିଆ ଜାତି ପାଇଁ ଆଣି ଦେଇଛନ୍ତି- ଅଜସ୍ର ମହାନୀୟ ଗର୍ବ ଓ ଉତ୍ତୁଙ୍ଗ ଗୌରବ । ତାଙ୍କ ଲେଖନୀର ମନୋଜ୍ଞ, ଯାଦୁକରୀ ସ୍ପର୍ଶରେ ଏକ ବିରାଟ ଜାତି, ତା'ର ସଭ୍ୟତା ଓ ସଂସ୍କୃତିର ମହାନୀୟ ରୂପ ଆମ ଆଗରେ ଝଲସି ଉଠିଛି । ଏହା ଓଡ଼ିଆ ଜାତିର ଏକ ସ୍ୱତନ୍ତ୍ର ମୌଳିକ ମହାକାବ୍ୟ । ଏହାର ବିଷୟବସ୍ତୁ ଉପସ୍ଥାପନାରେ, ଚରିତ୍ର ଚିତ୍ରଣରେ, ଐତିହାସିକ ଭିତ୍ତିଭୂମି

ନିର୍ମାଣରେ, ରାଜନୈତିକ ପ୍ରେକ୍ଷାପଟ୍ଟ ବର୍ଣ୍ଣନାରେ, ସାମାଜିକ, ସାଂସ୍କୃତିକ ଓ ଆଧାତ୍ମିକ ଜୀବନଚର୍ଯ୍ୟାରେ, ସର୍ବୋପରି ଓଡ଼ିଶାର ଜନ-ଜୀବନର ବାସ୍ତବ ଚିତ୍ର-ଚିତ୍ରଣରେ କବିଙ୍କର ସ୍ୱକୀୟ ମୌଳିକତା, ଅପୂର୍ବ ସୃଜନଶୀଳତା, ଅଭିନବ ଶବ୍ଦ ଯୋଜନା ଓ ଅନୁପମ ବର୍ଣ୍ଣନା ବିଳାସ ଫୁଟି ଉଠିଛି । କେବଳ ସେତିକି ନୁହେଁ, କବି ମହାଭାରତୀୟ ଆର୍ଯ୍ୟ ସଭ୍ୟତା, ସଂସ୍କୃତି, ଉଚ୍ଚାଙ୍ଗ ମୂଲ୍ୟବୋଧର ଚିତ୍ର ମଧ୍ୟ ପ୍ରକଟନ କରିଛନ୍ତି । ଏହା ସହିତ ଭାରତୀୟ ନାରୀକୁ ଏ ଗ୍ରନ୍ଥରେ ସର୍ବୋଚ୍ଚ ସ୍ଥାନ ଓ ସମ୍ମାନ ଦିଆଯାଇଛି । ଏହି ମହାଭାରତର ପ୍ରତିଟି ଉପାଖ୍ୟାନ, କିମ୍ବଦନ୍ତୀ, ଚରିତ୍ର, ପ୍ରବାଦ, ପ୍ରବଚନ ଓ ନୀତିବାଣୀ ମାଧ୍ୟମରେ କବି ଓଡ଼ିଆ ଜାତୀୟ ଜୀବନ ଓ ବ୍ୟକ୍ତିଗତ ଜୀବନକୁ ଯେପରି ଶୃଙ୍ଖଳିତ, ମାର୍ଜିତ, ନିୟନ୍ତ୍ରିତ ଓ ମହୀୟାନ୍ କରି ପାରିଛନ୍ତି, ତା'ର ପଟ୍ଟାନ୍ତର ନାହିଁ ।

ସାରଳା ଦାସ କାବ୍ୟ ବିଷୟ ବସ୍ତୁର ଉପସ୍ଥାପନା ତଥା କାବ୍ୟ ନିର୍ମାଣ କୌଶଳରେ ମୌଳିକତା ରକ୍ଷା କରି ପାରିଛନ୍ତି । ମୂଳ ସଂସ୍କୃତ ମହାଭରତର ପଦ ସଂଖ୍ୟା ଏକ ଲକ୍ଷ ଥିବା ସ୍ଥଳେ ଓଡ଼ିଆ ମହାଭାରତର ପଦସଂଖ୍ୟା ଏକ ଲକ୍ଷ ଚାଳିଶ ହଜାର । ମୂଳ ସଂସ୍କୃତ ମହାଭରତରେ ପର୍ବ ବିଭାଗକୁ ସାରଳା କେବଳ ସଂଖ୍ୟା ଦୃଷ୍ଟିରୁ ଅନୁସରଣ କରିଥିଲେ ମଧ୍ୟ, ସଂସ୍କୃତ ମହାଭାରତର ପର୍ବ ଗୁଡ଼ିକର ନାମ ଓ ବିଷୟ କ୍ରମ ବଦଳାଇ ଦେଇଛନ୍ତି । ମୂଳ ସଂସ୍କୃତ ଗ୍ରନ୍ଥରେ ସୌପ୍ତିକପର୍ବ, ଅନୁଶାସନପର୍ବ, ମହାପ୍ରସ୍ଥାନିକପର୍ବକୁ ପରିହାର କରି ସାରଳା ମଧ୍ୟପର୍ବ, ଗଦାପର୍ବ ଓ କାଇଁସିଆପର୍ବ ନାମରେ ତିନୋଟି ନୂତନ ପର୍ବର ସଂଯୋଗ କରିଛନ୍ତି । ସାରଳା ମୂଳ ଗ୍ରନ୍ଥର ଅନେକ ବିଷୟକୁ ପରିହାର କରି କେତେକ ନୂତନ ବିଷୟକୁ ନିପୁଣ ଭାବରେ ଉପସ୍ଥାପନ ଓ ବର୍ଣ୍ଣନ କରିଛନ୍ତି । ମଧ୍ୟପର୍ବର ଅର୍ଜୁନ-ହନୁମାନ ଭେଟ, ଶୋଭାବତୀ ହରଣ, ନିଳେନ୍ଦ୍ରୀ ହରଣ, ସଭାପର୍ବର ମେରୁଶୂଳ ଋଷି ଚରିତ, ଅର୍ଜୁନ-ନାଗାର୍ଜୁନ ଯୁଦ୍ଧ, ଋଷ୍ୟଶୃଙ୍ଗ ଜନ୍ମ ବୃତ୍ତାନ୍ତ, ଭୀଷ୍ମପର୍ବର କଳିଙ୍ଗ ସେନା ପ୍ରସଙ୍ଗ, ନୃସିଂହାବତାର ପ୍ରସଙ୍ଗ, ଗଦାପର୍ବର ଭୀମଙ୍କର ସିଂହାସନ ପ୍ରାପ୍ତି, ଶାନ୍ତିପର୍ବର ଶାମ୍ବଙ୍କ ଶାପମୁକ୍ତି, ଅଶ୍ୱାରୋହଣପର୍ବର କଦମ୍ବାସୁର ଉପାଖ୍ୟାନ, କୃଷ୍ଣ ଅଶ୍ୱମେଧଯଜ୍ଞ, ବନପର୍ବର ସତ୍ୟ ଅମ୍ବା ଉପାଖ୍ୟାନ, ସଭାପର୍ବର ଜରାସନ୍ଧ ବଧ, ଶଲ୍ୟପର୍ବର ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ ପ୍ରଭୃତି ବର୍ଣ୍ଣନା ସାରଳାଙ୍କର ଅଭିନବ ଓ ମୌଳିକ ସୃଷ୍ଟି । ଏହା ସହିତ ସାରଳାଙ୍କ ଚରିତ୍ରମାନ ମୂଳ ସଂସ୍କୃତ ଚରିତ୍ରମାନଙ୍କର ଆଙ୍ଗିକ ଓ ଆତ୍ମିକ ରୂପ ଅବଲମ୍ବନରେ ଅଭିବ୍ୟଞ୍ଜିତ ହୋଇଥିଲେ ମଧ୍ୟ; ସେମାନେ ସାରଳାଙ୍କ ସ୍ୱକୀୟ ସ୍ୱାତନ୍ତ୍ର୍ୟ ଓ ମୌଳିକତାରେ ଉଦ୍ଭାସିତ । ସାରଳା ପୁରାଣର ଅତିମାନବମାନଙ୍କୁ ନ'ଆଙ୍କି ରକ୍ତ-ମାଂସ ଦେହଧାରୀ ଧରଣୀର ଧୂଳି-ଧୂସରିତ ମଣିଷମାନଙ୍କୁ ଆଙ୍କିଛନ୍ତି । ଅତିମାନବ ଚରିତ୍ରମାନଙ୍କୁ ଉତ୍କଳୀୟ

ଗ୍ରାମ୍ୟ ପରିବେଶରେ ସାଧାରଣ ମନୁଷ୍ୟର ସୁଖ-ଦୁଃଖ, ସ୍ନେହ-ଈର୍ଷା, ଲୋଭ-ମୋହ, ଆଶା-ଆକାଙ୍କ୍ଷା ଭିତରେ ଜଡ଼ାଇ ଦେଇଛନ୍ତି । ଦେବ-ଦେବୀମାନଙ୍କର ପାଦ ଜନପଦର ଧୂଳିରେ ବିବର୍ଣ୍ଣ ଓ ପାଣ୍ଡୁର ହୋଇଉଠିଛି । ସାରଳା ଚରିତ୍ର ଚିତ୍ରଣ ପ୍ରସଙ୍ଗରେ ଯେଉଁ ପରିବର୍ତ୍ତନ ଆଣିଛନ୍ତି, ସେହି ପରିବର୍ତ୍ତନ ମୂଳରେ ଯୁକ୍ତିଯୁକ୍ତତା ଓ ସ୍ୱାଭାବିକ ସୌନ୍ଦର୍ଯ୍ୟ ରହିଛି । ମୂଳ ମହାଭାରତରେ ଭୀମ, ଶକୁନି, ଦୁର୍ଯ୍ୟୋଧନ ଏପରି ଦ୍ରୌପଦୀ ଚରିତ୍ର ମଧ୍ୟ ଭିନ୍ନ, ସ୍ୱତନ୍ତ୍ର ରୂପେ ଚିତ୍ରିତ ହୋଇଛନ୍ତି । ମୂଳ ମହାଭାରତର ଚରିତ୍ର ଠାରୁ ସାରଳାଙ୍କ ଦ୍ରୌପଦୀ ସଂପୂର୍ଣ୍ଣ ରୂପେ ଭିନ୍ନ ଓ ସ୍ୱତାନ୍ତ୍ର । ସାରଳା ଦ୍ରୌପଦୀଙ୍କୁ ଅଗ୍ନିସ୍ନାତା, ପ୍ରତିହିଂସାର ଜ୍ୱାଳାମୟୀ ବହ୍ନିଶିଖା ରୂପେ ଚିତ୍ରିତା କରିଛନ୍ତି । ସାରଳାଙ୍କ ଦ୍ରୌପଦୀ ପ୍ରତ୍ୟହ ଅଗ୍ନିସ୍ନାନ କରନ୍ତି । ପୁନଶ୍ଚ ସାରଳା ଦ୍ରୌପଦୀଙ୍କୁ ଆଦ୍ୟାଶକ୍ତି ଚଣ୍ଡୀକା ରୂପେ ମଧ୍ୟ ବର୍ଣ୍ଣିତ କରିଛନ୍ତି । ଅତ୍ୟାଚାରୀ, ଦୁରାଚାରୀର ରକ୍ତପାନ ପାଇଁ ଦ୍ରୌପଦୀଙ୍କର ଭୟଙ୍କର, କରାଳୀ, ଚଣ୍ଡୀକା ରୂପକୁ କବି ବର୍ଣ୍ଣନା କରି ଲେଖିଛନ୍ତି-

"ସେ ଭୁଜ ଶୋଣିତ ନେଇ ଦ୍ରୌପଦୀ ଶିରରେ
ଢାଳିରେ ପବନ ପୁଅ ଆନନ୍ଦ ମନରେ ।

× × ×

ଯେତେବେଳେ କୃଷ୍ଣା ମୁଣ୍ଡେ ରକତ ପଡ଼ିଲା ।
କେଶଭିଜି ନାସା ବାଟେ ତାହା ବହି ଗଲା
ସେହି ଶୋଣିତକୁ ଦେବୀ କରିଲେ ଲେହନ
ବାମଭୁଜ ଉପାଡ଼ିଲେ ପୁଣି ଭୀମସେନ

ମୂଳ ମହଭାରତରେ ଗାନ୍ଧାରୀ ଚରିତ୍ର ମହାପୁଣ୍ୟବତୀ, ସତୀ, ସୌଭାଗ୍ୟବତୀ ରୂପେ ଚିତ୍ରିତା । ମାତ୍ର ସାରଳା ଗାନ୍ଧାରୀଙ୍କୁ ରାକ୍ଷସ ଅଂଶୀ, ଉଆଁସୀ କନ୍ୟାରୂପେ ଅଭିନବ ଚିତ୍ରଣ କରିଛନ୍ତି । ମୋଟମୋଟି ଭାବରେ ଦେଖିବାକୁ ଗଲେ ସାରଳା ମହାଭାରତର ଅଧିକାଂଶ ଚରିତ୍ର ନୂତନ ଓ ସ୍ୱତନ୍ତ୍ର ରୂପେ ରୂପାୟିତ ହୋଇଛନ୍ତି ।

ସାରଳାଙ୍କ ମହାଭାରତ ଇତିହାସର ମୌଳିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ରାଜତ୍ୱକାଳୀନ ବିଶାଳ ସାମ୍ରାଜ୍ୟ, ତା'ର ଐତିହ୍ୟ, ସଂସ୍କୃତି, ମୂଲ୍ୟବୋଧର ଚିତ୍ର ସାରଳା ମହାଭାରତରେ ପ୍ରକଟିତ । ଓଡ଼ିଶାର ବିଭିନ୍ନ ଭୌଗୋଳିକ ସ୍ଥାନ, ବିଭିନ୍ନ ତୀର୍ଥ କ୍ଷେତ୍ର ଓ ଦେବ-ଦେବୀଙ୍କର ବହୁଳ ବର୍ଣ୍ଣନା ଏଥିରେ ରହିଛି । ଏହା ସହିତ ଓଡ଼ିଆ ଜାତିର ସମରକୁଶଳତା, ଓଡ଼ିଆ ବୀରମାନଙ୍କର ଅପୂର୍ବ

ସାହସ ଓ ରଣ ହୁଂକାର, ଯୁଦ୍ଧ, ରାଜ୍ୟଜୟ, ଯୁଦ୍ଧକାଳୀନ ନୀତି-ନିୟମ, ବିଭିନ୍ନ ଯୁଦ୍ଧାସ୍ତ୍ର, ଯୁଦ୍ଧ ବାଦ୍ୟ ଆଦିର ବାସ୍ତବ, ଜୀବନ୍ତ ବର୍ଣ୍ଣନା ରହିଛି । କବି ଯୁଦ୍ଧ ଓ ସମରବିଳାସର ଯେପରି ନିଖୁଣ, ଜୀବନ୍ତ, ଚମତ୍କାର ବର୍ଣ୍ଣନା କରିଛନ୍ତି, ତାହା ବାସ୍ତବିକ ମହାନ୍ । ସାରଳା ମୂଳ ସଂସ୍କୃତ ମହାଭାରତର ସମାଜ କଥାର ବର୍ଣ୍ଣନା ସହିତ ଯୁଗୋପଯୋଗୀ ସମାଜର ଚିତ୍ର ମଧ୍ୟ ଅଙ୍କନ କରିଛନ୍ତି । ତତ୍କାଳୀନ ସମାଜର ଯୌନବ୍ୟଭିଚାର, ପରକୀୟାପ୍ରୀତି, ସାମାଜିକ ଅନ୍ଧବିଶ୍ୱାସ ଓ କୁ-ସଂସ୍କାର ବିରୁଦ୍ଧରେ ସାରଳା ସ୍ୱର ଉତ୍ତୋଳନ କରିଛନ୍ତି । ତତ୍କାଳୀନ ସମାଜର ଶିକ୍ଷା, ବ୍ୟବସାୟ-ବାଣିଜ୍ୟ, କୃଷି, ଭୂ-ରାଜସ୍ୱ ବିଧି, ବିବାହ ବ୍ୟବସ୍ଥା ଓ ବିଭିନ୍ନ କର୍ମ-କର୍ମାଣି, ସାମାଜିକ ଚଳଣି ଓ ପର୍ବ-ପର୍ବାଣୀର ଚିତ୍ରଣ ମଧ୍ୟ କବି କରିଛନ୍ତି । ଏହା ସହିତ ତତ୍କାଳୀନ ସମାଜରେ ପ୍ରତିଷ୍ଠିତ ବିଭିନ୍ନ ଧର୍ମା-ଦର୍ଶ ଯଥା- ସହଜିଆ ବୌଦ୍ଧଧର୍ମ-ତାନ୍ତ୍ରିକ ପରମ୍ପରା, ବୈଷ୍ଣବଧର୍ମ-ଦର୍ଶନ, ଶୈବ ଓ ଶାକ୍ତ ଧର୍ମ ଆଦିର ମନୋଜ୍ଞ ବର୍ଣ୍ଣନା କରିଛନ୍ତି ।

ଏହିସବୁ ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ସାରଳା ମହାଭାରତ ସଂସ୍କୃତ ମହାଭାରତ ଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର, ମୌଳିକ ଏବଂ ଅଭିନବ କଳା ସୃଷ୍ଟି । ସାରଳାଙ୍କ ପ୍ରଚଣ୍ଡ କବିତ୍ୱ, ଉତ୍ତୁଙ୍ଗ ପ୍ରଜ୍ଞା ଓ ପ୍ରତିଭା ଏହାକୁ ଏକ ନୂତନ ମହାଭାରତରେ ପରିଣତ କରି ଏହି ମହାକାବ୍ୟକୁ ଅଧିକ ସମ୍ବେଦନଶୀଳ କରିପାରିଛି ।



# ପଞ୍ଚସଖା ସାହିତ୍ୟ ଓ ତା'ର ପୃଷ୍ଠଭୂମି

'ପଞ୍ଚସଖା' ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ଆଧାତ୍ମିକ ଜୀବନର ଏକ ବୌଦ୍ଧିକ ଏବଂ ସ୍ମୃତି ସମୃଦ୍ଧ ଶବ୍ଦାଭିଷେକ। ଏହାରି ଭିତରେ ନିହିତ ଅଛି- ପାଞ୍ଚଗୋଟି ସୁଦୂର ପ୍ରସାରୀ ସୃଷ୍ଟିଶୀଳ ପ୍ରଜ୍ଞା ଓ ପ୍ରତିଭା । ଏହି ପଞ୍ଚ ସାହିତ୍ୟ ସାଧକମାନେ ହେଲେ- ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ, ଅନନ୍ତ । ଏହି ଧୀମାନ୍ ପ୍ରଜ୍ଞାଶୀଳ ସ୍ରଷ୍ଟାମାନେ ଜ୍ଞାନ ଓ ଭକ୍ତିରେ, ଯୋଗ ଓ କର୍ମରେ, ଧର୍ମୀୟ ସାଧନ ଓ ସିଦ୍ଧିରେ ଥିଲେ ଚିରଭାସ୍ୱର । ସମାଜ ଓ ଧର୍ମୀୟ ଜୀବନକୁ ଶୁଦ୍ଧପୂତ, ସଂସ୍କାରିତ ଓ ପରିମାର୍ଜିତ କରାଇ ମଣିଷକୁ ଆଧାତ୍ମ-ଉତ୍ତରିତ କରାଇ ଏମାନେ ଶାନ୍ତି ଓ ମୁକ୍ତିର ମାର୍ଗ ଦର୍ଶାଇବାର ପ୍ରୟାସ କରିଯାଇଛନ୍ତି । ଏମାନେ ସମସ୍ତେ ଜଣେ ଜଣେ ଥିଲେ ଧୁରୀଣ କବି । ସାହିତ୍ୟ ରଚନା ମାଧ୍ୟମରେ ଏମାନେ ସ୍ୱକୀୟ ଧର୍ମଦର୍ଶନ ଓ ମତବାଦର ପ୍ରତିଷ୍ଠା କରି ଧର୍ମକୁ ଏକ ସାହିତ୍ୟିକ ପ୍ରତିଷ୍ଠା ଦେଇଯାଇଛନ୍ତି ।

**ପଞ୍ଚସଖା ସାହିତ୍ୟ ସୃଷ୍ଟିର ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଧାର୍ମିକ ପୃଷ୍ଠଭୂମି:**

ପଞ୍ଚସଖାଙ୍କର ସାହିତ୍ୟ ସୃଷ୍ଟି କର୍ମର ପୃଷ୍ଠଭୂମି ଥିଲା- ବେଶ୍ ବ୍ୟାପକ ଓ ସୁଦୂରପ୍ରସାରୀ । ତତ୍କାଳୀନ ସମୟର ସମାଜିକ, ସାଂସ୍କୃତିକ, ରାଜନୈତିକ ଓ ଧାର୍ମିକ ପ୍ରେକ୍ଷାପଟ୍ଟ ଉପରେ ଏବଂ ଭାରତୀୟ ଆଧାତ୍ମିକଦର୍ଶନ, ସାଧନା ଓ ଉପସନା ମାର୍ଗର ବଳିଷ୍ଠ ଭିତ୍ତିଭୂମି ଉପରେ ଏମାନଙ୍କର ସୁ-ବିଶାଳ ସାହିତ୍ୟ ସୌଧ ଦୃଢ଼ଭାବରେ ଦଣ୍ଡାୟମାନ ହୋଇଥିଲା । ବୈଦିକ ସାଧନ ମାର୍ଗ, ଉପନୀଷଦୀୟ ଜ୍ଞାନଚେତନା, ପଞ୍ଚରାତ୍ର ପୁରାଣାଦି ଧର୍ମଦର୍ଶନ ଓ ସାହିତ୍ୟର ପୃଷ୍ଠଭୂମିକୁ ଭିତ୍ତିକରି ଗଢ଼ି ଉଠିଥିବା ନିର୍ଗୁଣ ସାଧନାର ଧାରା ଥିଲା- ପଞ୍ଚସଖା ଧର୍ମଦର୍ଶନ ଓ ସାହିତ୍ୟର ମୁଖ୍ୟ ଉର୍ଜାସ୍ରୋତ । ବେଦର ଭକ୍ତି ଓ କର୍ମମାର୍ଗ, ଉପନିଷଦର ଜ୍ଞାନଯୋଗ ମାର୍ଗ, ପଞ୍ଚରାତ୍ରର ଭକ୍ତିଧାରା ସହିତ କ୍ରମେ ଏଥିରେ ସାଂଖ୍ୟ ଯୋଗ, ସହଜିଆ ବୌଦ୍ଧଦର୍ଶନ ଓ ତାନ୍ତ୍ରିକ ପରଂପରାର ପ୍ରଭାବ ପଡ଼ିଥିଲା । ଏହିସବୁ ଧର୍ମ-ଦର୍ଶନର ଆଧାରରେ ପଞ୍ଚସଖାମାନେ ଆପଣାର ଏକ ନୂତନ ସମନ୍ୱିତ ଧର୍ମ ଓ ଉପାସନା ମାର୍ଗର ପ୍ରତିଷ୍ଠା କରିଥିଲେ । ଏମାନେ ସାଂଖ୍ୟାର ଆତ୍ମଜ୍ଞାନ, ତାନ୍ତ୍ରିକ

ଯୋଗସାଧନା, ବୌଦ୍ଧଧର୍ମର ଶୂନ୍ୟବାଦ, ଉପନିଷଦୀୟ ନିର୍ଗୁଣ-ବ୍ରହ୍ମଚେତନା ଓ ପଞ୍ଚରାତ୍ର ଧର୍ମର ସଗୁଣ-ଭକ୍ତି ଉପାସନା ଉପରେ ଗୁରୁତ୍ୱ ଦେଇ ଏକ ନୂତନ ସାଧନ ମାର୍ଗ- ଜ୍ଞାନମିଶ୍ରା ଭକ୍ତି ମାର୍ଗର ପ୍ରଚଳନ କରିଥିଲେ ।

ପଞ୍ଚସଖାଙ୍କର ସାହିତ୍ୟ ସାଧନା ବେଳକୁ ଓଡ଼ିଶାର ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଧାର୍ମିକ ରଙ୍ଗମଞ୍ଚ ବିପର୍ଯ୍ୟସ୍ତ, ବିଶୃଙ୍ଖଳିତ, କଳୁଷିତ ଓ ପର୍ଯ୍ୟୁଷିତ ହୋଇ ପଡ଼ିଥିଲା । ସାମାଜିକ କୁ-ସଂସ୍କାର, ଅନ୍ଧବିଶ୍ୱାସ, ରଢ଼ିବାଦୀ ପରମ୍ପରା, ସାଂସ୍କୃତିକ ଓ ଧର୍ମୀୟ ଅବକ୍ଷୟ ଓ ରାଜନୈତିକ ବିଶୃଙ୍ଖଳା ଭିତରେ ମଣିଷର ଦାମ୍ପତ୍ୟ ଜୀବନ, ପାରିବାରିକ ଜୀବନ, ସାମାଜିକ ଓ ରାଷ୍ଟ୍ରୀୟ ଜୀବନ ସର୍ବୋପରି ଆଧ୍ୟାତ୍ମିକ ଜୀବନରେ ସ୍ଖଳନ ଦେଖା ଦେଇଥିଲା । ବୈଦିକ ଯୁଗର କାମନା ପୂର୍ତ୍ତି କୈନ୍ଦ୍ରିକ କର୍ମଯୋଗ (ଯାଗ-ଯଜ୍ଞ) ତନ୍ତ୍ରର ବାମାଚାର ଦିଗ, ସହଜିଆ ବୌଦ୍ଧଧର୍ମର ଯୌନ ବ୍ୟଭିଚାର, ଭକ୍ତି ଓ ପ୍ରେମ ମାର୍ଗର ପରକୀୟା ପ୍ରୀତି ଆଦି ସମାଜ ଓ ଧର୍ମୀୟ ଜୀବନରେ ଘୋର ବ୍ୟଭିଚାର ଓ ପାପଚାର ସୃଷ୍ଟି କରିଥିଲା । ଏହା ସହିତ ଆହୁରି ଅନେକ ଅବକ୍ଷୟ ପ୍ରବେଶ କରି ଭାରତୀୟ ହିନ୍ଦୁ ଧର୍ମକୁ କଳୁଷିତ, ଅବକ୍ଷୟ ଓ ବ୍ୟଭିଚାରଗ୍ରସ୍ତ କରି ପକାଇଲା । ହିନ୍ଦୁ ଧର୍ମର ମୂଳଲକ୍ଷ୍ୟ ବ୍ରହ୍ମ ଅନ୍ୱେଷଣ ଓ ବ୍ରହ୍ମାନନ୍ଦ ପ୍ରାପ୍ତି ରହିଲା ନାହିଁ । ସମାଜରେ ନାନାଦି ଭାଣ୍ଡାମି ଓ ଅପକର୍ମ ଦେଖାହେଲା । ତେଣୁ ତତ୍କାଳୀନ ଉତ୍ପୀଡ଼ିତ ଜନଚିତ୍ତ ଏକ ନୂତନ ଜୀବନବୋଧର ଅନ୍ୱେଷଣରେ ଥିଲା ।

ଖ୍ରୀଷ୍ଟୀୟ ୮ମ-୯ମ ଶତାବ୍ଦୀବେଳକୁ ଆଚାର୍ଯ୍ୟ ଶଙ୍କର ବାମାଚାରୀ ଅପସଂପ୍ରଦାୟମାନଙ୍କ ବିରୁଦ୍ଧରେ ବୌଦ୍ଧିକ ସଂଗ୍ରାମ କରି ବେଦ-ଉପନିଷଦୀୟ ନିର୍ଗୁଣ-ବ୍ରହ୍ମବାଦର ବାଣୀ ପ୍ରଚାର କରି ଜନଚିତ୍ତରେ ନୂତନ ଆଶା ଓ ଆଶ୍ୱାସନା ସଞ୍ଚାର କରାଇଲେ । ଆଚାର୍ଯ୍ୟ ଶଙ୍କରଙ୍କର ଅଦ୍ୱୈତ ଦର୍ଶନ ଭାରତ ବର୍ଷର ଧର୍ମରାଜ୍ୟରେ ଏକ ନୂତନ ଦିଗର ଉନ୍ମୋଚନ କରିଥିଲା । ଶଙ୍କର ବାମାଚାରୀମାନଙ୍କର ତନ୍ତ୍ର ସମ୍ଭୂତ ଶୂନ୍ୟରୂପୀ ବୁଦ୍ଧଙ୍କୁ ତଡ଼ି ତାଙ୍କ ସ୍ଥାନରେ ବ୍ରହ୍ମସତ୍ତାର ପ୍ରତିଷ୍ଠା ଓ ପ୍ରଚାର କଲେ । ହିନ୍ଦୁଧର୍ମର ପୁନଃ ପ୍ରତିଷ୍ଠା ସମ୍ଭବ ହେଲା । ମାତ୍ର ପରବର୍ତ୍ତୀ ସମୟରେ ଅର୍ଥାତ୍ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ- ପଞ୍ଚଦଶ ଶତାବ୍ଦୀବେଳକୁ ଭାରତ ବର୍ଷରେ ମୋଗଲ ଶାସନର ଉତ୍ପୀଡ଼ନ ଯୋଗୁଁ ପୁଣି ହିନ୍ଦୁଧର୍ମରେ ବିପର୍ଯ୍ୟୟ ଦେଖାଦେଲା । ଗଙ୍ଗରାଜତ୍ୱ କାଳରେ ଓଡ଼ିଶା ଗୋଟିଏ ସମୃଦ୍ଧଶାଳୀ ହିନ୍ଦୁ-ରାଷ୍ଟ୍ର ରୂପେ ବିଦ୍ୟମାନ ଥିଲା । ମାତ୍ର- ଦ୍ୱାଦଶ ଶତାବ୍ଦୀରେ ଶେଷ ଦଶକରେ ମହମ୍ମଦ ଘୋରୀଙ୍କର ନେତୃତ୍ୱରେ ମୁସଲମାନ ମାନେ ଭାରତ ଆକ୍ରମଣ କରି ମୁସଲମାନ ସାମ୍ରାଜ୍ୟର ଭିତ୍ତିସ୍ଥାପନ କରିଥିଲେ । ଯାହାର ପ୍ରଭାବ ସମଗ୍ର ଭାରତ ବର୍ଷ ଉପରେ ପଡ଼ିଥିଲା । ଗଙ୍ଗବଂଶର ଶେଷ

ବେଳକୁ କେତେକ ନରପତି ଦୁର୍ବଳ, ବିଳାସୀ ଓ ଅକ୍ଷମ ହୋଇ ପଡ଼ିବାରୁ ମୁସଲ୍‌ମାନମାନେ ଓଡ଼ିଶା ଆକ୍ରମଣ କରି ଓଡ଼ିଶାର ଧନଜୀବନକୁ ବିପର୍ଯ୍ୟସ୍ତ କରି ପକାଇଥିଲେ । ମାତ୍ର- ସମ୍ରାଟ କପିଳେନ୍ଦ୍ର ଦେବଙ୍କ ଶାସନ କାଳରେ ଓଡ଼ିଶାର ହୃତ ଗୌରବ ଫେରିଥିଲା । ତାଙ୍କ ପରେ ସମ୍ରାଟ ପୁରୁଷୋତ୍ତମ ଦେବ ମଧ ଓଡ଼ିଶାକୁ ମୁସଲ୍‌ମାନମାନଙ୍କ କବଳରେ ରହିବାକୁ ଦେଇ ନଥିଲେ । ମାତ୍ର- ପ୍ରତାପରୁଦ୍ର ଦେବଙ୍କ ଶାସନ ସମୟରେ ଓଡ଼ିଶା ପୁଣି ମୁସଲ୍‌ମାନମାନଙ୍କର ଆକ୍ରମଣର ଶିକାର ହୋଇଥିଲା । ମୋଗଲ ଶାସନର ଉତ୍ପୀଡ଼ନ ଯୋଗୁଁ କ୍ରମେ ହିନ୍ଦୁ ମୁସଲମାନମାନଙ୍କ ମଧରେ ଧର୍ମଗତ ସଂଘର୍ଷ ଲାଗିରହିଲା ।

ଉଭୟେ ଉଭୟ ଧର୍ମର ଶ୍ରେଷ୍ଠତ୍ୱ ପ୍ରତିପାଦନରେ ବ୍ରତୀ ରହିଲେ । ଯାହା ଫଳରେ ସାଂପ୍ରଦାୟିକ ବିଦ୍ୱେଷ ବଢ଼ିବାରେ ଲାଗିଲା । ଏହି ସମୟରେ କେତେକ ମହାପୁରୁଷ ଉଭୟ ହିନ୍ଦୁ ଓ ମୁସଲ୍‌ମାନ ଧର୍ମାବଲମ୍ବୀଙ୍କ ମଧରେ ଶାନ୍ତି ଓ ସହାବସ୍ଥାନ ଆଣିବା ପାଇଁ ଗୋଟିଏ ନୂତନ ଧର୍ମ ସୂତ୍ରର ଆବିଷ୍କାର କରିଥିଲେ । ତାହା ହେଉଛି- ଏକେଶ୍ୱରବାଦ । ସନ୍ଥନାମ ଦେବ, କବୀର, ନାନକ, ତୁକାରାମ, ରାୟରାମାନନ୍ଦ ପ୍ରମୁଖ ଧର୍ମ ସଂସ୍କାରକମାନେ ଉଭୟ ଧର୍ମାବଲମ୍ବୀମାନଙ୍କ ମଧରେ ମୈତ୍ରୀ ଓ ସହାବସ୍ଥାନରେ ଲାଗି ପଡ଼ିଲେ । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଏକେଶ୍ୱର ଆଦର୍ଶ ତଥା ଧର୍ମଗତ ସାମ୍ୟଭାବର ପ୍ରଭାବ ଦ୍ୱାରା ଭାରତୀୟ ଆଧାତ୍ମିକ ଚେତନା ପ୍ରବାହ ଏକ ନୂଆ ମୋଡ଼ ନେଇଥିଲା । ନିର୍ଗୁଣ ବ୍ରହ୍ମ ସାଧନାର ବିକାଶ ସହିତ ହିନ୍ଦୁ ଓ ଇସ୍‌ଲାମୀ ଆଧାତ୍ମିକ ଚେତନାର ସମ୍ମିଶ୍ରଣରେ ଭାରତୀୟ ଧର୍ମ ଧାରାରେ ଯେଉଁ ନୂତନ ପରିବର୍ତ୍ତନ ଆସିଥିଲା, ତା'ର ପ୍ରଭାବ ଓଡ଼ିଶାର ସାମାଜିକ ଓ ଧାର୍ମିକ ଜୀବନରେ ପଡ଼ିଥିଲା । ଏହା ସହିତ ଓଡ଼ିଶାର ବୈଷ୍ଣବ ଧର୍ମର ଏକ ସମୃଦ୍ଧ, ଓ ବଳିଷ୍ଠ ପରମ୍ପରା ମଧ ଥିଲା । ତେଣୁ ମୋଟାମୋଟି ଭାବରେ ନିର୍ଗୁଣ ବ୍ରହ୍ମସାଧନା, ଇସ୍‌ଲାମୀ ଧର୍ମ ଚେତନା ଓ ଓଡ଼ିଶାର ନିଜସ୍ୱ ବୈଷ୍ଣବ ଧର୍ମ ଧାରାର ତ୍ରିବେଣୀ ସଙ୍ଗମରେ ପଞ୍ଚସଖା ସାହିତ୍ୟର ନଭଶ୍ଚୁମ୍ବୀ ସୌଧ ଗଢ଼ି ଉଠିଥିଲା । ପଞ୍ଚସଖାଙ୍କର ଆବିର୍ଭାବ ଫଳରେ ଓଡ଼ିଆ ସମାଜ, ସାହିତ୍ୟ ଓ ଧର୍ମୀୟ ଜୀବନରେ ଏକ ନୂତନ ଯୁଗର ସୂତ୍ରପାତ ଘଟିଥିଲା । ଏମାନେ ସ୍ୱକୀୟ ଧର୍ମଦର୍ଶନ ଓ ସାହିତ୍ୟରେ ଜ୍ଞାନ ଓ ଭକ୍ତିତତ୍ତ୍ୱର ବ୍ୟାଖ୍ୟାନ, ଧର୍ମ ପ୍ରଚାର, ଦର୍ଶନ ପରିବେଷଣ, ସମାଜ ସଚେତନତା, ନୀତିନିଷ୍ଠ ଭାବନା ସର୍ବୋପରି ଶାନ୍ତି, ମୈତ୍ରୀ ଓ ପ୍ରୀତିର ବାର୍ତ୍ତା ପ୍ରଚାର କରିଥିଲେ ।

**ରଚନାବଳୀ:-**

ପଞ୍ଚସଖାମାନେ ସ୍ୱ-ଧର୍ମର ପ୍ରଚାର, ପ୍ରସାର ଓ ସମାଜ ଜୀବନର କଲ୍ୟାଣ ସାଧନା ପାଇଁ ଅଜସ୍ର ପୁରାଣ, ସଂହିତା, ଚଉତିଶା, କୋଇଲି, ଭଜନ, ଜଣାଣ, ସ୍ତୁତି, ମାଳିକା,

ପଟଳ, ଓଗାଳ, ମହାତ୍ମ୍ୟ, ସମ୍ବାଦ ଆଦି ରଚନା କରିଯାଇଛନ୍ତି । ଏହି କୃତିଗୁଡ଼ିକ ଭିତରେ ବେଦ, ବେଦାନ୍ତ, ଉପନିଷଦ, ତନ୍ତ୍ର, ଗୀତା, ସଂହିତା, ପୁରାଣ, ମହାପୁରାଣ ପ୍ରଭୃତିର ବ୍ରହ୍ମଜ୍ଞାନ, ନିଗୂଢ଼ ଆତ୍ମତତ୍ତ୍ୱଦର୍ଶନ, ଅବତାରବାଦ, ଗୁରୁବାଦ, ସୃଷ୍ଟିତତ୍ତ୍ୱ, ନିର୍ଗୁଣତତ୍ତ୍ୱ, ଶୂନ୍ୟତତ୍ତ୍ୱ, ଯୋଗତତ୍ତ୍ୱ, ଷଡ଼ଚକ୍ର ସାଧନା, ଯନ୍ତ-ମନ୍ତତତ୍ତ୍ୱ, ଭକ୍ତିତତ୍ତ୍ୱ ପ୍ରତିଫଳିତ ହୋଇଛି । ଭାରତୀୟଦର୍ଶନ, ଚିନ୍ତାଧାରା, ଜ୍ଞାନ ସାଧନା ଓ ଭକ୍ତି ଭାବନା ଏହି ପଞ୍ଚସଖା ଧର୍ମ-ଦର୍ଶନ ଓ ସାହିତ୍ୟ ମାଧମରେ ଜନସାଧାରଣଙ୍କ ମଧ୍ୟରେ ନୂତନ ବ୍ୟାଖ୍ୟାନ, ନବୀନ-ଶୁଚିମନ୍ତ ଅଭିରୁଚି ଓ ସମନ୍ୱୟାତ୍ମକ ଦୃଷ୍ଟିଭଙ୍ଗୀ ଭିତରେ ପ୍ରକାଶ ଲାଭ କରିଅଛି । ଏଥିରେ କର୍ମ, ଜ୍ଞାନ, ଧ୍ୟାନ, ଭକ୍ତି, ଯୋଗ ପ୍ରଭୃତି ଜଟିଳ ଆଧ୍ୟାତ୍ମିକ ତତ୍ତ୍ୱଗୁଡ଼ିକୁ ସରଳ, ସାବଲୀଳ, ସର୍ବଜନବୋଧ ଭାଷା ମଧ୍ୟରେ ଅଭିବ୍ୟକ୍ତି ପ୍ରଦାନ କରାଯାଇଛି । ଏହି ତତ୍ତ୍ୱନିଷ୍ଠ, ଭକ୍ତି ପୂର୍ଣ୍ଣ ସାହିତ୍ୟ ଓଡ଼ିଆ ସମାଜ ଓ ଜନମାନସରେ ଅପ୍ରତିହତ, ଅସପତ୍ନ ପ୍ରଭାବ ବିସ୍ତାର କରି ଆସିଛି । ଜ୍ଞାନ ଓ ଭକ୍ତିତତ୍ତ୍ୱର ଅନୁଶୀଳନ, ସତ୍ୟର ଅନୁସନ୍ଧାନ, ସାଧନାର ସ୍ୱାଭିମାନ, ନୈତିକତାର ନିଷ୍ଠା ଓ ଆଧ୍ୟାତ୍ମିକତାର ଆଭୋଗ ମଧ୍ୟରେ ଏ ସାହିତ୍ୟ ଓଡ଼ିଆ ଜନଚେତନାକୁ ଇନ୍ଦ୍ରିୟରୁ ଅତୀନ୍ଦ୍ରିୟ ଆଡ଼କୁ ସୀମାରୁ ଅସୀମ ଆଡ଼କୁ ଉତ୍ତରଣ କରି ନୈତିକ ଜୀବନ ଗଠନ ପାଇଁ ଶାଶ୍ୱତ ଉଦ୍‌ବୋଧନ ଦେଇଛି । ତେଣୁ ଏ ସାହିତ୍ୟ ହୋଇଉଠିଛି ଜନତାର ଆତ୍ମିକ ଜାଗରଣର ସାହିତ୍ୟ, ବୌଦ୍ଧିକ ଉଦ୍‌ବେଳନର ସାହିତ୍ୟ, ତ୍ୟାଗର ସାହିତ୍ୟ, ସତ୍ୟ-ଶିବ-ଶାନ୍ତିର ସାହିତ୍ୟ ସର୍ବୋପରି ଜ୍ଞାନ-ଯୋଗ ଓ ଭକ୍ତିର ସାହିତ୍ୟ ।

**ବଳରାମ ଦାସ:-**

ବଳରାମ ଦାସ ହେଉଛନ୍ତି ପଞ୍ଚସଖା ଯୁଗର ବୟୋଜ୍ୟେଷ୍ଠ କବି । ସେ ଥିଲେ ସମସ୍ତଙ୍କ ଠାରୁ ବଡ଼ ଓ ଅଧିକ ପ୍ରତିଭାବାନ୍ । ବଳରାମ ଦାସ ଓଡ଼ିଶାର ଗଜପତି ପ୍ରତାପରୁଦ୍ର ଦେବଙ୍କର ସମକାଳୀନ ଥିଲେ । ତାଙ୍କର ଜନ୍ମ ସମୟ- ୧୪୭୨ ମସିହା ।

ବଳରାମଙ୍କ ପିତା- ସୋମନାଥ ମହାପାତ୍ର ଓ ମାତା- ଯମୁନା ଦେବୀ (ମାୟାଦେବୀ) । ତାଙ୍କ ପିତା ସୋମନାଥ ମହାପାତ୍ର ପ୍ରତାପରୁଦ୍ର ଦେବଙ୍କର ଜଣେ ମନ୍ତ୍ରୀ ଥିବାର ଜଣାଯାଏ । ସମ୍ଭ୍ରାନ୍ତ ବଂଶଜ ହୋଇଥିବାରୁ ବଳରାମ ଦାସ ଶିକ୍ଷା-ଦୀକ୍ଷା ପାଇବାର ସୁଯୋଗ ଲାଭ କରିଥିଲେ । ବେଦ, ବେଦାନ୍ତ, ଗୀତା, ଭାଗବତ, ପୁରାଣାଦି ସାହିତ୍ୟ ଉପରେ ତାଙ୍କର ଗଭୀର ଜ୍ଞାନ ଓ ଅଗାଧ ପାଣ୍ଡିତ୍ୟ ଥିଲା । ସେ ସଂସ୍କୃତ ତତ୍ତ୍ୱନିଷ୍ଠ ଗ୍ରନ୍ଥମାନଙ୍କରୁ ଉଚ୍ଚ ଭାବଧାରା ଆଣି ତାକୁ ସହଜ, ସରଳ ଭାବରେ ଓଡ଼ିଆ ଭାଷାରେ ପରିପ୍ରକାଶ କରିଛନ୍ତି । ବଳରାମ ଥିଲେ ଜଗନ୍ନାଥଙ୍କର ପରମଭକ୍ତ । ତାଙ୍କର ଏକମାତ୍ର ଇଚ୍ଛା ଥିଲା- ଜଗନ୍ନାଥଙ୍କ ସେବା କରି ତାଙ୍କ ଚରଣରେ ଶରଣ ପଶି ବୈକୁଣ୍ଠ ପ୍ରାପ୍ତି

ହେବା । ତେଣୁ ସେ ପୁରୁଷୋତ୍ତମ କ୍ଷେତ୍ରରେ ଭଗବାନଙ୍କ ପାଦପଦ୍ମକୁ ନିରତ ଧ୍ୟାନ କରୁଥିଲେ । ବଳରାମ ଦାସ ଯେତେଗୁଡ଼ିଏ ଗ୍ରନ୍ଥ ରଚନା କରିଛନ୍ତି, ସେଥି ମଧ୍ୟରୁ କେତେକ ଅପ୍ରକାଶିତ ଓ କେତେକ ଅନାବିଷ୍କୃତ । ତାଙ୍କର ସମସ୍ତ କୃତଗୁଡ଼ିକ ହେଲା- ଜଗମୋହନ ରାମାୟଣ ବା ଦାଣ୍ଡି ରାମାୟଣ, ଭଗବତ୍ ଗୀତା, ବିରାଟ ଗୀତା, ଭକ୍ତି ରସାମୃତ ସିନ୍ଧୁ, ଅର୍ଜ୍ଜୁନ ଗୀତା, ବେଢ଼ା ପରିକ୍ରମା, ଭାବସମୁଦ୍ର, ଗଜନିସ୍ତାରଣ ଗୀତା, ଗରୁଡ଼ ଗୀତା, ଗୀତାସାର, ଗୁପ୍ତଗୀତା, ମୃଗୁଣୀ ସ୍ତୁତି, ଶରୀର ଭୂଗୋଳ, ବ୍ରହ୍ମାଣ୍ଡ ଭୂଗୋଳ, ବ୍ରହ୍ମପୁରାଣ, ଲକ୍ଷ୍ମୀ ପୁରାଣ, କାନ୍ତ କୋଇଲି, ଦୁର୍ଗା ସ୍ତୁତି, ବାରମାସୀ, ବଉଳାଗାଈ, ଅମରକୋଷଗୀତା, କମଳଲୋଚନ ଚଉତିଶା ଇତ୍ୟାଦି ।

**ଜଗନ୍ନାଥ ଦାସ:-**

ଜଗନ୍ନାଥ ଦାସ ଜଣେ ଭକ୍ତିକବି ରୂପେ ବହୁଚର୍ଚ୍ଚିତ ଓ ସମ୍ମାନିତ । ସେ ପୁରୀ ନିକଟବର୍ତ୍ତୀ କପିଳେଶ୍ୱରପୁର ଶାସନରେ ଖ୍ରୀ: ୧୪୮୭ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ - ଭଗବାନ ଦାସ ଓ ମାତା- ପଦ୍ମାଦେବୀ । ଜଗନ୍ନାଥ ଥିଲେ ଜଣେ ନିଷ୍ଠାପର ବୈଷ୍ଣବ ଭକ୍ତ । ସେ ବଳରାମ ଦାସଙ୍କଠାରୁ ବହୁ ବର୍ଷ କନିଷ୍ଠ ଏବଂ ଶ୍ରୀଚୈତନ୍ୟ ଦେବଙ୍କର ପ୍ରାୟ ସମବୟସ୍କ ଥିଲେ । ଶ୍ରୀଚୈତନ୍ୟଙ୍କର ପୁରୀ ଆଗମନ (ଖ୍ରୀ: ୧୫୦୯-୧୦) ବେଳକୁ ଜଗନ୍ନାଥ ପୁରୀରେ ଅବସ୍ଥାନ କରୁଥିଲେ । ଜଗନ୍ନାଥ ଦାସଙ୍କୁ ବଟ ଗଣେଷ ନିକଟରେ ଭାଗବତ ପାଠ ଓ ତା'ର ସରଳ, ସାବଲୀଳ ବ୍ୟାଖ୍ୟା କରୁଥିବାର ଦେଖି ଶ୍ରୀଚୈତନ୍ୟ ଅତ୍ୟନ୍ତ ମୁଗ୍ଧ ହୋଇ ପଡ଼ିଥିଲେ । ଶ୍ରୀଚୈତନ୍ୟ ହିଁ ଜଗନ୍ନାଥ ଦାସଙ୍କ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ 'ଅତିବଡ଼ୀ' ଉପାଧି ପ୍ରଦାନ କରିଥିଲେ । ଜଗନ୍ନାଥ ଦାସ ମଧ୍ୟ ଜଗନ୍ନାଥଙ୍କର ଜଣେ ପରମ ଭକ୍ତ ଓ ସେବକ ଥିଲେ । ସେ ପ୍ରତ୍ୟହ ଜଗନ୍ନାଥଙ୍କ ମନ୍ଦିରରେ ତିନି ଧୂପ, ପଞ୍ଚ ଅବକାଶ ଆଦି ସେବା ସଂପାଦନ କରୁଥିଲେ । ଜଗନ୍ନାଥ ଦାସ ସଂସ୍କୃତ ଭାଷା ଓ ସାହିତ୍ୟରେ ଜଣେ ପ୍ରବୀଣ ପଣ୍ଡିତ ଥିଲେ । ସେ ଓଡ଼ିଆ ଭାଷା ସହିତ ସଂସ୍କୃତ ଭାଷାରେ ମଧ୍ୟ ଅନେକ ଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ରଚିତ ଓଡ଼ିଆ ଗ୍ରନ୍ଥଗୁଡ଼ିକ ହେଲା- ଶ୍ରୀମଦ୍‌ଭାଗବତ, ଶୈବାଗମ ଭାଗବତ, ଶ୍ରୀନାମ ଚନ୍ଦ୍ରିକା, ତୂଳାଭିଣା, ଶୂନ୍ୟ ଭାଗବତ, ବ୍ରହ୍ମଗୀତା, ପଦ୍ମପାଦସୁଧାନିଧି, ନିତ୍ୟ ନିଳାଦ୍ରୀ ବିଳାସ, ନୀଳଗିରି ଧ୍ୟାନ, ଗଜନିସ୍ତାରଣ, ପାହାନ୍ତି ଅବକାଶ, ହରିଣୀ ସ୍ତୁତି, ଅକ୍ରୂର ବୋଲି, ଉଦ୍ଧବ ଜଣାଣ, କାଳିମାଳିକା, ଇନ୍ଦ୍ରମାଳିକା, ଗୁପ୍ତ ଗୀତା, ପଦ୍ମକଳ୍ପଟୀକା, ଭବିଷ୍ୟମାଳିକା, ରୁକ୍ମିଣୀ ମାଳିକା, ଭକ୍ତି ଚନ୍ଦ୍ରିକା, ଗୁଣ୍ଡିଚାବିଜେ, ମନଃଶିକ୍ଷା, ପାଷାଣ୍ଡ ଦଳନ, ପଞ୍ଚଭୂତ ଗୀତା, ଧ୍ରୁବସ୍ତୁତି, ଗଜସ୍ତୁତି ଇତ୍ୟାଦି ।

## ଅଚ୍ୟୁତାନନ୍ଦ ଦାସ:-

ପଞ୍ଚସଖାମାନଙ୍କ ମଧ୍ୟରୁ ଅଚ୍ୟୁତାନନ୍ଦ ଥିଲେ- ପରମଜ୍ଞାନୀ, ଯୋଗୀ ଓ ପଣ୍ଡିତ । ସେ କଟକ ଜିଲ୍ଲାରେ ନେମାଳ ନିକଟବର୍ତ୍ତୀ ତିଳକଣା ଗ୍ରାମରେ ଖ୍ରୀ:ଅ: ୧୪୮୯ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ- ଦୀନବନ୍ଧୁ ଖୁଣ୍ଟିଆ ଓ ମାତା- ପଦ୍ମାବତୀ । ଅଚ୍ୟୁତାନନ୍ଦଙ୍କର ଦୀକ୍ଷା ଗୁରୁ ହେଉଛନ୍ତି- ସନାତନ ଗୋସ୍ୱାମୀ । ସେ ଚୈତନ୍ୟଙ୍କ ଠାରୁ ମଧ ଦୀକ୍ଷା ଗ୍ରହଣ କରିଥିବାର ଜଣାଯାଏ । ଚୈତନ୍ୟଙ୍କ ଠାରୁ ଦୀକ୍ଷା ଗ୍ରହଣ ପରେ ସେ ତିଳକଣାର ବଟବୃକ୍ଷ ମୂଳେ ଧ୍ୟାନରେ ବସିଥିଲେ । ସେଇଠି ପ୍ରଥମେ ତାଙ୍କର ଚୈତନ୍ୟୋଦୟ ଘଟିଥିଲା । ପରେ ସେ ପୁରୀ ଏବଂ ପ୍ରାଚୀତୀରବର୍ତ୍ତୀ ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଧର୍ମଚର୍ଚ୍ଚା କରିଥିଲେ । ଅଚ୍ୟୁତାନନ୍ଦଙ୍କ ଉପରେ ଉଭୟ ବୌଦ୍ଧ ଓ ବୈଷ୍ଣବ ଧର୍ମର ଗଭୀର ପ୍ରଭାବ ପଡ଼ିଥିଲା । ସେ ଐଶ୍ୱର୍ଯ୍ୟ ଏବଂ ପ୍ରାଚୁର୍ଯ୍ୟକୁ ପରିହାରକରି ସନ୍ନ୍ୟାସ ଜୀବନ ଗ୍ରହଣ କରିଥିଲେ । ଏହି ମହାନ୍ ଯୋଗୀ ପରମ ଭାଗବତ, ମହାପୁରୁଷ ଅଚ୍ୟୁତାନନ୍ଦ ଉତ୍କଳୀୟ ଜୀବନ ଓ ଧର୍ମୀୟ ଚେତନାରେ ଏକ ଅମଳୀନ ଆଦର୍ଶ ।

କବି ଅଚ୍ୟୁତାନନ୍ଦ ସଂହିତା (ଛତିଶଖଣ୍ଡ), ଗୀତା (ଅଠସ୍ତରୀ ଖଣ୍ଡ) ବଂଶାନୁଚରିତ (ସତେଇଶ ଖଣ୍ଡ), ଉପବଂଶ (ବାରଗୋଟି), ଦେବୀ ଭବିଷ୍ୟ (ସାତଖଣ୍ଡ) ଏବଂ ଅସଂଖ୍ୟ ଚଉତିଶା, କୋଇଲି, ମାଳିକା, ଟୀକା ଭଜନ ଆଦି ରଚନା କରିଛନ୍ତି । କବିଙ୍କର ପ୍ରକାଶିତ ଗ୍ରନ୍ଥଗୁଡ଼ିକ ହେଉଛି- ହରିବଂଶ, ଚିତ୍ତବୋଧ, କୈବର୍ତ୍ତଗୀତା, ଜ୍ଞାନପ୍ରଦୀପ ଗୀତା, ଶୂନ୍ୟସଂହିତା, କଳିଯୁଗଗୀତା, ଗରୁଡ଼ଗୀତା, ଗୁରୁଭକ୍ତି ଗୀତା, ଛୟାଳିଶ ପଟଳ, ଅକଳିତ ସଂହିତା, ଅଷ୍ଟ ଗୁଜ୍ଜରୀ, ନିଶ୍ଚଳଧ୍ୟାନ ଗୀତା, ଗୋପାଳ ଓଗାଳ, ଲଉଡ଼ି ଖେଳ, ଅମର-ଜୁମର ସଂହିତା, ତତ୍ତ୍ୱବୋଧିନୀ, ବ୍ରହ୍ମାଣ୍ଡଙ୍କୁଳି, ଅଣାକାର ସଂହିତା ପ୍ରଭୃତି ।

## ଯଶୋବନ୍ତ ଦାସ:-

ପଞ୍ଚସଖାଙ୍କ ମଧ୍ୟରେ ଭକ୍ତକବି ଯଶୋବନ୍ତ ଦାସ ଅନ୍ୟତମ । ସେ କଟକ ଜିଲ୍ଲାର ଜଗତପୁର ସବ୍‌ଡିଭିଜନ ଅନ୍ତର୍ଗତ ଅଡ଼ଙ୍ଗ ଗ୍ରାମରେ ଖ୍ରୀ:ଅ: ୧୪୮୭ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ - ଜଗୁ ମଲ୍ଲିକ ଓ ମାତା-ରେଖାଦେବୀ । 'ଯନ୍ତବୋଲି' ନାମକ ଏକ ଗ୍ରନ୍ଥରେ ତାଙ୍କ ପିତାଙ୍କ ନାମ 'ବଳଭଦ୍ର' ବୋଲି ସୂଚୀତ କରାଯାଇଛି । ତେଣୁ କେହି କେହି ଯଶୋବନ୍ତଙ୍କ ପିତାଙ୍କ ନାମ 'ବଳଭଦ୍ର ମଲ୍ଲ' ରୂପେ ମଧ ଗ୍ରହଣ କରିଛନ୍ତି । ସେ ଯା'ହେଉ ଯଶୋବନ୍ତ କ୍ଷତ୍ରୀୟ କୁଳରେ ଜନ୍ମଲାଭ କରି ମଧ ନିଜକୁ 'ଶୂଦ୍ର' ରୂପେ ପରିଚୟ ଦେଇଛନ୍ତି । ଶ୍ରୀଚୈତନ୍ୟ ଦେବଙ୍କର ପୁରୀ ଅବସ୍ଥାନ କାଳରେ ଯଶୋବନ୍ତ ତାଙ୍କ ସାନ୍ନିଧ୍ୟ ଲାଭ କରିଥିଲେ । ପରେ ସେ ଚୈତନ୍ୟଙ୍କ ଠାରୁ ଦୀକ୍ଷା ମଧ

ନେଇଥିଲେ । ଯଶୋବନ୍ତଙ୍କର ଆରାଧ୍ୟ ଦେବତା ଥିଲେ- ପ୍ରଭୁ ଜଗନ୍ନାଥ । ଜଗନ୍ନାଥଙ୍କୁ ହିଁ ସେ ନିଜର ଆରାଧ୍ୟ ଦେବତା ପରମଗୁରୁ ରୂପେ ଗ୍ରହଣ କରିଥିଲେ । ଯଶୋବନ୍ତ ଥିଲେ ଉଭୟ ଜ୍ଞାନ ଓ ଭକ୍ତି ମାର୍ଗୀ । ନିର୍ଗୁଣ-ନିରାକାରଙ୍କ ପ୍ରତି ଭକ୍ତି ଉପରେ ସେ ପ୍ରାଧାନ୍ୟ ଦେଇଥିଲେ । ତାଙ୍କର ସମସ୍ତ ରଚନାଗୁଡ଼ିକ ଭିତରେ ଜ୍ଞାନ ଓ ଭକ୍ତିର ମଧୁର ସମନ୍ୱୟ ସ୍ଥାପନ କରାଯାଇଛି । ଯଶୋବନ୍ତ ଦାସଙ୍କ ରଚିତ ଗ୍ରନ୍ଥଗୁଡ଼ିକ ହେଲା- ପ୍ରେମଭକ୍ତି ବ୍ରହ୍ମଗୀତା, ଆତ୍ମପରଚେ ଗୀତା, ଗୀତଗୋବିନ୍ଦ ଚନ୍ଦ୍ର, ଶିବ ସ୍ୱରୋଦୟ, ଚୌରାଶୀ ଆଜ୍ଞା, କ୍ଷିତି ସୁଧା, ମନ୍ତ୍ର ବୋଲି, ବଣଭୋଜି ବୋଲି, ଅଷ୍ଟମ ଏକାକ୍ଷର, ଏକାଦଶ ଏକାକ୍ଷର, ପଞ୍ଚାତ୍ମିକ ଏକାକ୍ଷର, ଅଢ଼ଙ୍ଗଗଡ଼ ମାଳିକା, ପରମହଂସ, ପରାର୍ଦ୍ଧ, ପଦ୍ମବନରାସ ଇତ୍ୟାଦି ।

**ଅନନ୍ତ ଦାସ:-**

ପଞ୍ଚସଖା ସାହିତ୍ୟ ସାଧକମାନଙ୍କ ମଧ୍ୟରୁ ଅନନ୍ତ ଦାସ ସର୍ବକନିଷ୍ଠ । ସେ ଥିଲେ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମକାଳୀନ । ସେ ଖ୍ରୀ:ଅ: ୧୪୯୫ରେ ପୁରୀଜିଲ୍ଲା ଅନ୍ତର୍ଗତ ବାଲିପାଟଣା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ- କପିଳ ମହାନ୍ତି ଓ ମାତା- ଗୌରୀଦେବୀ । ଅନନ୍ତ ଦାସ ଥିଲେ ଜଣେ ବିଶିଷ୍ଟ ଯୋଗସାଧକ । ସେ 'ଶିଶୁ ବୈଷ୍ଣବ ସଂପ୍ରଦାୟ'ର ପ୍ରବର୍ତ୍ତକ ଥିବାରୁ ତାଙ୍କୁ ଶିଶୁ ଅନନ୍ତ ଦାସ ମଧ୍ୟ କୁହାଯାଏ । ତାଙ୍କ ରଚିତ ଗ୍ରନ୍ଥଗୁଡ଼ିକ ଭିତରେ ତାଙ୍କର ଗଭୀର ବ୍ରହ୍ମଜ୍ଞାନ ପ୍ରତିଫଳନ ଘଟିଅଛି । ସେ ବ୍ରହ୍ମଙ୍କୁ ଉପଲବ୍ଧି କରିବାର ବିଭିନ୍ନ ଉପାୟ ଓ ସାଧନା ମାର୍ଗର ପନ୍ଥା ମଧ୍ୟ ନିର୍ଦ୍ଦେଶ କରିଯାଇଛନ୍ତି । ତାଙ୍କ ରଚିତ ଗ୍ରନ୍ଥଗୁଡ଼ିକ ହେଲା- ହେତୁ ଉଦୟ ଭାଗବତ, ପିଣ୍ଡ-ବ୍ରହ୍ମାଣ୍ଡ ଗୀତା, ଅଣାକାର ଶବଦ, ବହ୍ମ ଏକାକ୍ଷର ଗୀତା, ତତ୍ତ୍ୱପୂର୍ଣ୍ଣ ଗୀତା, ଭକ୍ତି-ମୁକ୍ତିଦାୟକ ଗୀତା, ବ୍ରହ୍ମ ପାର୍ଥୀବ ତତ୍ତ୍ୱସାର ଗୀତା, ସଂସାରତତ୍ତ୍ୱବୋଧ, ସୁପ୍ରକାଶ ଜ୍ଞାନ ଲହରୀ, ଶୂନ୍ୟ ନାମ ଭେଦ, ଉଦେବାଖର, ଠିକ ବାଖର, ଛଡ଼ ବାଖର, ଆଗତ ଭବିଷ୍ୟମାଳିକା, ଚୁମ୍ବକ ମାଳିକା, ଅର୍ଥ ତାରେଣୀ, ଡିବିଡିବି ଢୋଲ, ଗୁପ୍ତଟୀକା, ଧାମଛତ୍ର, ବୈଷ୍ଣବାଚରଣ, ଶିଶୁମନ୍ତ୍ର ବିଚାର, ସିଦ୍ଧଗୁରୁ ପ୍ରଣାଳୀ, ଭଜନତତ୍ତ୍ୱ, ମନ୍ତ୍ର ଚନ୍ଦ୍ରିକା, ଗରୁଡ଼-କେଶବ ଚଉତିଶା ଇତ୍ୟାଦି ।

ପଞ୍ଚସଖାଙ୍କର ଏହି ସାମୂହିକ ସୃଷ୍ଟି ସଂପଦଗୁଡ଼ିକ ଅତୀବ ମହାନ୍ । ଏଥିରେ କାବ୍ୟ ସୌନ୍ଦର୍ଯ୍ୟ ସୃଷ୍ଟିର ସାର୍ଥକ ସଫଳ ପ୍ରକାଶ ସହିତ ଧର୍ମଦର୍ଶନ ଓ ଜଟିଳ ତତ୍ତ୍ୱରାଜିର ସରଳ ସାବଲୀଳ ପରିପ୍ରକାଶ ଘଟିଅଛି । ଏହି ସାହିତ୍ୟ ଜ୍ଞାନଦୀପ୍ତ, ଯୋଗପିଣ୍ଡିତ, ବୌଦ୍ଧିକ ଦାର୍ଶନିକ ଓ ଭକ୍ତି ଗର୍ଭିତ ହୋଇଥିବାରୁ ଏହା ଓଡ଼ିଆ ସାରସ୍ୱତ ଜଗତରେ ନିଜର ଅଖଣ୍ଡ ଅକ୍ଷୟ, ଅପ୍ରତିହତ ପ୍ରଭାବ ପ୍ରତିଷ୍ଠା କରିପାରିଛି ।



# ଓଡ଼ିଆ ରୀତିଯୁଗ ଓ ବୈଷ୍ଣବ କାବ୍ୟସାହିତ୍ୟ

ପଞ୍ଚସଖା ସାହିତ୍ୟ ଯୁଗର ପରବର୍ତ୍ତୀ ସମୟରେ ଖ୍ରୀ:ଅ: ସପ୍ତଦଶ ଶତାବ୍ଦୀ ବେଳକୁ ଓଡ଼ିଆ ସାହିତ୍ୟରେ ଏକ ନୂତନ ସାହିତ୍ୟ ଯୁଗର ଅୟମାରମ୍ଭ ଘଟିଥିଲା । ଯାହାକୁ ମଧ୍ୟଯୁଗ ବା ରୀତିଯୁଗ କୁହାଯାଏ । ପୁରାଣର ଧର୍ମତତ୍ତ୍ୱ, ଅଲୌକିକତା ଓ ଯୋଗପିଣ୍ଡିତ ତତ୍ତ୍ୱନିଷ୍ଠ ସାହିତ୍ୟର ଜୀବପରମ-ମୋକ୍ଷ ସଂପର୍କୀତ ଦର୍ଶନ ଓ ବ୍ରହ୍ମାନନ୍ଦବୋଧର ନିଗୁଢ଼ ବନ୍ଧନ ମଧ୍ୟରୁ ମୁକ୍ତ ହୋଇ ପ୍ରେମ-ପ୍ରଣୟ ଓ ରସବୋଧ ସମ୍ବଳିତ ରୀତି ଲକ୍ଷଣ ମଣ୍ଡିତ ଏକ କାବ୍ୟଧାରା ଗଢ଼ି ଉଠିଲା । ଏହି କାବ୍ୟାବଳୀ ସଂସ୍କୃତ ଅଳଙ୍କାର ଶାସ୍ତ୍ର ବା ରୀତି ଶାସ୍ତ୍ରର ନିୟମଦ୍ୱାରା ନିୟନ୍ତ୍ରିତ ଓ ଶୃଙ୍ଖଳିତ ହେଲା । ତେଣୁ ଏହି କାବ୍ୟଗୁଡ଼ିକୁ 'ରୀତି କାବ୍ୟ' କୁହାଗଲା । ଏହି ରୀତି କାବ୍ୟଗୁଡ଼ିକ ଅଳଙ୍କାର ଶାସ୍ତ୍ରର ନିୟମ ଦ୍ୱାରା ରଚିତ ଓ ନିୟନ୍ତ୍ରିତ ହୋଇଥିବାରୁ, ଏଥିରେ ଆଳଙ୍କାରିକ ପଦ୍ଧତିର ବହୁଳ ପ୍ରୟୋଗ କରାଯାଇଥିବାରୁ ଏହି କାବ୍ୟଗୁଡ଼ିକୁ 'ଅଳଙ୍କାରିକ କାବ୍ୟ' ଏବଂ ଏହି ଯୁଗକୁ 'ଆଳଙ୍କାରିକ କାବ୍ୟଯୁଗ' ନାମରେ ନାମିତ କରାଗଲା ।

ରୀତିଯୁଗର ଅଭ୍ୟୁଦୟ ପୂର୍ବରୁ ଓଡ଼ିଶାର ରାଜନୈତିକ ରଙ୍ଗମଞ୍ଚ ଓ ସାମାଜିକ ପ୍ରେକ୍ଷାପଟ୍ଟ ଥିଲା- ଘୋର ଅଶାନ୍ତ, ଅସ୍ଥିର, ସଂଘର୍ଷ ଓ ସଂଘାତମୟ । ଏକଦା ସ୍ୱାଧୀନ, ଅପରାଜେୟ ଥିବା ଦୁର୍ଦ୍ଧର୍ଷ ଓଡ଼ିଶା ଭୂଇଁ ସମୟ କ୍ରମେ ଆଫ୍‌ଗାନ୍, ମୋଗଲ୍ ମରହଟ୍ଟାମାନଙ୍କ ଦ୍ୱାରା ଧ୍ୱସ୍ତ-ବିଧ୍ୱସ୍ତ ଓ ଲୁଣ୍ଠିତ ହେବାକୁ ଲାଗିଲା । ପ୍ରାୟ ଷୋଡ଼ଶ ଶତାବ୍ଦୀର ଶେଷ ଦଶକ ବେଳକୁ ଓଡ଼ିଶା ମୋଗଲ ଶାସନ ଅଧୀନକୁ ଚାଲିଯାଇଥିଲା । ଦିଲ୍ଲୀ ସମ୍ରାଟ ଆକବରଙ୍କ ଶାସନ କାଳରେ ଓଡ଼ିଶା ଭୂଇଁ ମୋଗଲ ଶାସନ ଉତ୍ପୀଡ଼ନର ଶିକାର ପ୍ରାୟ ହୋଇ ନଥିଲା । ମାତ୍ର- ସମ୍ରାଟ ଆକବରଙ୍କ ମୃତ୍ୟୁପରେ ମୋଗଲ ଶାସନ ବ୍ୟବସ୍ଥା ଭୁଷୁଡ଼ି ପଡ଼ିଲା । ଶକ୍ତିଶାଳୀ କେନ୍ଦ୍ରୀୟ ଶାସନର ଅଭାବ ଫଳରେ ଓଡ଼ିଶା ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇ ଅନେକ କ୍ଷୁଦ୍ର-କ୍ଷୁଦ୍ର ସ୍ୱାଧୀନ, ସାମନ୍ତ ରାଜ୍ୟରେ ବିଭକ୍ତ ହୋଇପଡ଼ିଲା । ସାମନ୍ତ ରାଜାମାନେ ନିଜ ନିଜର ପ୍ରଭାବ, ପ୍ରତିଷ୍ଠା ଓ ସାମ୍ରାଜ୍ୟ ବିସ୍ତାର ପାଇଁ ପରସ୍ପର ମଧ୍ୟରେ ଯୁଦ୍ଧରେ

ବ୍ୟାପୃତ ରହିଲେ । ସମ୍ରାଟ ଜାହାଙ୍ଗୀରଙ୍କ ଶାସନ ସମୟରେ ଓଡ଼ିଶାରେ ମୋଗଲ ରାଜତ୍ୱ ଅନ୍ୟାୟ, ଅତ୍ୟାଚାର, ଲୁଣ୍ଠନ ଓ ବର୍ବରତାର ସୀମାଟପି ଯାଇଥିଲା । ସମ୍ରାଟ ଜାହାଙ୍ଗୀର ଖ୍ରୀ:ଅ: ୧୬୦୭ରେ ହାସିମ୍ ଖାଁଙ୍କୁ ଓଡ଼ିଶାର ସୁବେଦାର ରୂପେ ନିଯୁକ୍ତ କରିଥିଲେ । ହାସିମ୍ ଖାଁଙ୍କ ସହିତ ଏହି ସମୟରେ କେଶୋଦାସ ନାମକ ଜଣେ ରାଜପୁତ୍ ମଧ୍ୟ ଓଡ଼ିଶାରେ ଜାଗିରୀ ପାଇଥିଲେ । ଉଭୟ ହାସିମ୍ ଖାଁ ଏବଂ କେଶୋଦାସଙ୍କ ଅନ୍ୟାୟ, ଅତ୍ୟାଚାର ଓ ଉତ୍ପୀଡ଼ନରେ ଓଡ଼ିଆମାନେ ଅତିଷ୍ଠ ହୋଇ ପଡ଼ିଥିଲେ । ଇତିହାସରୁ ଜଣାଯାଏ- ଓଡ଼ିଶାର ତତ୍କାଳୀନ ଗଜପତି ପୁରୁଷୋତ୍ତମ ଦେବଙ୍କ ଶାସନ ସମୟରେ ହାସିମ୍ ଏବଂ କେଶୋଦାସ ତୀର୍ଥ କରିବା ଉଦ୍ଦେଶ୍ୟରେ ପୁରୀ ଯାଇ ଶ୍ରୀଜଗନ୍ନାଥ ମନ୍ଦିର ଅଧିକାର କରି ନେଇଥିଲେ । ଗଜପତି ପୁରୁଷୋତ୍ତମ ଦେବ ଏହି ଆକ୍ରମଣର ପ୍ରତିରୋଧ କରିବାକୁ ଯାଇ ପରାସ୍ତ ହୋଇ ସନ୍ଧି କରିଥିଲେ । ସନ୍ଧିର ସର୍ତ୍ତ ଅନୁସାରେ ଓଡ଼ିଶାର ରାଜଜେମାଙ୍କୁ ଦିଲ୍ଲୀର ବାଦ୍‌ଶାହାଙ୍କ ଅନ୍ତଃପୁରକୁ ପ୍ରେରଣ କରାଯାଇଥିଲା ଏବଂ ଓଡ଼ିଶା ରାଜାଙ୍କ ଭଗିନୀଙ୍କୁ କେଶୋଦାସ ବିବାହ କରିଥିଲେ । ମୋଗଲ ସମ୍ରାଟ ସାହାଜାହାନ୍‌ଙ୍କ ରାଜତ୍ୱ କାଳରେ ମଧ୍ୟ ଓଡ଼ିଶାରେ ମୋଗଲ ଅତ୍ୟାଚାର, ଲୁଣ୍ଠନ, ଶୋଷଣ, ପୀଡ଼ନ ସୀମା ଟପି ଯାଇଥିଲା । ତାଙ୍କ ପୁତ୍ର ଆଉରଙ୍ଗ୍‌ଜେବ୍‌ଙ୍କ ଦିଲ୍ଲୀ ସିଂହାସନ ଆରୋହଣ କରିବା ପରେ ଦେଶର ରାଜନୈତିକ, ସାମାଜିକ, ସାଂସ୍କୃତିକ ଓ ଧାର୍ମିକ ଅବସ୍ଥା ଆହୁରି ସଙ୍କଟାପନ୍ନ ହୋଇ ପଡ଼ିଥିଲା । ତାଙ୍କର ହିନ୍ଦୁ ଦମନନୀତି ଓ ଭୟଙ୍କର ଧର୍ମାନ୍ଧତା ସମଗ୍ର ଭାରତ ଭୂ-ଖଣ୍ଡରେ ବିଭୀଷିକା ଖେଳାଇ ଦେଇଥିଲା । ହିନ୍ଦୁମାନଙ୍କ ଉପରୁ ବଳପୂର୍ବକ ଜିଜିୟାକର, ତୀର୍ଥକର ଆଦି ଆଦାୟ କରାଯାଉଥିଲା । ଅନେକ ହିନ୍ଦୁ ମନ୍ଦିର ଓ ଦେବ-ଦେବୀଙ୍କୁ ଧ୍ୱଂସ ମଧ୍ୟ କରାଯାଇଥିଲା । ଏହି ସମୟରେ ଓଡ଼ିଶାର ଜନସାଧାରଣ ସଂପୂର୍ଣ୍ଣ ବ୍ୟକ୍ତିଗତ, ଧାର୍ମିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ସ୍ୱାଧୀନତା ହରାଇ ବସିଥିଲେ । ଏକଦିଗରେ କେନ୍ଦ୍ରୀୟ ମୋଗଲ ଶାସନର ଅନ୍ୟାୟ, ଅତ୍ୟାଚାର, ଲୁଣ୍ଠନ ଓ ଅନ୍ୟ ଦିଗରେ ସାମନ୍ତ ଶାସିତ ସମାଜର ଉତ୍ପୀଡ଼ନ ତତ୍କାଳୀନ ସମାଜ ଜୀବନକୁ ଘୋର ଦୁର୍ବହ, ଦୁର୍ବିସହ ଓ ବିଡ଼ମ୍ବିତ କରି ପକାଇଥିଲା । ସାମାଜିକ ଜୀବନ ସହ ଧାର୍ମିକ ଚେତନା ଓ ସାଂସ୍କୃତିକ ଜୀବନ ମଧ୍ୟ ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଥିଲା ।

ମୋଗଲ ସମ୍ରାଟମାନଙ୍କର ରାଜଦରବାର ଥିଲା- ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ ଓ ଭୋଗ ବିଳାସର ଲୀଳାକ୍ଷେତ୍ର । ଏହି ଆଦର୍ଶରେ ପ୍ରାଦେଶିକ ଶାସକ ଓ ସାମନ୍ତ ରାଜାମାନେ ମଧ୍ୟ ବିଳାସମୟ ଜୀବନ, ନାରୀ ସମ୍ଭୋଗ ଓ ଶୃଙ୍ଗାର ଚର୍ଯ୍ୟାରେ ବୁଡ଼ି ରହୁଥିଲେ । ଜନ ସାଧାରଣଙ୍କଠାରୁ ସଂଗୃହୀତ ଅର୍ଥ ରାଜ୍ୟ ଶାସନ ବା ପ୍ରଜାହିତରେ ଖର୍ଚ୍ଚ ନହୋଇ

ବିଳାସକକ୍ଷ, ହାରେମ୍, ସ୍ମୃତିସୌଧ, ପ୍ରମୋଦ ଉଦ୍ୟାନ ଆଦି ନିର୍ମାଣରେ ବ୍ୟୟିତ ହେଉଥିଲା । ହିନ୍ଦୁଧର୍ମ, ସମାଜ ଓ ସଂସ୍କୃତି ଅବକ୍ଷୟର ମାର୍ଗରେ ଗତି କରି ନିଜର ଗୌରବ-ଗରିମା ଓ ମହତ୍ତ୍ୱ ହରାଇ ବସିଥିଲା । ଏହିଭଳି ଅଶାନ୍ତ, ଅବକ୍ଷୟ ଗ୍ରସ୍ତ ସମୟ ଓ ବାତାବରଣ ଭିତରେ, ରୀତି କାବ୍ୟ- ସାହିତ୍ୟ ମୁଣ୍ଡ ଟେକି ଉଠିଥିଲା । ସାମନ୍ତୀୟ ଅନୁଗ୍ରହ, ରାଜନ୍ୟ ପୃଷ୍ଠ ପୋଷାକତା ଓ ଅଭିରୁଚିରେ ତତ୍କାଳୀନ ରାଜ ଦରବାରମାନଙ୍କରେ ଗୋଟିଏ ଗୋଟିଏ 'କବି ମଣ୍ଡଳୀ' ଗଢ଼ି ଉଠିଥିଲା । ରାଜାନୁଗ୍ରହ ଓ ସାମନ୍ତୀୟ ଅଭିରୁଚି କାରଣରୁ ତତ୍କାଳୀନ କବିମାନେ ତାଙ୍କ କାବ୍ୟାବଳୀରେ ରାଜନ୍ୟ ବର୍ଗଙ୍କ ସ୍ତବ, ସ୍ତୁତିଗାନ ସହିତ ଆମୋଦ-ପ୍ରମୋଦ, ଭୋଗ-ବିଳାସ, ପୂର୍ଣ୍ଣ ପ୍ରେମମୟ ଜୀବନର ସମ୍ଭୋଗ ଓ ଶୃଙ୍ଗାରର ଚିତ୍ର ପ୍ରକଟିତ କଲେ । ଏମାନେ ଶୃଙ୍ଗାର ଚିତ୍ର ପ୍ରକଟନ ସହିତ ମଣିଷ ସମାଜକୁ ଧର୍ମନିଷ୍ଠ ଓ ଈଶ୍ୱରାର୍ପିତ କରାଇବା ଲକ୍ଷ୍ୟରେ ବିଭିନ୍ନ ଧର୍ମଦର୍ଶନ ଇତିହାସ ଓ ପୁରାଣ ଗ୍ରନ୍ଥମାନଙ୍କରୁ ଧାର୍ମିକ ବିଷୟ ବସ୍ତୁ ମାନ ଗ୍ରହଣ କରି ତାକୁ ଆଧ୍ୟାତ୍ମିକ ବା ବୈଷ୍ଣବୀୟ କାବ୍ୟର ରୂପ ମଧ୍ୟ ଦେଲେ । କବି ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜଙ୍କ ଠାରୁ ଆରମ୍ଭ କରି କବି ବ୍ରଜନାଥ ବଡ଼ ଜେନା ଓ କବିସୂର୍ଯ୍ୟ ବଳଦେବ ରଥଙ୍କ ପର୍ଯ୍ୟନ୍ତ ସମସ୍ତ ରୀତି ଯୁଗୀୟ କବିମାନେ ରୀତି ଯୁଗୀୟ କାବ୍ୟାଦର୍ଶରେ ସ୍ୱ-କାବ୍ୟମାନ ରଚନା କରିଥିଲେ ।

## ରୀତି ଯୁଗୀୟ କାବ୍ୟର ବୈଶିଷ୍ଟ୍ୟ ବା ଆଭିମୁଖ୍ୟ:-

ମଧ୍ୟ ଯୁଗୀୟ ରୀତିକାବ୍ୟ ବା ଆଳଙ୍କାରିକ କାବ୍ୟଗୁଡ଼ିକ ଭିତରେ କେତେଗୁଡ଼ିଏ ସ୍ୱାତନ୍ତ୍ର୍ୟ ବା ବୈଶିଷ୍ଟ୍ୟ ଫୁଟି ଉଠିଥିଲା । ରୀତି କବିମାନେ -

୧. ପୁରାଣର କଥାବସ୍ତୁ ଓ ଚରିତ୍ରକୁ ନେଇ ପୌରାଣିକ କାବ୍ୟ ବା ବୈଷ୍ଣବୀୟ କାବ୍ୟମାନ ରଚନା କରିଥିଲେ ।

୨. କାଳ୍ପନିକତା ବା କଳ୍ପନା ପ୍ରବଣତାକୁ ନେଇ କାଳ୍ପନିକ କାବ୍ୟମାନ ମଧ୍ୟ ରଚନା କରିଥିଲେ ।

୩. କାବ୍ୟରେ ଅଳଙ୍କାରର ଉପଯୋଗୀତା, ଆଳଙ୍କାରିକ ଧର୍ମ ଓ ଅଳଙ୍କାରର ମହିମା ପ୍ରତିପାଦନ ପାଇଁ ଏମାନେ ଆଳଙ୍କରିକ କାବ୍ୟମାନ ମଧ୍ୟ ରଚନା କରିଥିଲେ ।

୪. କାବ୍ୟର ରସମୟତା ଉପରେ ଗୁରୁତ୍ୱ ଦେଇ ବିଭିନ୍ନ ରସର ଅବତାରଣା କରିଥିଲେ ।

୫. ଶୃଙ୍ଗାର ରସର ପ୍ରୟୋଗ ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ ।

୬. ରୀତିର ପ୍ରୟୋଗ ବା କାବ୍ୟର ରଚନାଶୈଳୀ ଉପରେ ଗୁରୁତ୍ୱ ଦେଇଥିଲେ ।

୭. କାବ୍ୟରେ ଆଳଙ୍କାରିକ ଭାଷା ବିନ୍ୟାସ ଓ ବିଭିନ୍ନ ଅଳଙ୍କାରର ପ୍ରୟୋଗ ଉପରେ ଗୁରୁତ୍ୱ ଦେଇଥିଲେ ।

୮. ଧ୍ୱନିର ଚମତ୍କାର ବିନ୍ୟାସ ଓ ବକ୍ରୋକ୍ତିର ସଫଳ ପ୍ରୟୋଗ କରିଥିଲେ ।

୯. ଶାବ୍ଦିକତା ଓ ଶବ୍ଦପାଣ୍ଡିତ୍ୟ ଉପରେ ଏମାନେ ଗୁରୁତ୍ୱ ଦେଇଥିଲେ ।

୧୦. ରୀତିକାବ୍ୟ ଗୁଡ଼ିକରେ ବହୁଶାସ୍ତ୍ରର ପ୍ରଭାବ ବା ବହୁଶାସ୍ତ୍ର ଦର୍ଶୀତାର ପରିଲକ୍ଷିତ ହୁଏ ।

୧୧. ରୀତିକାବ୍ୟ ଗୁଡ଼ିକରେ ବିଭିନ୍ନ ଛନ୍ଦର ସୁ-ମଧୁର ଯୋଜନା କରାଯାଇଛି ।

୧୨. ରୀତିକାବ୍ୟ ଗୁଡ଼ିକ ସାଙ୍ଗୀତିକ ଆବେଦନ କ୍ଷମ। ଏଥିରେ ବିଭିନ୍ନ ରାଗ-ରାଗିଣୀର ବହୁଳ ପ୍ରୟୋଗ କରାଯାଇଛି ।

୧୩. ଏହାର ଭାଷା ଶୈଳୀ ଦିବ୍ୟ-ଅଦିବ୍ୟ ବା ମଣି-ପ୍ରବାଳ ଭାଷାଶୈଳୀ ।

୧୪. ଏହି କାବ୍ୟ ଗୁଡ଼ିକ ବର୍ଣ୍ଣନା ବିଭବରେ ପରିପୂର୍ଣ୍ଣ । ନାରୀରୂପ ବର୍ଣ୍ଣନା, ପ୍ରକୃତି ବର୍ଣ୍ଣନା, ବିଭିନ୍ନ ଋତୁ ଚକ୍ରର ବର୍ଣ୍ଣନା, ପ୍ରେମ ଓ ଶୃଙ୍ଗାର ଆଦି ବର୍ଣ୍ଣନାରେ ଏହି କାବ୍ୟ ଗୁଡ଼ିକ ବେଶ୍ ବର୍ଣ୍ଣୋତ୍ସବମୟ ହୋଇ ଉଠିଛି ।

୧୫. ରୀତି କବିମାନେ ଶୁଦ୍ଧ-ନିର୍ମଳ କବିତ୍ୱ ଉପରେ ପ୍ରାଧାନ୍ୟ ଦେଇଛନ୍ତି ।

୧୬. ରୀତିକବିମାନେ ପରକୀୟା ପ୍ରେମବର୍ଣ୍ଣନା ଓ ଶୃଙ୍ଗାର ବର୍ଣ୍ଣନାରେ ଅତ୍ୟଧିକ ଅଶ୍ଳୀଳ, ଦୋଷଦୁଷ୍ଟ ହୋଇପଡ଼ିବା କାରଣରୁ ସେଥିରେ ଆଧ୍ୟାତ୍ମିକତାର ପ୍ରଲେପ ଦେଇ, ସମାଜ ଓ ଧର୍ମ ଅନୁମୋଦିତ କରାଇବାର ପ୍ରୟାସ କରିଛନ୍ତି । ସେଥିପାଇଁ ସେମାନେ ବହୁ ପରିମାଣର ଆଧ୍ୟାତ୍ମିକ କାବ୍ୟ ବା ବୈଷ୍ଣବ କାବ୍ୟମାନ ରଚନା କରିଛନ୍ତି ।

**ବୈଷ୍ଣବ କାବ୍ୟ ସାହିତ୍ୟ:-**

ରୀତି କବିମାନେ ତତ୍କାଳୀନ ଶାମନ୍ତ ଶାସିତ ସମାଜର ଅଭିରୁଚି ଓ ସମୟର ଆବଶ୍ୟକତା ଅନୁଯାୟୀ ବହୁଳ ଆଳଙ୍କାରିକ ଓ ଉତ୍କଟ ଶୃଙ୍ଗାର ଚିତ୍ର କୈନ୍ଦ୍ରିକ କାବ୍ୟମାନ ରଚନା କରିଥିଲେ ହେଁ; ଧର୍ମ, ଧର୍ମୀୟ ଭାବନା ଓ ଈଶ୍ୱର ପ୍ରାଣତା ଉପରେ ମଧ୍ୟ ଗୁରୁତ୍ୱ ଦେଇଥିଲେ । ପ୍ରାୟ ସମସ୍ତ ରୀତିକାବ୍ୟ ଗୁଡ଼ିକ ଭିତର ବୈଷ୍ଣବୀୟ ଭକ୍ତି ଭାବନା ପ୍ରକଟିତ ହୋଇଛି । କେବଳ ପୌରାଣିକ କାବ୍ୟ ନୁହେଁ, କାଳ୍ପନିକ ଓ ଆଳଙ୍କାରିକ କାବ୍ୟ ଗୁଡ଼ିକରେ ମଧ୍ୟଧର୍ମୀୟ ଭାବନା, ଆଧ୍ୟାତ୍ମିକ ଆସ୍ପୃହା ଓ ଭକ୍ତି ଭାବନା ଫୁଟି ଉଠିଛି ।

ରୀତି ଯୁଗର ବୈଷ୍ଣବୀୟ କାବ୍ୟ ଗୁଡ଼ିକ ଭିତରେ ଭାରତୀୟ ଆଧ୍ୟାତ୍ମିକ ଉପାସନା ମାର୍ଗର ତିନିଗୋଟି ମୁଖ୍ୟ ଧାରା ବିକାଶ ଲାଭ କରିଛି । ଯଥା- ୧. ରାମ କୈନ୍ଦ୍ରିକ

ଉପାସନା ବା ରାମ ଭକ୍ତି ଧାରା, ୨- କୃଷ୍ଣ କୈନ୍ଦ୍ରିକ ଉପାସନା ବା କୃଷ୍ଣ ଭକ୍ତିଧାରା, ୩- ଜଗନ୍ନାଥ କୈନ୍ଦ୍ରିକ ଉପାସନା ବା ଜ୍ଞାନ- ମିଶ୍ରାଭକ୍ତି ଧାରା । ରୀତି ଯୁଗରେ ଜଗନ୍ନାଥ ଓ ରାମ ଉପାସନା କୈନ୍ଦ୍ରିକ କାବ୍ୟ ଅପେକ୍ଷା କୃଷ୍ଣ କୈନ୍ଦ୍ରିକ, ବୈଷ୍ଣବ କାବ୍ୟର ବହୁଳ ଧାରା ଓ ପ୍ରଭାବ ରହିଛି । ଏହି ସବୁ ବୈଷ୍ଣବ କାବ୍ୟ ଗୁଡ଼ିକ ପୁରାଣର କଥାବସ୍ତୁ, ଚରିତ୍ର ଓ ପୌରାଣିକ- ଇତିହାସ କିମ୍ବଦନ୍ତୀ ଆଧାରିତ । ଉଭୟ ରାମ ଏବଂ କୃଷ୍ଣ କୈନ୍ଦ୍ରିକ ବୈଷ୍ଣବ କାବ୍ୟମାନଙ୍କରେ ଅଧିକାଂଶ ସ୍ଥଳରେ ଜଗନ୍ନାଥଙ୍କର ମହିମା ଓ ମହତ୍ତ୍ୱ ମଧ୍ୟ ପ୍ରକଟିତ । ଓଡ଼ିଆ ରୀତି ଯୁଗରେ ରଚିତ ରାମ ଭକ୍ତି କୈନ୍ଦ୍ରିକ ଓଡ଼ିଆ ବୈଷ୍ଣବ କାବ୍ୟ ଗୁଡ଼ିକ ହେଲା- ଅର୍ଜ୍ଜୁନ ଦାସଙ୍କର- ରାମ ବିଭା, ଧନଞ୍ଜୟ ଭଞ୍ଜଙ୍କର- ରଘୁନାଥ ବିଳାସ, ବିଷ୍ଣୁ ଦାସଙ୍କର- ପ୍ରେମାଲୋଚନା, କାହ୍ନୁ ଦାସଙ୍କର- ରାମରସାମୃତ କାବ୍ୟ, କଣ୍ଠ ଦାସଙ୍କର- ରାମାର୍ଚ୍ଚନ ଚନ୍ଦ୍ରିକା, ଉପେନ୍ଦ୍ର ଭଞ୍ଜଙ୍କର- ବୈଦେହୀଶ ବିଳାସ, ରାମଲୀଳାମୃତ, ଅବନାରସତରଙ୍ଗ, ଷୋଳପୋଇ, ଯଦୁମଣି ମହାପାତ୍ରଙ୍କର- ରାଘବ ବିଳାସ ଇତ୍ୟାଦି । ରୀତିଯୁଗୀୟ କୃଷ୍ଣ କୈନ୍ଦ୍ରିକ ବୈଷ୍ଣବ କାବ୍ୟ ଗୁଡ଼ିକ ହେଲା- ବୃନ୍ଦାବତୀ ଦାସୀଙ୍କର- ପୂର୍ଣ୍ଣତମ ଚନ୍ଦ୍ରୋଦୟ କୃପାସିନ୍ଧୁ ଦାସଙ୍କର- ଉପାସନା ଦୀପିକା, ଉପାସନା- ଚନ୍ଦ୍ରୋଦୟ, ଦାଶରଥି ଦାସଙ୍କର- ସାଧନ ସୁଧାକର, ବ୍ରଜ ବିହାର କାବ୍ୟ ।

ଦୀନବନ୍ଧୁ ରାଜ ହରିଚନ୍ଦନଙ୍କର- ନବବୃନ୍ଦାବନ ବିହାର, ରାଧାକୃଷ୍ଣ ଲୀଳାମୃତ ସାଗର, ବୈଶ୍ୟ ଗଙ୍ଗାଧରଙ୍କର ବ୍ରଜ ମଙ୍ଗଳ କାବ୍ୟ, ଘନ ଭଞ୍ଜଙ୍କର- ଗୋବିନ୍ଦ ବିଳାସ, ପୁରୁଷୋତ୍ତମ ଅନଙ୍ଗ ଭୀମଦେବଙ୍କର- କୃଷ୍ଣକେଳି ତରଙ୍ଗିଣୀ, ସଦାନନ୍ଦ କବି ସୂର୍ଯ୍ୟ ବ୍ରହ୍ମାଙ୍କର- ପ୍ରେମ ତରଙ୍ଗିଣୀ, ନିଷ୍ଠା-ନୀଳମଣି, ନାମ ଚିନ୍ତାମଣି, ପ୍ରୀତି ଚିନ୍ତାମଣି ବ୍ରଜଲୀଳାମୃତ, ଯୁଗଳ ରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ଅଭିମନ୍ୟୁ ସାମନ୍ତ ସିଂହାରଙ୍କର- ପ୍ରେମ ଚିନ୍ତାମଣି, ବିଦଗ୍ଧ ଚିନ୍ତାମଣି, ଭକ୍ତ ଚରଣ ଦାସଙ୍କର- ମଥୁରା ମଙ୍ଗଳ, ମନଶିକ୍ଷା, ମାଗୁଣୀ ପଟ୍ଟନାୟକଙ୍କର - ଗୋପୀଭାଷା, ଦନେଇ ଦାସଙ୍କର- ଗୋପୀଭାଷା, ଭୂପତି ପଣ୍ଡିତଙ୍କର- ପ୍ରେମ ପଞ୍ଚାମୃତ, ଗୋପବିନୋଦ, ଗୋପକେଳି, କୃଷ୍ଣ ଦାସଙ୍କର- ନବାନୁରାଗ, ଦୀନକୃଷ୍ଣ ଦାସଙ୍କର- ରସକଲ୍ଲୋଳ, କବି ଉପେନ୍ଦ୍ର ଭଞ୍ଜଙ୍କର - କୁଞ୍ଜ ବିହାର, କଳାକଉତୁକ, ବ୍ରଜଲୀଳା, ରସପଞ୍ଚକ, ଛାନ୍ଦଭୂଷଣ କବି ବ୍ରଜନାଥ ବଡ଼ ଜେନାଙ୍କର- ଗୋପୀ ବିଳାପ ଦଶପୋଇ, ଶ୍ୟାମ ରାସୋତ୍ସବ ପ୍ରଭୃତି ।

ଏତଦ୍ ଭିନ୍ନ ଜଗନ୍ନାଥ ଧର୍ମ- ଦର୍ଶନ ଓ ଚେତନାକୁ ନେଇ ରଚିତ କାବ୍ୟ ଗୁଡ଼ିକ ହେଲା- ଧନଞ୍ଜୟ ଭଞ୍ଜଙ୍କର ଅନଙ୍ଗରେଖା, ଉପେନ୍ଦ୍ର ଭଞ୍ଜଙ୍କର- କୋଟି ବ୍ରହ୍ମାଣ୍ଡ-ସୁନ୍ଦରୀ, ସୁଭଦ୍ରା ପରିଣୟ, ରସିକ ହାରାବଳୀ, ନୀଳାଦ୍ରୀଶ-ଚଉତିଶା, ଦୀନକୃଷ୍ଣ ଦାସଙ୍କର-

ରସକଲ୍ଲୋଳ, ଜଗମୋହନ ଛାନ୍ଦ, ଆର୍ତ୍ତତ୍ରାଣ ଚଉତିଶା, ଭକ୍ତଚରଣ ଦାସଙ୍କର- ମନ ବୋଧ ଚଉତିଶା, ବ୍ରଜନାଥ ବଡ଼ଜେନାଙ୍କର ଗୁଣ୍ଡିଚା ବିଜେ ପ୍ରଭୃତି ।

ଏହି ବୈଷ୍ଣବ କାବ୍ୟ ଗୁଡ଼ିକ ଭିତରେ ରୀତି ଯୁଗୀୟ କାବ୍ୟକଳାର ପରିପ୍ରକାଶ ଘଟିଥିଲେ ମଧ୍ୟ, ଆହୁରି କେତେକ ସ୍ୱାତନ୍ତ୍ୟ ମଧ୍ୟ ଫୁଟି ଉଠିଛି । ସେଗୁଡ଼ିକ ହେଲା-

୧- ଏହି କାବ୍ୟଗୁଡ଼ିକ ମୁଖ୍ୟତଃ ଚରିତ- ଲୀଳା ବା ଅଷ୍ଟକାଳ ଲୀଳା ମୂଳକ ।

୨- ଏହି କାବ୍ୟ ଗୁଡ଼ିକରେ ବୈଷ୍ଣବ ଧର୍ମ- ଜଗତର ଆରାଧ୍ୟ ଦେବତା ଭଗବାନ ବିଷ୍ଣୁଙ୍କର ବିଭିନ୍ନ ଅବତାର ଯଥା- ଭଗବାନ କୃଷ୍ଣ, ଭଗବାନ ରାମ ଓ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ଲୀଳା ଓ ମହିମାର ବର୍ଣ୍ଣନା କରାଯାଇଛି ।

୩- ଅପ୍ରାକୃତ ଦିବ୍ୟ ପ୍ରେମର ବର୍ଣ୍ଣନା କରାଯାଇଛି ।

୪- ଭଗବାନଙ୍କର ବିଭିନ୍ନ ଧାମ ଯଥା- ବୃନ୍ଦାବନ ଧାମ, ଗୋପ, ମଥୁରା ଏବଂ ଶ୍ରୀକ୍ଷେତ୍ରର ମହିମା ପ୍ରକଟିତ କରାଯାଇଛି ।

୫- ପ୍ରେମଭକ୍ତି ମାର୍ଗ ଉପରେ ଗୁରୁତ୍ୱ ।

୬- ଜ୍ଞାନ ଓ ଯୋଗ ସାଧନା ଉପରେ ଗୁରୁତ୍ୱ ।

୭- ଜ୍ଞାନ ମିଶ୍ରା-ଭକ୍ତି ମାର୍ଗ ଉପରେ ଗୁରୁତ୍ୱ ।

୮- ଦିବ୍ୟ ଆନନ୍ଦ ବା ବ୍ରହ୍ମାନନ୍ଦ ପ୍ରାପ୍ତିର ମାର୍ଗ ନିର୍ଦ୍ଦେଶ ।

୯- ଭଗବତ୍ ଭକ୍ତି ଉପରେ ଗୁରୁତ୍ୱ ଓ ଭଗବତ୍ ଭକ୍ତିଲାଭର ଉପାୟ ନିର୍ଦ୍ଦେଶ ।

୧୦- ନାମ ମହାତ୍ମ୍ୟ ଉପରେ ଗୁରୁତ୍ୱ ।

୧୧- ପୁରୁଷାର୍ଥ (ଧର୍ମ-ଅର୍ଥ-କାମ-ମୋକ୍ଷ) ଉପରେ ପ୍ରାଧାନ୍ୟ ।

୧୨- ବିଭିନ୍ନ ବୈଷ୍ଣବୀୟ ତତ୍ତ୍ୱ ବା ଧାର୍ମିକ ତତ୍ତ୍ୱର ବର୍ଣ୍ଣନା ଯଥା- ଭଗବତ୍‌ତତ୍ତ୍ୱ, ଭକ୍ତିତତ୍ତ୍ୱ, ନାମତତ୍ତ୍ୱ, ଧାମତତ୍ତ୍ୱ, ବୃନ୍ଦାବନତତ୍ତ୍ୱ, ଶ୍ରୀ ପୁରୁଷୋତ୍ତମତତ୍ତ୍ୱ, ରାଧା-କୃଷ୍ଣତତ୍ତ୍ୱ, ଜଗନ୍ନାଥତତ୍ତ୍ୱ, ସୁଭଦ୍ରାତତ୍ତ୍ୱ, ବଳଦେବତତ୍ତ୍ୱ, ଗୋପୀତତ୍ତ୍ୱ, ଅଷ୍ଟକାଳଲୀଳାତତ୍ତ୍ୱ, ସଖାତତ୍ତ୍ୱ, ସଖୀତତ୍ତ୍ୱ, ପ୍ରେମତତ୍ତ୍ୱ, ମନ୍ତ୍ର-ଯନ୍ତ୍ରତତ୍ତ୍ୱ, ଇତ୍ୟାଦି । ଏହିସବୁ ଆଲୋଚନାରୁ ଜଣାଯାଏ- ରୀତି ଯୁଗର କବିମାନେ ତତ୍କାଳୀନ ସମୟର ପ୍ରାଣସ୍ପନ୍ଦନ ଓ ଆବଶ୍ୟକତା ଦୃଷ୍ଟିରୁ ରୀତି ଲକ୍ଷଣ ମଣ୍ଡିତ, ଆଳଙ୍କାରିକ, ଶୃଙ୍ଗାର ରସାଶ୍ରିତ, ମାଧୁର୍ଯ୍ୟ ମଣ୍ଡିତ କାଳ୍ପନିକ, ପୌରାଣିକ ବା ବୈଷ୍ଣବ କାବ୍ୟମାନ ରଚନା କରି ଓଡ଼ିଆ ବାଣୀଭଣ୍ଡାରକୁ ଶାବଳିତ କରିଯାଇଛନ୍ତି ।



# ମଧ୍ୟଯୁଗୀୟ ଓଡ଼ିଆ ରୀତିକାବ୍ୟରେ ଅଲଙ୍କାର ଯୋଜନା

ମଧ୍ୟଯୁଗୀୟ ଓଡ଼ିଆ ରୀତି-କାବ୍ୟ ସାହିତ୍ୟର ମୁଖ୍ୟ କାବ୍ୟାଦର୍ଶ ଥିଲା- ଅଳଙ୍କାର ଯୋଜନା । ଏମାନେ ସ୍ୱକୀୟ କାବ୍ୟାବଳୀରେ ଅଳଙ୍କାରର ମନୋଜ୍ଞ, ମଞ୍ଜୁଳ, ପୁଷ୍କଳ ପ୍ରୟୋଗ କରିଛନ୍ତି । ଏହି ଆଳଙ୍କାରିକ କାବ୍ୟଧାରା ମହାଭାରତୀୟ କାବ୍ୟିକ ପ୍ରବାହର ଏକ ଅଙ୍ଗ । ସଂସ୍କୃତ ସାହିତ୍ୟ ହିଁ ଏହି କାବ୍ୟଧାରାର ପ୍ରବର୍ତ୍ତନ କ୍ଷେତ୍ରରେ କାରଣ ଓ ଆଦର୍ଶ ସ୍ୱରୂପ ରହି ପ୍ରେରଣା ଯୋଗାଇ ଥିଲା । ଓଡ଼ିଆ ରୀତି କାବ୍ୟଗୁଡ଼ିକ ଅଳଙ୍କାର ବହୁଳ ହୋଇପଡ଼ିବାର କେତେଗୁଡ଼ିଏ ପ୍ରମୁଖ କାରଣ ରହିଛି । ସେଗୁଡ଼ିକ ହେଲା- ଓଡ଼ିଆ ରୀତି କାବ୍ୟ ଗୁଡ଼ିକ ସଂସ୍କୃତ ଆଳଙ୍କାରିକ କାବ୍ୟାଦର୍ଶ ଅନୁସରଣରେ ରଚିତ ହୋଇଥିଲା । ସଂସ୍କୃତ କାବ୍ୟଶାସ୍ତ୍ର ଗୁଡ଼ିକର ବ୍ୟାପକ ପରିଚର୍ଯ୍ୟାର ପ୍ରଭାବ ରୀତିଯୁଗରେ ପଡ଼ିଥିଲା । ପୁନଶ୍ଚ- ଆଡ଼ମ୍ୱରପୂର୍ଣ୍ଣ ବାଣୀବିଳାସ ପ୍ରତି ମଧ କବିର ମମତା ଥିଲା ସର୍ବାଧିକ । ତତ୍କାଳୀନ କାବ୍ୟରସିକ ଓ ବିଦଗ୍ଧ ପାଠକ ସମାଜ ମଧ ଏହି ଆଳଙ୍କାରିକ କାବ୍ୟାଦର୍ଶକୁ ପୂର୍ଣ୍ଣରୂପେ ସମର୍ଥନ କରିଥିଲା । ସଂସ୍କୃତ ସାହିତ୍ୟ ସହ ଓଡ଼ିଆ ସାହିତ୍ୟକୁ ସମକକ୍ଷ ଓ ପ୍ରତିସ୍ପର୍ଦ୍ଧୀ କରାଇବା ପାଇଁ ତତ୍କାଳୀନ ସାମାଜିକ ଆଭିମୁଖ୍ୟ ରୀତିକବିମାନଙ୍କୁ ଅଳଙ୍କାର ପ୍ରବଣତା ହେବା ପାଇଁ ଉତ୍ସାହିତ କରିଥିଲା । ଏହି ସବୁ କାରଣରୁ ରୀତିଯୁଗୀୟ କବିମାନେ ସେମାନଙ୍କ କାବ୍ୟରେ ଅଳଙ୍କାରର ପୁଷ୍କଳ ପ୍ରୟୋଗ କରିଥିଲେ ।

ରୀତି କବିମାନେ କାବ୍ୟରେ ଯେଉଁ ଅଳଙ୍କାରର ପ୍ରୟୋଗ ବା ଉପଯୋଗ କଲେ, ତାହା ଧାତବ ଅବା ବସ୍ତୁଗତ ଅଳଙ୍କାର ନୁହେଁ । ଏହି ଅଳଙ୍କାର ହେଉଛି- ଶବ୍ଦ ଓ ଅର୍ଥର ଅଳଙ୍କାର । ଭିନ୍ନାର୍ଥବୋଧକ, ରମଣୀୟ, ବୈଚିତ୍ର୍ୟମୟ, ଶ୍ରୁତିମଧୁର ନାନାଦି ଶବ୍ଦ ଓ ଅର୍ଥର ପ୍ରୟୋଗ ମାଧ୍ୟମରେ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଥାଏ । ଯେଉଁଥିପାଇଁ ସଂସ୍କୃତ ଆଳଙ୍କାରିକ ଆଚାର୍ଯ୍ୟ ଭାମହ ଅଳଙ୍କାରକୁ କାବ୍ୟର ଏକ ସୌନ୍ଦର୍ଯ୍ୟ ବିଧାୟକ ସ୍ଥିର ଧର୍ମ ରୂପେ ଗ୍ରହଣ କରିଥିଲେ । ଭାମହଙ୍କ ମତରେ- ଅଳଙ୍କାର କାବ୍ୟରେ ସୌନ୍ଦର୍ଯ୍ୟ ସୃଷ୍ଟି କରେ ନାହିଁ, ମାତ୍ର- କାବ୍ୟର ସୌନ୍ଦର୍ଯ୍ୟକୁ ପରିବର୍ଦ୍ଧିତ କରିଥାଏ । ଯେପରି ଗୋଟିଏ

ରମଣୀର ମୁଖମଣ୍ଡଳର ସ୍ୱାଭାବିକ ସୌନ୍ଦର୍ଯ୍ୟ ରହିଥାଏ । ମାତ୍ର- ସେ ବିଭିନ୍ନ ବସ୍ତୁଗତ ଅଳଙ୍କାର ପରିଧାନ କରିବା ଦ୍ୱାରା ତା' ମୁଖମଣ୍ଡଳର ସୌନ୍ଦର୍ଯ୍ୟର ଅଭିବୃଦ୍ଧି ଘଟିଥାଏ । ସେହିପରି କାବ୍ୟରେ ଶବ୍ଦ ଓ ଅର୍ଥାଳଙ୍କାରର ପ୍ରୟୋଗ ଦ୍ୱାରା କାବ୍ୟର ଶୋଭା ବା ସୌନ୍ଦର୍ଯ୍ୟର ଅଭିବୃଦ୍ଧି ଘଟିଥାଏ । ଯାହାକି ପାଠକକୁ ଆକର୍ଷିତ, ଚମତ୍କୃତ ଓ ବଶୀଭୂତ କରିବାରେ ସହାୟକ ହୁଏ । ସଂସ୍କୃତ ଆଳଙ୍କାରିକ ଆଚାର୍ଯ୍ୟ ଦଣ୍ଡୀ ମଧ୍ୟ ଅଳଙ୍କାରକୁ କାବ୍ୟର ଏକ ଶୋଭାବିଧାୟକ ଧର୍ମ ରୂପେ ଗ୍ରହଣ କରିଥିଲେ । ଦଣ୍ଡୀ ତାଙ୍କ 'କାବ୍ୟାଦର୍ଶ'ରେ କହିଛନ୍ତି- "କାବ୍ୟ ଶୋଭାଂ କରାନ୍ ଧର୍ମାନ୍ ଅଳଙ୍କାରାନ୍ ପ୍ରଚକ୍ଷତେ" । ଅର୍ଥାତ୍- କାବ୍ୟର ଏକ ଶୋଭାବିଧାୟକ ବା 'ସୌନ୍ଦର୍ଯ୍ୟ ବର୍ଦ୍ଧକ ଧର୍ମ ହେଉଛି- ଅଳଙ୍କାର । ଏହି ଅଳଙ୍କାର ମୁଖ୍ୟତଃ କାବ୍ୟର ଆଙ୍ଗିକ ଶୋଭା ଅଭିବୃଦ୍ଧିରେ ସହାୟକ ହୋଇଥାଏ । ଆଚାର୍ଯ୍ୟ ବାମନ, ବିଶ୍ୱନାଥ କବିରାଜ ପ୍ରମୁଖ ମଧ୍ୟ ଅଳଙ୍କାରକୁ କାବ୍ୟର ଏକ ସ୍ଥିର ଶୋଭାବିଧାୟକ ଧର୍ମ ରୂପେ ଗ୍ରହଣ କରିଥିଲେ । ପଣ୍ଡିତ ରାଜଶେଖର ଆଉ ପାଦେ ଆଗକୁ ଯାଇ ଅଳଙ୍କାରକୁ କାବ୍ୟର ସର୍ବଶ୍ରେଷ୍ଠ ସଂପଦ, ଶିରୋଭୂଷଣ ରୂପରେ ଅଭିହିତ କରିଛନ୍ତି । ସେ ତାଙ୍କର 'କାବ୍ୟମୀମାଂସା' ଗ୍ରନ୍ଥରେ କହିଛନ୍ତି-

"ଅଳଙ୍କାର ଶିରୋରତ୍ନଂ ସର୍ବସ୍ୱ କାବ୍ୟ ସଂପଦମ୍
ଉପମା କବି ବଂଶସ୍ୟ ମାତୈବେତି ମତିର୍ମମ୍ ।"

ଏହି ପାରମ୍ପରିକ ଅଳଙ୍କାରିକ ମତବାଦର ଅନୁସରଣରେ ଓଡ଼ିଆ କାବ୍ୟ ସାହିତ୍ୟକୁ ସଂସ୍କୃତ ଆଳଙ୍କାରିକ କାବ୍ୟ ସାହିତ୍ୟ ସହ ସମକକ୍ଷ, ସମୁନ୍ନତ ଓ ପ୍ରତିସ୍ପର୍ଦ୍ଧୀ କରାଇବାର ଲକ୍ଷ୍ୟ ନେଇ ଓଡ଼ିଆ ରୀତିକବିମାନେ କାବ୍ୟରେ ଅଳଙ୍କାରର ମଞ୍ଜୁଳ ପ୍ରୟୋଗ କରି ରୀତିକାବ୍ୟ ଗୁଡ଼ିକୁ ମାଧୁର୍ଯ୍ୟମୟ, ପ୍ରାଚୁର୍ଯ୍ୟମୟ, ଐଶ୍ୱର୍ଯ୍ୟମୟ ଆଳଙ୍କାରିକ କରି ଗଢ଼ି ତୋଳିଥିଲେ । ରୀତିଯୁଗର ପ୍ରମୁଖ କବି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ କାବ୍ୟରେ ଅଳଙ୍କାର ପ୍ରୟୋଜନୀୟତାକୁ ମୁକ୍ତକଣ୍ଠରେ ତାଙ୍କ 'ଲାବଣ୍ୟବତୀ' କାବ୍ୟରେ ସ୍ୱୀକାର କରି କହିଛନ୍ତି-

"ମୂର୍ତ୍ତି ମନ୍ତ କରି ମୃଦୁଗୀତ ବିଚାରଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ ।
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରବରକୁ ଆନନ୍ଦ କରିବ ।"

ଉପେନ୍ଦ୍ର ତାଙ୍କର 'କୋଟି ବ୍ରାହ୍ମାଣ୍ଡ ସୁନ୍ଦରୀ' କାବ୍ୟର ପ୍ରଥମ ଛାନ୍ଦରେ ଅଳଙ୍କାର ବିନ୍ୟାସର ଆବଶ୍ୟକତା ସଂପର୍କରେ ସୂଚନା ଦେଇ ଲେଖିଛନ୍ତି-

"ନାନା ଶବଦରେ ଯେ ବୀଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହୁ କରୁ ଏ ଛାନ୍ଦ ବିବେଚନ ।"

ପୁନଶ୍ଚ- ଏହି କାବ୍ୟର ଦ୍ୱାଦଶ ଛାନ୍ଦରେ କବି ଲେଖିଛନ୍ତି-

"ଯେ କବି ଅର୍ଥ ପଣ୍ଡିତ ସୁହୃଦ
ରସିକ ଯେହି ଘେନି ମୋ ଏ ଛାନ୍ଦ
ବ୍ୟସ୍ତ ଅଳଙ୍କାର, ମଣ୍ଡନ ବିଧି ନିର୍ଦ୍ଦୋଷ ବିଚାର ।"

କବି ଅଭିମନ୍ୟୁ ସାମନ୍ତ ସିଂହାର ମଧ ତାଙ୍କ 'ବିଦ୍‌ଗଧ- ଚିନ୍ତାମଣି' କାବ୍ୟରେ ଆଳଙ୍କାରିକ କାବ୍ୟରୀତିର ଆବଶ୍ୟକତା ସଂପର୍କରେ ଲେଖିଛନ୍ତି-

"କବି ବଚନ ଅଳଙ୍କୃତ ହେଉ
ଆନ୍ଧ ନେତ୍ର ତାପ-ପାପ ପଳାଉ ।
× × ×
ବିଶେଷ ଅଳଙ୍କାର ଅଳଙ୍କାର
ବିଚିତ୍ର ଲାବଣ୍ୟ ଜନମ ସ୍ଥଳ ।"

ରୀତିଯୁଗର ଅନ୍ୟତମ ଶ୍ରେଷ୍ଠ କବି ବ୍ରଜନାଥ ବଡ଼ଜେନା ଯେ'କି ଉପେନ୍ଦ୍ର ପ୍ରତିଭା ସମକକ୍ଷ, ସେ ତାଙ୍କ ଆଳଙ୍କାରିକ କାବ୍ୟାଦର୍ଶ ସଂପର୍କରେ 'ରାଜସଭା' କବିତାରେ ଲେଖିଛନ୍ତି-

"'ଅ' ଅକ୍ଷର ନିୟମ ଅମ୍ବିକା ବିଳାସ ନାମ
କୁମାର ଚରିତ, ଶିବ- ଉମା ବିବାହ
ଛାନ୍ଦ- ଶ୍ଳେଷ- ଅନୁପ୍ରାସ ଅକ୍ଷର ଅବନା ନ୍ୟାସ
ଶୃଙ୍ଗାର କୌତୂକରସ ସନ୍ଦର୍ଭବିରହ
ଅଳଙ୍କାର କାବ୍ୟ ଲକ୍ଷଣ ।"

ରୀତିଯୁଗର ପ୍ରାୟ ସମସ୍ତ କବି ଏହି ଆଳଙ୍କାରିକ କାବ୍ୟ-ଧାରାକୁ ଗ୍ରହଣ କରି କାବ୍ୟରେ ଅଳଙ୍କାରର ବହୁଳ ପ୍ରୟୋଗ କରିଛନ୍ତି । ରୀତିକବିମାନେ ସେମାନଙ୍କ କାବ୍ୟରେ ଉଭୟ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ମନୋଜ୍ଞ, ମଞ୍ଜୁଳ ପ୍ରୟୋଗ କରିଛନ୍ତି । ଶବ୍ଦାଳଙ୍କାର ପ୍ରୟୋଗ କ୍ଷେତ୍ରରେ ଅନୁପ୍ରାସ, ଯମକ, ଶ୍ଳେଷ, ବକ୍ରୋକ୍ତି, ଚିତ୍ରାଳଙ୍କାର ଏବଂ ଅର୍ଥାଳଙ୍କାର

ପ୍ରୟୋଗ କ୍ଷେତ୍ରରେ ଉପମା, ରୂପକ ଉତ୍‌ପ୍ରେକ୍ଷା, ବ୍ୟକ୍ତିରେକ, ବିଶେଷୋକ୍ତି, ସ୍ୱଭାବୋକ୍ତି, ଭ୍ରାନ୍ତିମାନ ଆଦି ଅଳଙ୍କାରର ପ୍ରୟୋଗ କୃତିତ୍ୱର ସହ କରିଛନ୍ତି । ନିମ୍ନରେ ମଧ୍ୟଯୁଗୀୟ ରୀତିକାବ୍ୟ ଗୁଡ଼ିକରୁ ଆଳଙ୍କାରିକ ପଦବିନ୍ୟାସର କେତେକ ଉଦାହରଣ ଦିଆଯାଇପାରେ ।

**ଅନୁପ୍ରାସ ଅଳଙ୍କାର:-**

ସାଧାରଣତଃ ପଦ ବା ବାକ୍ୟ ମଧ୍ୟରେ ଏକ ବା ଏକାଧିକ ବ୍ୟଞ୍ଜନ ବର୍ଣ୍ଣ ଯୁକ୍ତ ବା ବିଯୁକ୍ତ ଭାବରେ ପୁନଃ ପୁନଃ ଧ୍ୱନିତ ବା ପ୍ରୟୋଗ ହେଲେ ଅନୁପ୍ରାସ ଅଳଙ୍କାର ହୁଏ ।

ଏହି ଅନୁପ୍ରାସ ଅଳଙ୍କାରର କେତୋଟି ଉଦାହରଣ ହେଲା-

"ଦେଖି ନବ କାଳିକା ବକାଳିକା ମାଳିକା
ଆଳି କାଳିକା କାନ୍ତ ସ୍ମରି ।
ରକ୍ଷା କେମନ୍ତେ କରି କରିବା ମତ୍ତ କରି
ଗତି କି ଏମନ୍ତ ବିଚାରୀ, ସେ ସହଚରୀ"

**-ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)**

"ରସିକ ବିଚାର କରେ ଦୀପଦାନ କାର୍ତ୍ତିକରେ
ପ୍ରୟାଗ ସ୍ନାନ ମକରେ ଯେହୁ ନ' କରେ ।
ମିଶେକିସେ ଆଲୋକରେ ଉତ୍ତମ ରମା ଅଙ୍କରେ
ଘେନିବସେ ପଲଙ୍କରେ କି ହିମକରେ ।"

**-ପ୍ରେମ ସୁଧାନିଧି (ଉପେନ୍ଦ୍ର ଭଞ୍ଜ)**

"ଭଲା ସାଜେଣି ବାଜେଣି । କିଙ୍କିଣୀ କଟୀରେ ପୁଣି
କିଣି କିଣି ନେବ ମାନସୁ ମାନକୁ । କିଣି କିଣି ହେଲା କ୍ଷଣି ।"

**-କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ (ଉପେନ୍ଦ୍ର ଭଞ୍ଜ)**

"କରୁଣା ସାଗର ସାଗରଜା ନାୟକ
କର ଅଭୟ ଅଭୟ ବର ଦାୟକ ।"

**- ରସ କଲ୍ଲୋଳ (ଦୀନକୃଷ୍ଣ ଦାସ)**

"ଆନନ୍ଦେ କୋବିଦେ ପିଅ, ଏ ରସ ଶ୍ରବଣେ
ଆଦିକନ୍ଦ ଶ୍ରୀରାଧିକା ଶ୍ରୀନାମ ଶ୍ରବଣେ ।"

**ବିଦଗ୍ଧ ଚିନ୍ତାମଣି (ଅଭିମନ୍ୟୁ ସାମନ୍ତ ସିଂହାର)**

**ଯମକ ଅଳଙ୍କାରଃ-**

ଯେ କୌଣସି ପଦ ବା ବାକ୍ୟରେ ଗୋଟିଏ ବା ଏକ ପ୍ରକାର ଶବ୍ଦ ଭିନ୍ନ ଭିନ୍ନ ଅର୍ଥରେ ବାରମ୍ବାର ଆବୃତ୍ତି ବା ପ୍ରୟୋଗ ହେଲେ ଯମକ ଅଳଙ୍କାର ହୁଏ । ଯମକ ଅଳଙ୍କାରର କେତୋଟି ଉଦାହରଣ ହେଲା-

ଦେଖରେ ନଳିନି ନଳିନୀ ନଳିନୀରେ ପୂରିତ
ଭ୍ରୂମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।
ବିରାଜି ବିରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ
ରାଜୀବ ରାଜୀବ-ନୟନା ଏଥି ଖେଳା କରାଇ ।"

**-ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)**

"ଉଜ୍ଜ୍ୱଳ ଉଜ୍ଜ୍ୱଳ ରସେ ଗୀତ ହୋଇବ
ମାନସ ମାନସ-ହଂସ ପ୍ରାୟେ କ୍ରୀଡ଼ିବା ।"

**-ପ୍ରେମସୁଧାନିଧି (ଉପେନ୍ଦ୍ର ଭଞ୍ଜ)**

"ଗଉରୀ-ବର ଗଉରୀ-ବର ନିତମ୍ବା ବିମ୍ବାଧରୀ
ଗଉରୀବର ଗଉରୀ ବର କୃପାରୁ ମୁଁ ତୋହରି ।"

**-କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ (ଉପେନ୍ଦ୍ର ଭଞ୍ଜ)**

"କଷ୍ଟ ମହୀଧର ମହୀଧର କଣ୍ଟକ
କଳମକ୍ଷ ବାରଣ ବାରଣ ଅନ୍ତକ ।"

**- ରସକଲ୍ଲୋଳ (ଦୀନକୃଷ୍ଣ ଦାସ)**

"ଜଳସୂତ ସୂତ ତା ସୂତ ତା ସୂତ ତା ସୂତ ସୂତ ତା ସୂତ
ତା ସୂତ ସୂତ ସୂତ ହେଲା ଜୀବିତ ନାରୀସ୍ନେହ
ବିପରୀତ ହେ ।"

**-ବିଦଗ୍ଧ ଚିନ୍ତାମଣି (ଅଭିମନ୍ୟୁ ସାମନ୍ତ ସିଂହାର)**

"ଜୟ ଜୟ ବୃନ୍ଦାବନ - ଗଗନ- ଚନ୍ଦ୍ରମା
ବିଧୁ ବିଧୁ କଳ୍ମଷ ସର୍ବ ସୁଖ ସୀମା ହେ ।
ରାଧା ରାଧାପତି ମୁଖ ଚୁମ୍ବନ ଲାଳସ
ବଂଶୀ ବଶୀକରଣ ପ୍ରବୀଣ ପୀତବାସ ହେ ।"

**-କେଳି କଳାନିଧି (ବ୍ରଜନାଥ ବଡ଼ଜେନା)**

**ଶ୍ଲେଷ ଅଳଙ୍କାର:-**

ବାକ୍ୟ ବା ପଦ ମଧ୍ୟରେ କୌଣସି ଏକ ନିର୍ଦ୍ଦିଷ୍ଟ ଶବ୍ଦ ଥରେ ମାତ୍ର ବ୍ୟବହୃତ ହୋଇ ଯଦି ବିଭିନ୍ନ ଅର୍ଥ କରେ ତେବେ ତାହା ଶ୍ଲେଷାଳଙ୍କାର । ଶ୍ଲେଷାଳଙ୍କାରର ଉଦାହରଣ ହେଲା-

"କହେ ଉପଇନ୍ଦ୍ର ବର୍ଣ୍ଣ ଭଙ୍ଗୀରୁ ବାରି
ଛାନ୍ଦ ଗଙ୍ଗା- ଯମୁନା ସଙ୍ଗମ ପରି ଯେ ।"

**- କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ (ଉପେନ୍ଦ୍ର ଭଞ୍ଜ)**

"ଅରିଦର- କର ବିଭୋ ଅରି-ଦର କର
ଯୁଗେ ଯୁଗେ ଧର ନାନାବିଧ ଅବତାର ହେ ।"

**-କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ (ଉପେନ୍ଦ୍ର ଭଞ୍ଜ)**

"ଜୟ ଜୟ ଜୟରାମ ଜନକ ସୁଖଦ
ଭୀମ ହରଷ ଦାନରେ ସଦା ବିଶାରଦ ।"

**-ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)**

"ବାବୁ ନାକଶିରୀ ଦାନ ଯୋଗ୍ୟ ଯୋଷାକୁ
ବିହର କାନ ନ କର ଆଲିଙ୍ଗନକୁ ।"

**-ବୈଦେହୀଶ ବିଳାସ (ଉପେନ୍ଦ୍ର ଭଞ୍ଜ)**

**ବକ୍ରୋକ୍ତି:-**

ଯେଉଁଠି ଅଭିପ୍ରେତ ଅର୍ଥ ବା ପ୍ରକୃତ ଅର୍ଥକୁ ଅନ୍ୟ ଏକ ଭିନ୍ନ ଅର୍ଥରେ ଗ୍ରହଣ କରାଯାଏ ସେଠି ବକ୍ରୋକ୍ତି ଅଳଙ୍କାର ହୁଏ ।

"କହେ ଏକ ନାରୀ ବିଶେଷ ସୁନାରୀ
ଏ ଦେଶରେ ବାସ କରିଛି ।
ଭୃଙ୍ଗ କିଂ ପୁରୁଷ ଚଞ୍ଚଳ ମାନସ
ଏଥି ତହିଁ ପୁଣ ଯାଉଛି ।"

**- ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)**

"କଉଁ ଗୋପୀ ହସି ବକ୍ରଭାବ ଭାଷି
ବୋଲେ ଦେଖ ଏ କାମଦୂତୀ

କାମ କାର୍ଯ୍ୟ ସିଦ୍ଧ କରିବାରୁ
ବୁଧମାନେ ବୋଲନ୍ତି କାମଦୂତୀ ।"
- **ରସକଲ୍ଲୋଳ (ଦୀନକୃଷ୍ଣ ଦାସ)**

"ସ୍ୱେଦରେ ଗମ ଗମ ବଦନ ତମ ତମ
ଦିଶଇ ରୀତି ଆନ ଆନ ।
ଶରୀର ଝିମ ଝିମ ହୃଦୟ ଦମ ଦମ
କାମ କରୁଛି ଘନ ଘନରେ ।"
- **ବିଦଗ୍ଧ ଚିନ୍ତାମଣି (ଅଭିମନ୍ୟୁ ସାମନ୍ତ ସିଂହାର)**

**ଉପମା ଅଳଙ୍କାରଃ-**

ସମାନ ଧର୍ମବୋଧକ ବିଭିନ୍ନ ବସ୍ତୁର ସାଦୃଶ୍ୟ କଥନକୁ ଉପମା କୁହାଯାଏ । ଏଥିରେ ଉପମେୟ (ପ୍ରକୃତ ବସ୍ତୁ) ଓ ଉପମାନ (ଅପ୍ରକୃତ ବସ୍ତୁ) ସମାନ ଧର୍ମ ବିଶିଷ୍ଟ ।

ଉଦାହରଣ : ପାଦ ପଦ୍ମ ସଦୃଶ । ମୁଖ ଚନ୍ଦ୍ର ସଦୃଶ ଏଠାରେ ଉପମେୟ ପାଦ, ମୁଖ ଏବଂ ଉପମାନ- ପଦ୍ମ, ଚନ୍ଦ୍ର ସମାନ ଧର୍ମ ବିଶିଷ୍ଟ । ଉଭୟ ମଧ୍ୟରେ ସାଦୃଶ୍ୟ ରହିଛି । ଉପମା ଅଳଙ୍କାରର କେତେକ ଉଦାହରଣ ହେଲା-

"କାହା ଲଲାଟୁଁ ସିନ୍ଦୂର ବୋହିପଡ଼େ ସ୍ୱେଦ ହୋଇବାରୁ ନିର୍ଗତ
କେଶରାହୁ ଦନ୍ତା ଘାତରୁ ବ୍ୟକତ, ଇନ୍ଦୁ ଦେହରୁ କି' ରକତ ।"
- **ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)**

"ଲଲାଟ ଲପନ ଚାନ୍ଦ ଦରପନ ଚିକୁର ଚାମର ଯହିଁରେ
ତରଙ୍ଗ -କୁରଙ୍ଗ- ନୟନ-ତୁରଙ୍ଗ କି' ରଙ୍ଗ କରଇ ତହିଁରେ ।"
- **ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)**

"କୁଶଳ ନର୍ତ୍ତକୀ ଭ୍ରମରୀ ପରାୟେ ଭ୍ରମିଲେ ବାତଚକ୍ର ମାନେ
କୁଟୁମ୍ବୀ ଦୀନ ଜନ ମନ ପରାୟେ ସନ୍ତାପୀ ହେଲେ ଏକାଦିନେ ।"
- **ରସକଲ୍ଲୋଳ (ଦୀନକୃଷ୍ଣ ଦାସ)**

"ତୁମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁ ନାହିଁ ଆନ କିଛି ମୋର ପ୍ରତିକାର ।

ନୂଆ ଅନ୍ଧ ପ୍ରାୟ ହୋଇ
ଅନୁକ୍ଷଣ ଆକୁଳ ବଢୁଛି ପ୍ରାଣସହୀ ।"

- ପ୍ରେମ ସୁଧାନିଧି (ଉପେନ୍ଦ୍ର ଭଞ୍ଜ)

"ଚନ୍ଦ୍ରମାରୁ ପଦ୍ମ ଜନମ କରିଣ ସ୍ୱଭାବେ ବହିଛି ସୁଷମା
କ୍ଷଣେ କ୍ଷଣେ କଥା ପ୍ରସଙ୍ଗେ ପଦ୍ମରୁ ଜାତ କରେ ଏବେ ଚନ୍ଦ୍ରମା ।"

- ପ୍ରେମ ସୁଧାନିଧି (ଉପେନ୍ଦ୍ର ଭଞ୍ଜ)

## ରୂପକ ଅଳଙ୍କାର:-

ଉପମେୟ ଓ ଉପମାନ ମଧ୍ୟରେ ଅଭେଦ କଳ୍ପିତ ହେଲେ ଏବଂ ଉପମେୟରେ ଉପମାନର ଆରୋପ କରାଗଲେ ବା ଉପମାନର ପ୍ରାଧାନ୍ୟ ସୂଚିତ ହେଲେ, ରୂପକ ଅଳଙ୍କାର ହୁଏ ।

**ଉ:ହ:-** ପାଦପଦ୍ମ, ମୁଖଚନ୍ଦ୍ର । ଏଠାରେ ପାଦ ଓ ପଦ୍ମ ଏବଂ ମୁଖ ଓ ଚନ୍ଦ୍ର ମଧ୍ୟରେ ଅଭେଦ କଳ୍ପନା କରାଯାଇଛି । ଏଥିରେ ଉପମେୟ ପାଦ ଓ ମୁଖ ଅପେକ୍ଷା ଉପମାନ ପଦ୍ମ ଓ ଚନ୍ଦ୍ରର ପ୍ରାଧାନ୍ୟ ସୂଚିତ । ରୂପକ ଅଳଙ୍କାରର କେତେକ ଉଦାହରଣ ହେଲା-

"ପୁଂସ ଦେଖି ଭ୍ରମର ମତ୍ତଭୋଳ
ମୁଖ-କମଳ ନେତ୍ର- ନୀଳୋତ୍ପଳ ।
ଚୁମ୍ବି ମହା ଆନନ୍ଦକୁ ପାଇଲା
ଓଷ୍ଠ ବନ୍ଧୁକରୁ ମଧୁ ପିଇଲା ।"

- ପ୍ରେମ ସୁଧାନିଧି (ଉପେନ୍ଦ୍ର ଭଞ୍ଜ)

"କର କୃଷକ ରମା ଗାତ୍ର- କ୍ଷେତ୍ର
ନଖ ଲଙ୍ଗଳେ ଚଷିଲା ତ୍ୱରିତ ।"

- ପ୍ରେମ ସୁଧାନିଧି (ଉପେନ୍ଦ୍ର ଭଞ୍ଜ)

"ସର୍ପ ପୁରେ ଯାଇ ପର୍ବତ କହିଲେ
ମହୀଜାତ ହେମ ମଞ୍ଜରୀ
ସୁଗନ୍ଧବତୀ ସ୍ୱ-ଇଚ୍ଛାରେ ଚଳିତ
ପତ୍ରାବଳୀରେ କି' ମାଧୁରୀ ।"

-ସୁଭଦ୍ରା ପରିଣୟ (ଉପେନ୍ଦ୍ର ଭଞ୍ଜ)

"କଉଁ ଗୋପୀମୂର୍ତ୍ତି ଅନାଇ ବୋଲନ୍ତି
ତୋ ଅଙ୍ଗ କାମ ସରୋବର
କାନ୍ତ ସ୍ୱଚ୍ଛଜଳ କେଶ ଶଇବାଳ
ବଦନ-କମଳ ପ୍ରକାର ।"

-ରସକଲ୍ଲୋଳ (ଦୀନକୃଷ୍ଣ ଦାସ)

"ଖେଦବୀଜ ନିଜହୃଦ - କେଦାରେ ବିଞ୍ଚିଲୁରେ ।"

-ଚମ୍ପୂ (କବିସୂର୍ଯ୍ୟ ବଳଦେବ ରଥ)

**ଉତ୍ପ୍ରେକ୍ଷା ଅଳଙ୍କାରଃ-**

ଉପମେୟକୁ ଉପମାନ ରୂପେ ଶଂସୟ ବା ସମ୍ଭାବନା କରାଗଲେ ବା ପ୍ରକୃତ ବସ୍ତୁରେ ଅପ୍ରକୃତ ବସ୍ତୁର ଆରୋପ ବା ତର୍କଣା କରାଗଲେ ଉତ୍ପ୍ରେକ୍ଷା ଅଳଙ୍କାର ହୁଏ । ଉତ୍ପ୍ରେକ୍ଷା ଅଳଙ୍କାରର କେତୋଟି ଉଦାହରଣ ହେଲା-

"ବିନ୍ଦୁ ବିନ୍ଦୁ ଜଳ ରହିଛି ଚାରୁ କୁଟିଳ ବାଳେ
ତୁଷାର ବୃଷ୍ଟି କି' ହୋଇଛି ନବତମାଳ ଦଳେ ।
ନବଘନେ କିବା ଉଇଁଛି ତା'ର ତାରକା ଶ୍ରେଣୀ
ମୋତି ପତନ କି' ହୋଇଛି ନୀଳମଣି- ଧରଣୀ ।"

- ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)

"ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ
ସେ ତିନି ଶୃଙ୍ଗୁ କି' ଜାତ ତରଳ ରଜତ ।"

- କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ (ଉପେନ୍ଦ୍ର ଭଞ୍ଜ)

"ସହସ୍ର ପାଦ ପ୍ରକାଶ ଉପମା ଏ ସ୍ମରି
ସୁଷୁମ୍ଣା ଯୋଗ ହେଲାଣି ଉଦୟ ଶିଖରି ।
ଶମ୍ବର ବିଟପ ତେଣୁ କୁଳଟା ବନରୁ
ସଦ୍ଭାବ ହୋଇଲେ ଅତି ତ୍ରସିତ ମନରୁ ।"

- ସୁଭଦ୍ରା ପରିଣୟ (ଉପେନ୍ଦ୍ର ଭଞ୍ଜ)

"କଣ୍ଠେ ତା'ର ହାର କାଳିନ୍ଦୀ ବିହାର
କରେ କି ରାଜହଂସ ପନ୍ତି
କାଳିକା କୋଳରେ ନାଦ ରହିତରେ
ବଳାକା ବଳିକି ଚଳନ୍ତି ।"

– ରସକଲ୍ଲୋଳ (ଦୀନକୃଷ୍ଣ ଦାସ)

**ବ୍ୟତିରେକ ଅଳଙ୍କାରः-**

ଉପମାନ ଅପେକ୍ଷା ଉପମେୟର ଆଧିକ୍ୟ ସୂଚିତ ହେଲେ ବ୍ୟତିରେକ ଅଳଙ୍କାର ହୁଏ । ବ୍ୟତିରେକ ଅଳଙ୍କାରର କେତୋଟି ଉଦାହରଣ ହେଲା-

"କମଳ ଚରଣ ନିନ୍ଦଇ ଅରୁଣ କେତେ ଲକ୍ଷଣ ଅଛି ଦେଖ
କେମନ୍ତ ଉଜ୍ଜ୍ୱଳ ନକ୍ଷତ୍ର ମଣ୍ଡଳ ପରାଯେ ତରତର ନଖ ।
କେଉଁ ଉପମା କରି ଜାନୁଜଙ୍ଘ ଶୋଭାକୁ
କରି କରଭର କରକୁ ଧିକ୍‌କାର ଶିଶୁ ମରକତ- ରମ୍ଭାକୁ"

– ରସକଲ୍ଲୋଳ (ଦୀନକୃଷ୍ଣ ଦାସ)

"ବିହୁଁ ସମୁଦ୍ର ମନ୍ଥନ ଚନ୍ଦ୍ର ଜନମ ଯେଉଁ କାଳେ
ବିହୀନ କ୍ଷୀଣ କଳଂକ ଜାଣ ନିର୍ମଳ ହୋଇଥିଲେ ।
ବଦନେ ଜାନକୀର ସମାନ ମନ ଜାଣିଟି ବହି
ବିମ୍ବବେଷ୍ଟନ ନୋହିଲେ ବର୍ଣ୍ଣଭାବେ ଟି କାଟି ଦେଇ ।"

– ବୈଦେହୀଶ ବିଳାସ (ଉପେନ୍ଦ୍ର ଭଞ୍ଜ)

**ଭ୍ରାନ୍ତିମାନ ଅଳଙ୍କାରः-**

ସାଦୃଶ୍ୟ ଗତ କୌଣସି ଗୋଟିଏ ବସ୍ତୁକୁ ଦେଖି ଅନ୍ୟ ଏକ ବସ୍ତୁର ଭ୍ରମଜାତ ହେଲେ, ଭ୍ରାନ୍ତିମାନ ଅଳଙ୍କାର ହୁଏ ।

ଉଃହାଃ- "ଅପୂର୍ବ ଅମ୍ବୁଜ ମୁଖକୁ ଭାବି ଭୃଙ୍ଗ- ଚକୋର
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ଚାହିଁ କାତର ।
କେଶ ଦରଶନେ ରଥାଙ୍ଗ ଧାଇଁ ଆହାର ବଶେ
ବିଚ୍ଛେଦ ଭୟରୁ ପଳାଇ ଗଲେ ନ ରହି ପାଶେ ।"

– ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)

"କବି ବିଚାରିଲା ବିଚିତ୍ର ହେଲା, ତୁମ୍ବୀ ବୁଡ଼ିଲା
ନବୁଡ଼ି ଶଇଳ ସଲିଳ ଉପରରେ ରହିଲା ।"

– ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ)

"କେ ଭରଜଧର କନ୍ଦର ମଧ୍ୟରେ ଖୋଜଇ ହରିଙ୍କ ଭୋଳେ
କେ କୁନ୍ତଳ, ବାସାଞ୍ଚଳ ଝାଡ଼ି ଖୋଜେ ପ୍ରେମ ମାଦକ ବିହ୍ୱଳେ
କେ ପତ୍ର ବହୁଳ ଲତାର ତଳକୁ ଚାହିଁଇ ନିରେଖି କରି
ମହାଦ୍ରୁମ ପରେ ଚଢ଼ି ଅନ୍ୱେଷଣ କରଇ କେଉଁ ନାଗରୀ
କେଉଁ ତରୁଣୀ ତମାଳ ତରୁ କୋଳକରି କହେ ପୁଣି ତମେ
ହେ ଶଠ ଶେଖର । ଆଜି କାହିଁ ଯିବ ବାନ୍ଧିବୀ ଶ୍ରୀଭୁଜ ବାମେ ।

– ପ୍ରେମଚିନ୍ତାମଣି (ଅଭିମନ୍ୟୁ ସାମନ୍ତସିଂହାର)

"ଶିବା ଖୋଜିଲେ ଯେ ଭୀମ ଛନ୍ତି କି ନାହାଁନ୍ତି ଭ୍ରମ
ଭୀମ ଗଙ୍ଗାକୁ ଲୋଡ଼ିଲେ ଜଟା ଫିଟାଇ ।
କୁସମବତୀ ବ୍ରତତୀ ଅଦୃଷ୍ଟ ରଜାର ରୀତି
ମୋତିହାରବତୀ ମତି ଚିନ୍ତାକୁ ପାଇ .
ଭ୍ରମରେ ଭ୍ରମରେ ଭ୍ରମନ୍ତି
ମଧୁ ପରାୟେ କୁମୁଦିନୀ ଲୋଡ଼ନ୍ତି ।"

– ବିଦଗ୍ଧ ଚିନ୍ତାମଣି (ଅଭିମନ୍ୟୁ ସାମନ୍ତସିଂହାର)

## ଧ୍ୱନିର ଚମତ୍କାର ବିନ୍ୟାସଃ-

ରୀତିକବିମାନେ କାବ୍ୟର ଆତ୍ମିକ ସୌନ୍ଦର୍ଯ୍ୟର ପ୍ରକଟନ ପାଇଁ ଧ୍ୱନିର ପ୍ରୟୋଗ ଉପରେ ଗୁରୁତ୍ୱ ଦେଇଛନ୍ତି । ଅର୍ଥବୋଧକ ପଦାବଳୀ ସାହଯ୍ୟରେ ଚମତ୍କାର ଭାବରସ ସୃଷ୍ଟି କରିବା ହିଁ ଧ୍ୱନିର ଲକ୍ଷ୍ୟ । ଧ୍ୱନି ସଂପ୍ରଦାୟର ଶ୍ରେଷ୍ଠ ପ୍ରବର୍ତ୍ତକ ଆଚାର୍ଯ୍ୟ ଆନନ୍ଦ ବର୍ଦ୍ଧନ ତାଙ୍କ 'ଧ୍ୱନ୍ୟାଲୋକ' ଗ୍ରନ୍ଥରେ କହିଛନ୍ତି- "କାବ୍ୟ ସ୍ୟାତ୍ମା ଧ୍ୱନିଃ ।" ଅର୍ଥାତ୍- ଧ୍ୱନି ହେଉଛି କାବ୍ୟର ଆତ୍ମା ସଦୃଶ । ତାଙ୍କ ମତରେ- ଯେଉଁଠାରେ ଶବ୍ଦ ଓ ଅର୍ଥ ନିଜର ମୁଖ୍ୟ ଅର୍ଥକୁ ବାଧିତ କରି ଅନ୍ୟ ଏକ ବିଶିଷ୍ଟ ରମଣୀୟ ଅର୍ଥ ପ୍ରକାଶ କରେ ସେଠାରେ ଧ୍ୱନି ପ୍ରକାଶିତ ହୁଏ । ଅଳଙ୍କାର କାବ୍ୟର ଆଙ୍ଗିକ ସୌନ୍ଦର୍ଯ୍ୟ ଅଭିବୃଦ୍ଧିର ସହାୟକ ହେବା ସ୍ଥଳେ, ଧ୍ୱନି କାବ୍ୟର ଅନ୍ତର୍ନିହିତ ସୌନ୍ଦର୍ଯ୍ୟର ପ୍ରକଟନ କରିଥାଏ । ତେଣୁ ରୀତି ଯୁଗୀୟ

କବିମାନେ ସେମାନଙ୍କ କାବ୍ୟରେ ଧ୍ୱନିର ଚମତ୍କାର ବିନ୍ୟାସ କରିଛନ୍ତି । କାବ୍ୟରେ ଧ୍ୱନିର ଉପାଦେୟତା ଓ ପ୍ରୟୋଜନୀୟତାକୁ କବି ଉପେନ୍ଦ୍ର ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଯେଉଁଥି ପାଇଁ ସେ ତାଙ୍କ ଲାବଣ୍ୟବତୀ କାବ୍ୟର ପ୍ରଥମ ଛାନ୍ଦରେ ଲେଖିଛନ୍ତି-

"ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥ୍ୟଜନ ପ୍ରବରଙ୍କୁ ଆନନ୍ଦ କରିବ ।"

କେବଳ ଉପେନ୍ଦ୍ର ନୁହେଁ, ରୀତିଯୁଗର ଅନ୍ୟ ସମସ୍ତ କବିଗଣ ମଧ୍ୟ କାବ୍ୟରେ ଧ୍ୱନିର ଚମତ୍କାର ପ୍ରୟୋଗ କରି କାବ୍ୟକୁ ରମଣୀୟ, କମନୀୟ, ସୌନ୍ଦର୍ଯ୍ୟମୟ, ଏବଂ ଧ୍ୱନ୍ୟାତ୍ମକ କରିଛନ୍ତି । ରୀତିକାବ୍ୟ ଗୁଡ଼ିକରୁ କେତେଗୁଡ଼ିଏ ଧ୍ୱନ୍ୟାତ୍ମକ ପଙ୍‌କ୍ତିର ଉଦାହରଣ ଦିଆଯାଇପାରେ-

"କେତେ ସିହାଣୀ ଲୋଡ଼ିଲା ବଞ୍ଚାଇ
ରାତେ଼ ଚନ୍ଦ୍‌କରେ ଶେଜ ପକାଇ ।
ତହିଁ ମିଳୁ ମୁଁ ହରଷେ ଅନାଇ
ପାନ ପିକ ଦେଲା ଆଗେ ପକାଇ ।"

– ଲାବଣ୍ୟବତୀ (ଉପେନ୍ଦ୍ରଭଞ୍ଜ)

"ବଢ଼ାଇ ଦେଲେ ପୟର ଭାବଗ୍ରାହୀ ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି ।
ବ୍ରହ୍ମାରେ ଧୌତ ଯେ ପଦ, ନୋହିଛି ଶିବ ବିଷାଦ
ନ' ପାରି ଚରଣାମୃତ ପାନକୁ ଇଚ୍ଛି ।
ବିଜ୍ଞାନୀ କୈବର୍ତ୍ତ ଧୋଇଲା
ବିଶ୍ୱେ ପତିତ ପାବନ ନାମ ବହିଲା

- ବୈଦେହୀଶ ବିଳାସ (ଉପେନ୍ଦ୍ର ଭଞ୍ଜ)

"କୁମ୍ଭ ଭେଳାରେ ହୁଅନ୍ତ ପାରି
ତାହିତ ଏଥି ନାହାଁନ୍ତି କରି
ମୋହନାୟକ ନାହାଁନ୍ତି, ଯାଇଛନ୍ତି ସେପାରି ଯେ ।
କରନ୍ତେ ଅବା ଥିଲେ ଉପାୟେ
ଏବେ ଯାଅ ଯା ନଗର ଯାଏ
ଦେଖୁ ତ ଅଛ ଆସୁଛି ଅନ୍ଧକାର ଶର୍ବରୀ ଯେ ।"

– ରସକଲ୍ଲୋଳ (ଦୀନକୃଷ୍ଣ ଦାସ)

"ପ୍ରବାସୀ କେ କହେ ପ୍ରବାସିନୀ କି
କାହିଁକି କରି ବଞ୍ଚିବା ନିଶି କି
ମୋ କାନ୍ତ ସେବନ୍ତି ନରପତିଙ୍କି
ସେ ଘେନି ମୁହିଁ ସର୍ବଦା ଏକାକୀ ।"

**- ବିଦଗ୍ଧ ଚିନ୍ତାମଣି (ଅଭିମନ୍ୟୁ ସାମନ୍ତସିଂହାର)"**

ଏହିସବୁ ଆଲୋଚନାରୁ ଜଣାଯାଏ- ରୀତିକବିମାନେ ସେମାନଙ୍କ କାବ୍ୟକୁ ଶ୍ରୁତି ମଧୁର, ସୌନ୍ଦର୍ଯ୍ୟମୟ ଓ ଶବ୍ଦ ଆଟୋପରେ ଆଡ଼ମ୍ବରପୂର୍ଣ୍ଣ କରିବା ପାଇଁ ଅଳଙ୍କାରର ପ୍ରୟୋଗ କରିଛନ୍ତି । ଏହି ଆଳଙ୍କାରିକ ଶବ୍ଦଶିଳ୍ପ ରୀତିକବିର ଏକ ପ୍ରମୁଖ ଆୟୁଧ । ଯାହା ମାଧ୍ୟମରେ କବି ପାଠକ ପ୍ରାଣକୁ ବେଶ୍ ସରସ, ରସମୟ ଓ ମୁଗ୍ଧ କରିପାରିଛି ।



# ମଧ୍ୟଯୁଗୀୟ ଓଡ଼ିଆକାବ୍ୟରେ ଶୃଙ୍ଗାରରସ ବର୍ଣ୍ଣନା

ମଧ୍ୟଯୁଗୀୟ ଓଡ଼ିଆକାବ୍ୟ ବା ରୀତିକାବ୍ୟର ଆଙ୍ଗିକ ଗଠନ କୌଶଳ ଓ ଆତ୍ମିକ ରୂପ ବିଭବ ମୁଖ୍ୟତଃ ସଂସ୍କୃତ ଅଳଙ୍କାର ଶାସ୍ତ୍ର ଓ ରସଶାସ୍ତ୍ର ଦ୍ୱାରା ପ୍ରଭାବିତ ଓ ନିୟନ୍ତ୍ରିତ ହୋଇଥିଲା । ରସଶାସ୍ତ୍ରମାନଙ୍କରେ ରସର ପରିବେଷଣ ଉପରେ ଗୁରୁତ୍ୱ ଦିଆଯାଇଥିଲା । କାରଣ- ଏହି 'ରସ' ହିଁ ସାହିତ୍ୟକୁ ଆନନ୍ଦମୟ ଓ ରସମୟ କରି ଗଢ଼ି ତୋଳିଥାଏ । ଓଡ଼ିଆ ରୀତିକବିମାନେ ସଂସ୍କୃତ ରୀତିକାବ୍ୟାଦର୍ଶର ଆଦର୍ଶରେ ହିଁ ସେମାନଙ୍କ କାବ୍ୟ ସୌଧ ନିର୍ମାଣ କରିଥିଲେ । ଏକ ଦିଗରେ ସଂସ୍କୃତ ରସାଶାସ୍ତ୍ରର ପ୍ରଭାବ, ଅନ୍ୟ ଦିଗରେ ତତ୍କାଳୀନ ସମ୍ଭ୍ରାନ୍ତ ସମୁଜ୍ଜ୍ୱଳ ସୁଖ-ସମ୍ଭୋଗ-ବିଳାସମୟ ଜୀବନର ଚିତ୍ର ପ୍ରତିପାଦନ ଲକ୍ଷ୍ୟରେ ରୀତିକବିମାନେ ସେମାନଙ୍କ କାବ୍ୟରେ 'ରସ'ର ପରିବେଷଣ ଉପରେ ଗୁରୁତ୍ୱ ଦେଇଥିଲେ । ବିଭିନ୍ନ ରସର ପ୍ରୟୋଗ ତଥା ଶୃଙ୍ଗାରରସର ଉତ୍କୂଳ ପ୍ଲାବନରେ ଓଡ଼ିଆ ରୀତିକାବ୍ୟ ଗୁଡ଼ିକ ରସମୟ, ପ୍ରେମମୟ ଓ ଆନନ୍ଦମୟ ହୋଇଉଠିଥିଲା । ଏହି ରସହିଁ ସାହିତ୍ୟକୁ ରସମୟ, ସୌନ୍ଦର୍ଯ୍ୟମୟ ଏବଂ ସ୍ୱାଦିଷ୍ଟ କରିଥାଏ । କାରଣ- ସ୍ୱାଦ ଆସ୍ୱାଦନର ଅନ୍ୟ ନାମ ହେଉଛି- ରସ । ରସର ପ୍ରୟୋଗ ବିନା ସାହିତ୍ୟ ନୀରସ ଓ ପ୍ରାଣହୀନ ମନେହୁଏ ।

ରସବାଦର ଆଦି ପ୍ରବକ୍ତା ଆଚାର୍ଯ୍ୟ ଭରତମୁନି ତାଙ୍କ 'ନାଟ୍ୟଶାସ୍ତ୍ର' ଗ୍ରନ୍ଥରେ ରସ ସଂପର୍କରେ ବ୍ୟାପକ ପରିଚାର୍ଯ୍ୟା କରିଛନ୍ତି । ତାଙ୍କ ମତରେ-

"ବିଭାନୁଭାବ ବ୍ୟଭୀଚାରୀ ସଂଯୋଗାତ୍ ରସ ନିଷ୍ପତ୍ତିଃ ।" ଅର୍ଥାତ୍- ବିଭାବ, ଅନୁଭାବ ଓ ବ୍ୟଭିଚାରୀ ଭାବଙ୍କ ସଂଯୋଗରେ ଯେଉଁ ରସ ନିଷ୍ପତ୍ତି ହୁଏ, ତାହାର ସ୍ୱାଦ ବେଶ୍ ଆନନ୍ଦଦାୟକ ହୋଇଥାଏ । ଆଚାର୍ଯ୍ୟ ମମ୍ମଟ ମଧ ତାଙ୍କ 'କାବ୍ୟପ୍ରକାଶ' ଗ୍ରନ୍ଥରେ ରସକୁ ଆସ୍ୱାଦନ କରିବା ଅର୍ଥରେ କହିଛନ୍ତି- "ରସସ୍ୱାଦନ ସମୁଦ୍ଭୂତମ୍ ଆନନ୍ଦମ୍ ।" ତେଣୁ ସାହିତ୍ୟରେ ରସର ଉପସ୍ଥିତି ବିନା କାବ୍ୟାନନ୍ଦ ବା ରସାନନ୍ଦ ଉପଲବ୍ଧି କରିବା ଅସମ୍ଭବ । ଆଚାର୍ଯ୍ୟ ଧନଞ୍ଜୟ ମଧ ତାଙ୍କ 'ଦଶ ରୂପକ'ରେ କହିଛନ୍ତି-

"ସ୍ୱାଦଃ କାବ୍ୟାର୍ଥ ସମ୍ଭୋଦାତ୍ ଆତ୍ମାନନ୍ଦ ସମୁଦ୍ଭବଃ ।"

ପଣ୍ଡିତ ବିଶ୍ୱନାଥ କବିରାଜ ରସାଳଭାବ ସମନ୍ୱିତ ବାକ୍ୟ ଦ୍ୱାରା ରଚିତ ସାହିତ୍ୟକୁ କାବ୍ୟ ପଦବାଚ୍ୟ କହିଛନ୍ତି । ତାଙ୍କ ମତରେ- "ରସାତ୍ମକଂ ବାକ୍ୟଂ କାବ୍ୟମ୍ ।"

ତେଣୁ ଏ ସବୁ ଆଲୋଚନାରୁ ଜଣାଯାଏ- ରସ ହିଁ ସାହିତ୍ୟର ମୁଖ୍ୟ ବିଶେଷତ୍ୱ, ସୌନ୍ଦର୍ଯ୍ୟ ଏବଂ ପ୍ରାଣ । କାବ୍ୟଶାସ୍ତ୍ର ମାନଙ୍କରେ ବିଭିନ୍ନ ରସ (ନବରସ)ର ଆଲୋଚନା ପ୍ରସଙ୍ଗରେ ଶୃଙ୍ଗାରରସକୁ ଶ୍ରେଷ୍ଠତ୍ୱ ପ୍ରଦାନ କରାଯାଇଛି । ବେଦ, ବେଦାନ୍ତ, ଉପନିଷଦ, ପୁରାଣାଦି ଧର୍ମ-ଦର୍ଶନ ଶାସ୍ତ୍ରମାନଙ୍କରେ ଶୃଙ୍ଗାରୀ ଭାବନାକୁ ଶାସ୍ତ୍ରୀୟ ସ୍ୱୀକୃତି ଦିଆଯାଇଛି । ଗାଥ ସପ୍ତସତୀ, ଆର୍ଯ୍ୟ ସପ୍ତସତୀ ପ୍ରଭୃତି ପ୍ରାକୃତ ଗ୍ରନ୍ଥ, ଭରତଙ୍କ ନାଟ୍ୟଶାସ୍ତ୍ର, ଭୋଜରାଜଙ୍କ ସରସ୍ୱତୀ କଣ୍ଠାଭରଣ, ଆନନ୍ଦ ବର୍ଦ୍ଧନଙ୍କ ଧ୍ୱନ୍ୟାଲୋକ, ଭାମହଙ୍କ କାବ୍ୟାଳଙ୍କାର, ବାତ୍ସାୟନଙ୍କର କାମସୂତ୍ର, ବିଶ୍ୱନାଥ କବିରାଜଙ୍କ ସାହିତ୍ୟଦର୍ପଣ, ଅମରୁକଙ୍କ ଅମରୁ ଶତକ, ଭର୍ତ୍ତୃହରିଙ୍କ ଶୃଙ୍ଗାର ଶତକ, ଜୟଦେବଙ୍କ ଗୀତଗୋବିନ୍ଦ ପ୍ରଭୃତି ସଂସ୍କୃତ ଗ୍ରନ୍ଥମାନଙ୍କରେ ଶୃଙ୍ଗାରରସ ଉପରେ ପ୍ରାଧାନ୍ୟ ଦିଆଯାଇଛି । ଆଚାର୍ଯ୍ୟ ଭୋଜରାଜ ତାଙ୍କ 'ସରସ୍ୱତୀକଣ୍ଠାଭରଣ' ଗ୍ରନ୍ଥରେ କହିଛନ୍ତି- "ଶୃଙ୍ଗାରୀ ଚେତ୍ କବିଃ, କାବ୍ୟେ ଜାତଂ ରସମୟ ଜଗତଂ ।" ଅର୍ଥାତ୍- କବି ବା ସ୍ରଷ୍ଟା ଶୃଙ୍ଗାରୀ ଭାବନା ଦ୍ୱାରା ତା'ର କାବ୍ୟ ଜଗତକୁ ରସାଣିତ ଓ ରସମୟ କରିଥାଏ । ଆନନ୍ଦ ବର୍ଦ୍ଧନ ତାଙ୍କର 'ଧ୍ୱନ୍ୟାଲୋକ' ଗ୍ରନ୍ଥରେ ଶୃଙ୍ଗାରରସକୁ ଶ୍ରେଷ୍ଠ ମାଧୁର୍ଯ୍ୟ ରସ ଭାବରେ ଗ୍ରହଣ କରି କହିଛନ୍ତି—

"ଶୃଙ୍ଗାର ଏବ ମଧୁରଃ ପରଃ ପ୍ରହଲାଦନୋ ରସଃ
ତନ୍ମୟଂ କାବ୍ୟ ମାଶ୍ରିତ୍ୟ ମାଧୁର୍ଯ୍ୟ ପ୍ରତିତିଷ୍ଠତେ ।"

ପଣ୍ଡିତ ବିଶ୍ୱନାଥ କବିରାଜ ମଧ ତାଙ୍କ 'ସାହିତ୍ୟଦର୍ପଣ'ରେ ଶୃଙ୍ଗାରରସକୁ ଶ୍ରେଷ୍ଠ ସ୍ଥାନ ଦେଇ, ଏହି ରସ ଯେ, ସର୍ବାଧିକ ମଧୁର, ପରମ ଆହ୍ଲାଦଦାୟକ ଓ ଉଜ୍ଜ୍ୱଳ ରସ ତାହା ସେ ସ୍ୱୀକାର କରିଛନ୍ତି ।

ଓଡ଼ିଆ ରୀତି କବିମାନେ ଶୃଙ୍ଗାରୀ ଭାବନା ବା ଶୃଙ୍ଗାର ରସ ବର୍ଣ୍ଣନାରେ ଅତ୍ୟଧିକ ଆସକ୍ତି ପ୍ରକଟନ କରିଛନ୍ତି । ଏମାନେ ଶୃଙ୍ଗାରରସକୁ କାବ୍ୟର ଅଙ୍ଗୀରସ ରୂପେ ଗ୍ରହଣ କରିଛନ୍ତି । ଏହି ଶୃଙ୍ଗାରରସକୁ ରସରାଜ ରୂପେ ସ୍ୱୀକୃତି ମଧ ଦିଆଯାଇଛି । ଅଗ୍ନିପୁରାଣ, ଶୃଙ୍ଗାରତିଳକ, ଶୃଙ୍ଗାରପ୍ରକାଶ ଆଦି ଗ୍ରନ୍ଥରେ ଶୃଙ୍ଗାରରସକୁ ରସରାଜ ରୂପେ ବର୍ଣ୍ଣନା କରାଯାଇଛି । ଏହି ସବୁ ଶାସ୍ତ୍ରୀୟ ଆଦର୍ଶରେ ଓଡ଼ିଆ ରୀତିଯୁଗୀୟ କବିମାନେ ସେମାନଙ୍କ କାବ୍ୟରେ ଶୃଙ୍ଗାରରସର ବହୁଳ ପ୍ରୟୋଗ କରିଛନ୍ତି । ରୀତିକାବ୍ୟ ଗୁଡ଼ିକ ଯେହେତୁ ନର-ନାରୀର ପ୍ରେମ-ପ୍ରଣୟ ଓ ସମ୍ଭୋଗ ଆଧାରିତ, ସେହି କାରଣରୁ ରୀତିକାବ୍ୟ ଗୁଡ଼ିକ ରସମୟ,

ପ୍ରେମମୟ ଓ ଶୃଙ୍ଗାର ପ୍ରାଧାନ୍ୟ ହୋଇପଡ଼ିଛି । ଓଡ଼ିଆ କବି ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ଯଦୁମଣି, ବ୍ରଜନାଥ ବଡ଼ଜେନା ପ୍ରମୁଖ ସେମାନଙ୍କ କାବ୍ୟରେ ଶୃଙ୍ଗାରରସର ବର୍ଣ୍ଣନା ଉପରେ ଗୁରୁତ୍ୱ ଦେଇଛନ୍ତି । କବି ଉପେନ୍ଦ୍ର ତାଙ୍କ 'ଲାବଣ୍ୟବତୀ' କାବ୍ୟରେ ଶୃଙ୍ଗାରରସର ଶ୍ରେଷ୍ଠତା ପ୍ରତିପାଦନ ଲକ୍ଷ୍ୟରେ କହିଛନ୍ତି-

"ନବରସରେ ସାର ଆଦ୍ୟେ ଲେଖି ଶୃଙ୍ଗାର ।"
ରସସାର ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ ।"

ଉପେନ୍ଦ୍ର ତାଙ୍କର 'ପ୍ରେମସୁଧାନିଧି' ଗ୍ରନ୍ଥରେ ଶୃଙ୍ଗାର ରସକୁ ଶ୍ରେଷ୍ଠତମ ଉଜ୍ଜ୍ୱଳ ରସ ରୂପେ ସ୍ୱୀକାର କରି ଲେଖିଛନ୍ତି-

"ଉଜ୍ଜ୍ୱଳ ଉଜ୍ଜ୍ୱଳ ରସେ ଗୀତ ହୋଇବ
ମାନସ ମାନସ ହଂସ ପ୍ରାୟେ କ୍ରୀଡ଼ିବ ।"

କବି ବୃନ୍ଦାବନ ଦାସ ମଧ୍ୟ ତାଙ୍କର 'ରସ ବାରିଧି' ଗ୍ରନ୍ଥରେ ଶୃଙ୍ଗାର ରସର ଶ୍ରେଷ୍ଠତା ପ୍ରକଟନ କରି କହିଛନ୍ତି-

"ଯହିଁ ଅଛି ଶୃଙ୍ଗାର ଯାବତ୍ ରସଭାବ
ରସ ସ୍ୱାଦୁଁ ଆଦି ବଞ୍ଚାଇଲେ ଜୟଦେବ ହେ ।
ଏଥୁ ଅବା ଅଧିକ ବିଚାର ରସ କାହିଁ
ସର୍ବଶାସ୍ତ୍ରେ ବିଚାରିଲେ ଆଉ ନ' ଦିଶଇ ହେ ।"

ତେଣୁ ଏହି ସବୁ ଆଦର୍ଶରେ ରୀତିକାବ୍ୟ ଗୁଡ଼ିକରେ ଶୃଙ୍ଗାରୀ ଚେତନା ଓ ଶୃଙ୍ଗାରୀ ଭାବନା ଫୁଟି ଉଠିଛି । ଏହି ଶୃଙ୍ଗାରୀ ଚିତ୍ର ବା ଶୃଙ୍ଗାରୀ ଭାବନା କେତେକ କ୍ଷେତ୍ରରେ ଶାଳୀନତା ଓ ସାମାଜିକ ପରିମିତ ବୋଧର ସୀମାଡେଇଁ ଉତ୍କଟ, ଅଶ୍ଳୀଳ ଓ ଯୌନ ଜାଙ୍ଗଲିକ ହୋଇଉଠିଛି । ଧନଞ୍ଜୟ ଭଞ୍ଜଙ୍କର ଅନଙ୍ଗରେଖା, ଇଚ୍ଛାବତୀଠାରୁ ଆରମ୍ଭ କରି ଉପେନ୍ଦ୍ର, ଦୀନକୃଷ୍ଣ, ବ୍ରଜନାଥ ପ୍ରମୁଖଙ୍କ ଅଧିକାଂଶ କାବ୍ୟରେ ଉତ୍କଟ ଶୃଙ୍ଗାର ଚିତ୍ର, ସୁରତି ସମର, ଓ ରତିରଣ ନୂପୁର ଧ୍ୱନି ନିନାଦିତ ହୋଇଉଠିଛି । ମାତ୍ର କବି ଅଭିମନ୍ୟୁ, ଗୋପାଳକୃଷ୍ଣ, କବିସୂର୍ଯ୍ୟ ବଳଦେବ ରଥ ପ୍ରମୁଖଙ୍କ ଲେଖନୀରେ ଏହି ଶୃଙ୍ଗାରରସ ବୈଷ୍ଣବଶାସ୍ତ୍ରାନୁମୋଦିତ ମାଧୁର୍ଯ୍ୟ ରସରେ ବିମଣ୍ଡିତ ହୋଇ ମହନୀୟ ରୂପ ଧାରଣ କରିଅଛି ।

ନିମ୍ନରେ ମଧ୍ୟଯୁଗୀୟ ଓଡ଼ିଆ ରୀତିକାବ୍ୟଗୁଡ଼ିକରେ ଶୃଙ୍ଗାରରସ ଓ ଶୃଙ୍ଗାରୀ ଚେତନାର ଚିତ୍ର କିଭଳି ପ୍ରକଟିତ ହୋଇଛି, ସେ ସଂପର୍କରେ ବିଭିନ୍ନ କବିଙ୍କର ଭିନ୍ନ ଭିନ୍ନ କାବ୍ୟରୁ କେତେଗୁଡ଼ିଏ ପଙ୍‌କ୍ତିର ଉଦାହରଣ ଦିଆଯାଇପାରେ ।

"ଆକର୍ଷିଣ ଚୁମ୍ବନ ଦେଲେକ ରଘୁପତି
ସମ୍ପୂର୍ଣ୍ଣ ଚନ୍ଦ୍ରମା ମୁଖେ ତାମ୍ବୁଳର ଜ୍ୟୋତି ।
ଆପଣେ ଫିଟିଲା କଟି ମେଖଳାର ଖଞ୍ଜା
ବେଲୁ ବେଳ ଭୋଳକଲା ମନମଥ ରାଜା ।"

-ରାମବିଭା (ଅର୍ଜ୍ଜୁନ ଦାସ)

"ବିପରୀତ ଶୃଙ୍ଗାର କରନ୍ତେ ରାମାବର
ତାଟଙ୍କ ଯୁଗଳ ଚଞ୍ଚଳ ।
କମ୍ପେ ସ୍ତନ ଯୁଗଳ ଦୋଳିତ ମୋତିମାଳ
ତରଳ ନୟନ ନିଶ୍ଚଳ ।"

-ଇଚ୍ଛାବତୀ (ଧନଞ୍ଜୟ ଭଞ୍ଜ)

"ହୁଙ୍କାର ଶବଦ ବାଳୀ ଛାଡ଼େ ଘନ ଘନ
ମଦନ ମୋହରେ ପଡ଼ି ବୁଡ଼ିଗଲା ଜ୍ଞାନ ।
ଅପ୍ରମିତ ଶ୍ରମ କରି ମୁଖୁ ଝାଳ ଜାତ
କୁମାର ହୃଦରେ ଆସି ପଡ଼ିଲା ତ୍ୱରିତ ।"

- ପରିମଳା (ନରସିଂହ ସେଣ)

"କୁଚ ଶମ୍ଭୁରେ ପାଣି ପଦ୍ମ ଦେଇ
ଧରି ଅଧରୁ ଅମିୟ ପିଅଇ ।"

- ଶଶୀସେଣା (ପ୍ରତାପରାୟ)

"ତନୁ ପୁଲକି ଉଠେ ଘନ ଘନ
କମ୍ପେ ଅଧର ଭଉଜ ଜଘନ ।"

- ଉଷାଭିଳାଷ (ଶିଶୁ ଶଙ୍କର ଦାସ)

"କର କୃଷକ ରାମା ଗାତ୍ର- କ୍ଷେତ୍ର
ନଖ ଲଙ୍ଗଳେ ଚଷିଲା ତ୍ୱରିତ
ପ୍ରେମ ବୀଜକୁ ରୋପିଲା ତହିଁର
ପାଳନାକୁ ବରଷେ ସ୍ୱେଦନୀର ।"

- ପ୍ରେମ ସୁଧାନିଧି (ଉପେନ୍ଦ୍ର ଭଞ୍ଜ)

"ସନସଜରେ ମଜ୍ଜି ଶେଯରେ ଶୋଇ ଭୁଜରେ ବାନ୍ଧି
ହୃଦ ହୃଦରେ ଦେଇ ଆଦରେ ପାଦ ପାଦରେ ଛନ୍ଦି ।

× × ×

ମତ୍ତେ ରମଣୀ ରଚୁଁ ବିପରୀତ
ଲାସ୍ୟ ଅବନୀ ପ୍ରକାରେ ଶୋଭିତ
ମଞ୍ଜୁ ରସନା ବାଦ୍ୟ ପ୍ରବର୍ତ୍ତିଲା
ବେଣୀ ନର୍ତ୍ତକୀ ସତତ ନାଚିଲା ।"

– ପ୍ରେମ ସୁଧାନିଧି (ଉପେନ୍ଦ୍ର ଭଞ୍ଜ)

ଆଜ ତୋ କୁଚ କଠିନୀ ଛୁଇଁବା ହୋଇବ
ଏ ଅନନ୍ତରେ ରସିକା ସିଦ୍ଧି ଉପୁଜିବ ।

× × ×

– କର ପୀଡ଼ାରେ ସାରିବି ଉରଜ ମହତ୍ତ୍ୱ
ଅଙ୍ଗସୀମା ବ୍ରୀଡ଼ାକୁ ଛଡ଼ାଇ ଦେବି ସତ ଯେ ।"

– କୋଟିବ୍ରହ୍ମାଣ୍ଡ ସୁନ୍ଦରୀ (ଉପେନ୍ଦ୍ର ଭଞ୍ଜ)

"କମଳିନୀ ବାସ ତହିଁ ହେଲା ଅନ୍ତରିତ
ଭୁଜେ କୋଳ ଆଚରଣ ହୋଇଲା ତ୍ୱରିତ ଯେ ।
ଉନ୍ମତ୍ତ ବିଶେଷ ପ୍ରସନ୍ନତା ଭଜେ ଯହୁଁ
କପୋତ କଣ୍ଠରୁ ଜାତ ହେଲା ହୁଁ ହୁଁ ହୁଁ ଯେ ।"

– କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ (ଉପେନ୍ଦ୍ର ଭଞ୍ଜ)

"କେତେବେଳେ ଶୁଭେ ଘଣ୍ଟି ଶବଦ
କେତେବେଳେ ଶୁଭେ କପୋତନାଦ
କେତେବେଳେ ଉଡ଼ିନ୍ତି, ମାଲପ୍ରାୟେ ଜଡ଼ନ୍ତି
କାଉତୁକେ ଗଡ଼ନ୍ତି, କରଗାତେ ପୀଡ଼ନ୍ତି ସେ ।"

– ରସକଲ୍ଲୋଳ (ଦୀନକୃଷ୍ଣ ଦାସ)

"କହି ରସଗର୍ଭେ ବାଣୀ । କରେ କର ଧରି ଆଣି
କାନ୍ଧରେ ପକାଇ, ମୁଖେ ମୁଖ ଦେଇ
ଚୁମ୍ବନ୍ତି ରସିକମଣି ସେ କାମିନୀ ।"

– ରସକଲ୍ଲୋଳ (ଦୀନକୃଷ୍ଣ ଦାସ)

"ମାତି ନାନାବନ୍ଧ ମତ୍ତେ । ମଜ୍ଜିଲେ ଆନନ୍ଦ ମତ୍ତେ ।
ମନ୍ମଥ ଶବଦ ଜାତ । ମନ୍ଦ ତହୁଁ କୃତ ଯେ ।
ମିଶି ସ୍ୱୀକାର ବିକାର । ମିଥ୍ୟା ନାନା ଅନିର୍ବାର ।
ମର୍ଷଣେ କେଳିତି ପତି । ମନ୍ଦ ଦମ୍ପତି ଯେ ।"

-ବିଦଗ୍ଧ ଚିନ୍ତାମଣି (ଅଭିମନ୍ୟୁ ସାମନ୍ତସିଂହାର)

"କେ ଭରଜ ଧର କନ୍ଦର ମଧରେ ଖୋଜଇ ହରିଙ୍କି ଭୋଳେ
କେ କୁନ୍ତଳ ବାସାଞ୍ଚଳ ଝାଡ଼ି ଖୋଜେ ପ୍ରେମ ମାଦକ ବିହ୍ୱଳେ ।"

-ପ୍ରେମ ଚିନ୍ତାମଣି (ଅଭିମନ୍ୟୁ ସାମନ୍ତସିଂହାର)

"ଗୁପ୍ତସ୍ଥାନକୁ ଚଳନ୍ତେ ବଳାଇ
ନାହିଁ ନାହିଁ ଶବଦ ପ୍ରକଟଇ ।
ପଡ଼େ କନ୍ଦର୍ପ ରାଜା ଗଡ଼େ ହୁରି
ଉରୁ ଦୁଆରୀ ଯାଉଛନ୍ତି ଧରି ।"

-କୋଳି କଳାନିଧି (ବ୍ରଜନାଥ ବଡ଼ଜେନା)

"ବେନିକର୍ଣ୍ଣେ ଚାଳି ରସନା ବାସ କଲା ଅନ୍ତର
ବେଗେ ଭାଙ୍ଗି ଗଲା ଛଇଲା ଲାଜ ଭୟ ପ୍ରକର ।
ବେନି ଜନଙ୍କର ମାନସ ରତେ ହେଲା ହରଷ
ବେଦାଭିଧାନରେ ନଥିବ ତେତେ ଶୃଙ୍ଗାର ରସ ।"

-ବୀଚକ୍ଷଣା (ବ୍ରଜନାଥ ବଡ଼ଜେନା)

"ସ୍ମର- ଶରାଘାତେ ରତି କାମ ଯୁକ୍ତେ
ମଦନ ସାଗର ଉପଲକ୍ଷି ଗୋ
ଚତୁଃ ଷଷ୍ଠୀ ବନ୍ଧ ବିଚ୍ଛେଦନ ଯାଏ ଘଟି
ଲଳିତ ଜ ଶାସ୍ତ୍ରକୁ ପ୍ରକଟି ଗୋ ।"

- ରାଘବ ବିଳାସ (ଯଦୁମଣି ମହାପାତ୍ର)

ଏହିସବୁ ପଦ-ପଙ୍କ୍ତି ଗୁଡ଼ିକରୁ ରୀତିଯୁଗୀୟ କବିମାନେ ଶୃଙ୍ଗାରୀ ଭାବନା ଓ ଶୃଙ୍ଗାର ଚିତ୍ର ପ୍ରକଟନରେ କେତେ ଯେ କୁଶଳୀ ତାହା ସହଜରେ ଅନୁମେୟ କରିହୁଏ । ରସ ପରିବେଷଣ ଓ ଶୃଙ୍ଗାରରସର ପ୍ରୟୋଗ ଯୋଗୁଁ ହିଁ ରୀତିକାବ୍ୟଗୁଡ଼ିକ ସୌନ୍ଦର୍ଯ୍ୟମୟ, ମାଧୁର୍ଯ୍ୟମୟ, ଆନନ୍ଦମୟ ଓ ରସାଣିତ ହୋଇପାରିଛି ।



# କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ :
# ଅଲୌକିକ କଥା ଓ କଳ୍ପନାର କାବ୍ୟ

'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ମଧ୍ୟଯୁଗୀୟ ରୀତିକାବ୍ୟ ସାହିତ୍ୟର ସର୍ବଶ୍ରେଷ୍ଠ ବିନ୍ଧାଣୀ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଏକ ସଫଳ, କାଳଜୟୀ କାଳ୍ପନିକ କାବ୍ୟକୃତି । କବି ନିଜର ଅପୂର୍ବ କବିତ୍ୱ, ପାଣ୍ଡିତ୍ୟ ଓ ଅଦ୍ଭୁତ କଳ୍ପନାଶକ୍ତି ବଳରେ ବିଚିତ୍ର, ରମଣୀୟ ଅର୍ଥପୂର୍ଣ୍ଣ ଯାଦୁକରୀ ଭାଷା-ଶବ୍ଦର ସଂଯୋଜନା ଓ ଆଳଂକାରିକ ବିନ୍ୟାସ ମାଧ୍ୟମରେ, ସୁମଧୁର ଛନ୍ଦ ଯୋଜନା ଓ ରସମୟ, ସାଙ୍ଗୀତିକ ଆବେଦନ ଭିତରେ ସର୍ବୋପରି କମନୀୟ ବର୍ଣ୍ଣନା ବିଳାସ ମାଧ୍ୟମରେ ଏକ ଅଲୌକିକ, ଐନ୍ଦ୍ରଜାଲିକ କଥା ଓ କଳ୍ପନାକୁ କାବ୍ୟରୂପ ଦେଇଛନ୍ତି । ଏହା ଏକ ଉଚ୍ଚକୋଟୀର ଆଳଂକାରିକ କାବ୍ୟ । କବି ନିଜେ ଏହି କାବ୍ୟର ଶ୍ରେଷ୍ଠତ୍ୱ ସଂପର୍କରେ ତାଙ୍କ 'ଚିତ୍ରକାବ୍ୟ ବନ୍ଧୋଦୟ'ରେ ଲେଖିଛନ୍ତି-

ଛାନ୍ଦ କୋଟି ତାରା ଚନ୍ଦ୍ରମା ପରି
ଯା' ନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।

ଏହି କାବ୍ୟଟି ପ୍ରାଚ୍ୟ ସଂସ୍କୃତ ସାହିତ୍ୟର ମହାନ୍ ସ୍ରଷ୍ଟା ଶ୍ରୀହର୍ଷଙ୍କର 'ନୈଷଧୀୟ ଚରିତ' କାବ୍ୟ ସଙ୍ଗେ ସମକକ୍ଷ । ନୈଷଧୀୟ କାବ୍ୟର ଅନୁପମ ବର୍ଣ୍ଣନାବିଳାସ, ରସବିଳାସ, ସୁମଧୁର ଶବ୍ଦସଂଯୋଜନା ଓ ପଦଯୋଜନା, ଛାନ୍ଦସିକତା, ରାଗ-ରାଗିଣୀ, ସାଙ୍ଗୀତିକ ଓ ଆଳଂକାରିକ କାବ୍ୟଶୈଳୀ ଏହି କାବ୍ୟରେ ପ୍ରତିଫଳିତ । ତେଣୁ କବି ଏ କାବ୍ୟକୁ ନୈଷଧ ପ୍ରାୟ ଗ୍ରହଣ କରିବାକୁ ପାଠକେଙ୍କୁ ନମ୍ର ନିବେଦନ କରିଛନ୍ତି । କବିଙ୍କ ଭାଷାରେ-

"ଏତ ପରାକୃତ କାବ୍ୟ ଛାନ୍ଦ ପ୍ରାନ୍ତ ସତ
ଦୃଷ୍ଟ ଦୃଷ୍ଟାନ୍ତର ଏଥି ଅଛି ବିଶେଷତ ।
ଘେନ ନୈଷଧ ପରାୟେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।"

(କୋ: ବ୍ର: ସୁ:- ଏକାଦଶ ଛାନ୍ଦ, ପଦ-୩୧)

ଏହି କାବ୍ୟଟି ୩୫ ଗୋଟି ଛାନ୍ଦ ବିଶିଷ୍ଟ। ଏହାର ପ୍ରଥମ ଛାନ୍ଦଟି କବିଙ୍କର ଅପୂର୍ବ ଭକ୍ତିମତ୍ତା, ଜଗନ୍ନାଥ ପ୍ରାଣତା, ସ୍ନାନଯାତ୍ରାର ବର୍ଣ୍ଣନା ଓ ସ୍ୱକୀୟ କାବ୍ୟାଦର୍ଶର ପ୍ରତିଫଳନ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ। କବି ଉପେନ୍ଦ୍ର ମୁଖ୍ୟତଃ ରାମଭକ୍ତ ଥିଲେହେଁ, ନିଜର ପୂର୍ବସୂରୀମାନଙ୍କର ଆଦର୍ଶରେ ଓଡ଼ିଶାର ମହାନ୍ ଆଧାତ୍ମିକ କ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ର ଏବଂ ଏହି କ୍ଷେତ୍ରର ଅଧିପତି ମହାପ୍ରଭୁ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ମହିମା ପ୍ରକଟନ କରିଛନ୍ତି। କବି ଧନଞ୍ଜୟ ଭଞ୍ଜ ତାଙ୍କ 'ଅନଙ୍ଗରେଖା' କାବ୍ୟର ପ୍ରଥମ ଛାନ୍ଦରେ ନୀଳାଚଳ କ୍ଷେତ୍ରର ଅଧିପତି ଜଗନ୍ନାଥଙ୍କର ବନ୍ଦନା କରି ଲେଖିଛନ୍ତି-

ଜୟ ଜୟ ନୀଳାଚଳ-ପତି ମୁକୁନ୍ଦ
ସନ୍ଥ - ଜନବନ୍ଧୁ ପ୍ରଭୁ ପରମାନନ୍ଦ।

ଏହି ଆଦର୍ଶରେ କବି ଉପେନ୍ଦ୍ର, କାବ୍ୟାରମ୍ଭରେ ଉତ୍କଳୀୟ ଧର୍ମ-ଦର୍ଶନର ଆରାଧ ଦେବତା ପ୍ରଭୁ ଜଗନ୍ନାଥ ଏବଂ ତାଙ୍କ ଅଧିଷ୍ଠାନ କ୍ଷେତ୍ର ଶଙ୍ଖକ୍ଷେତ୍ର ଶ୍ରୀକ୍ଷେତ୍ରର ମହିମା ବର୍ଣ୍ଣନା କରିଛନ୍ତି। କବିଙ୍କ ଭାଷାରେ-

"ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ ହେ।
ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ
ସାକ୍ଷୀ ପକ୍ଷୀ କରଟ-ପ୍ରତିମା ରୂପେ ଥାଇ ଯେ।
ଯେ ବ୍ରହ୍ମହତ୍ୟା - ପାତକ- ନିପାତକ ମହୀ
କପାଳ ମୋଚନ ତ୍ରିଲୋଚନ ସାକ୍ଷୀ ଯହିଁ ଯେ।"

**(କୋ: ବ୍ର: ସୁ: ପ୍ରଥମ ଛାନ୍ଦ, ପଦ-୧-୨)**

ଏହି ଶ୍ରୀକ୍ଷେତ୍ର ହେଉଛି- ଭାରତ ବର୍ଷର ପବିତ୍ର ଧାମ। ସ୍ୱୟଂ ଭଗବାନ ନାରାୟଣ ଏହି ପୁରୁଷୋତ୍ତମ କ୍ଷେତ୍ରରେ 'ଜଗନ୍ନାଥ' ରୂପରେ ଦେହଧାରଣ କରିଛନ୍ତି। ଏହି ଜଗନ୍ନାଥ ହେଉଛନ୍ତି- ମୁକ୍ତି ଓ ଭକ୍ତି ପ୍ରଦାୟକ। ସେ ଜୀବମାନଙ୍କୁ ସାରୂପ୍ୟ, ସାମୀପ୍ୟ, ସାଯୁଜ୍ୟ ମୁକ୍ତି ପ୍ରଦାନ ସହିତ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଆଦି ଚାରିଜାତିଙ୍କୁ ଧର୍ମ-ଅର୍ଥ-କାମ-ମୋକ୍ଷ ଆଦି ଚତୁଃବର୍ଗ ଫଳପ୍ରଦାନ କରିଥାନ୍ତି। ଯେଉଁଥି ପାଇଁ କବି ଲେଖିଛନ୍ତି-

"ସେ କମ୍ବୁକଟକ ରାଜା ସ୍ୱୟଂ ଜଗନ୍ନାଥ
ଚାରି ବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ।"

**(ପ୍ରଥମ ଛାନ୍ଦ, ପଦ-୧୨)**

ଜଗନ୍ନାଥ ଯେହେତୁ ସ୍ୱୟଂ ଲୀଳାମୟ ପୁରୁଷ, ସେ ସ୍ନାନଯାତ୍ରା ଅବକାଶରେ ନିଜର ଦଶାବତାର ଲୀଳା ପ୍ରଦର୍ଶନ କରିଥାନ୍ତି । ଅପାର, ଆଲୌକିକ ମହିମା ଓ ଅଖଣ୍ଡ ଶକ୍ତିର ଅଧିକାରୀ କୋଟି-ବ୍ରହ୍ମାଣ୍ଡର ଈଶ୍ୱର ପ୍ରଭୁ ଜଗନ୍ନାଥଙ୍କ ଠାରୁ କବି କୃପାଭିକ୍ଷା କରିଛନ୍ତି, ଦୁର୍ଲ୍ଲଭ ସ୍ନାନଯାତ୍ରାର ବର୍ଣ୍ଣନା ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ରଚନା ପାଇଁ । କବିଙ୍କ ଭାଷାରେ-

"ଅରି-ଦର-କର ବିଭୋ ଅରି ଦର-କର
ଯୁଗେ ଯୁଗେ ଧର ନାନା ବିଧ ଅବତାର ହେ ।

× × ×

ରଚିବି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ଚରିତ
ସୁଜାତି ସୁମନା ପରି ହୋଇବ ଏ ଗୀତ ।"

(ପ୍ରଥମ ଛାନ୍ଦ- ପଦ ୫୭-୬୦)

କବି ଉପେନ୍ଦ୍ର ଏହି କାବ୍ୟର 'ଦ୍ୱିତୀୟ ଛାନ୍ଦ'ରେ ଚମ୍ପାନଗରୀର ମନୋରମ ବର୍ଣ୍ଣନା ସହିତ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଅଲୌକିକ ଜନ୍ମ ବୃତ୍ତାନ୍ତର ବର୍ଣ୍ଣନା କରିଛନ୍ତି । ଚମ୍ପା ନଗରୀର ରାଜା ବିଶ୍ୱାନନ୍ଦ ବ୍ରହ୍ମାବର ପ୍ରଦତ୍ତ ଦିବ୍ୟ କନ୍ୟା ରତିମର୍ଦ୍ଦାଙ୍କ ସହିତ ସମ୍ଭୋଗ କାରଣରୁ ଏକ ଦିବ୍ୟକନ୍ୟା ଜାତ ହେଲା । ବ୍ରହ୍ମାଙ୍କ ପ୍ରସାଦରୁ ଜନ୍ମଲାଭ କରିଥିବାରୁ ଏବଂ ସମଗ୍ର ବ୍ରହ୍ମାଣ୍ଡର ଅତୁଳନୀୟା ରୂପବତୀ ହୋଇଥିବାରୁ ଏହି କନ୍ୟାର ନାମ ଦିଆଯାଇଥିଲା- କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ । ଏହି ଦେବକନ୍ୟାର ସଖ୍ୟତା ଓ ସହଚର୍ଯ୍ୟ ପାଇଁ ସ୍ୱୟଂ ବ୍ରହ୍ମା ନିଜର ବାହନ ହଂସ କନ୍ୟାକୁ 'କାଦମ୍ବିନୀ' ରୂପରେ ମର୍ତ୍ତ୍ୟକୁ ପଠାଇଥିଲେ । କେବଳ ସେତିକି ନୁହେଁ, ସ୍ୱୟଂ ଶଚୀଦେବୀ ମଧ୍ୟ 'ଶଚୀକଳା' ରୂପରେ ଏବଂ ଦେବୀ ଶାରଦା 'ବାଣୀଜା' ରୂପ ଧାରଣ କରି ରାଜକନ୍ୟାର ସଖୀ ହେବାପାଇଁ ଧରାବତରଣ କଲେ । 'ତୃତୀୟ ଛାନ୍ଦ'ରେ କବି ନାୟିକାର ବାଲ୍ୟ, ପୌଗଣ୍ଡର ବର୍ଣ୍ଣନା ସହିତ ଯୌବନାବସ୍ଥାରେ ନାୟିକାର ଦୈହିକ ରୂପଶୋଭାର କମନୀୟ, ରସମୟ ବର୍ଣ୍ଣନା କରିଛନ୍ତି । ନାୟିକା ଯୌବନରେ ହୋଇଉଠିଛି- ଲାବଣ୍ୟମୟୀ, ଐଶ୍ୱର୍ଯ୍ୟମୟୀ, କୋଟି ବ୍ରହ୍ମାଣ୍ଡର ଅପରୂପା ସୁନ୍ଦରୀ । ଏହି ସୁନ୍ଦରୀର ରୂପଶୋଭା ସଙ୍ଗେ କୌଣସି ଉପମା ସରିହେବ ନାହିଁ । ଏହାର ଅପରୂପ ଲାବଣ୍ୟ ଯୋଗୀଜନମାନଙ୍କର ମନକୁ ହରଣ କରି ସେମାନଙ୍କର ଧୈର୍ଯ୍ୟ ଓ ସଂଯମତାକୁ ଧ୍ୱଂସ କରିଦେବ । ସଂସାରରେ ଆଉ ଯୁବସୃଷ୍ଟି ରହିବ ନାହିଁ । ତେଣୁ କବି ଲେଖିଛନ୍ତି-

"ଭଲା ଯୌବନ ସୃଷ୍ଟି ସଜାଡ଼ିଲା ।
ଆଗ ଉପମା ସୃଷ୍ଟି ଉଜାଡ଼ିଲା ।
ଯୋଗୀ-ସୃଷ୍ଟିରେ ପ୍ରଳୟ ବିହବ
ଯୁବା ସୃଷ୍ଟି ଆଉ କେହି ନ' ରହିବ ।

(ତୃତୀୟ ଛାନ୍ଦ, ପଦ-୨୦)

'ଚତୁର୍ଥଛାନ୍ଦ'ରେ ମଗଧର ରାଜଧାନୀ ପୁଷ୍ପପୁରର ମନୋହର ବର୍ଣ୍ଣନା ସହିତ ରାଜପୁତ୍ର ପୁଷ୍ପକେତୁର ରୂପ-ଗୁଣର ବର୍ଣ୍ଣନା କରାଯାଇଛି । କବି ପୁଷ୍ପପୁର ନଗରୀର ବର୍ଣ୍ଣାଢ଼୍ୟ, ସ୍ୱର୍ଣ୍ଣିମ ଶୋଭାର ବର୍ଣ୍ଣନା କରି ଲେଖିଛନ୍ତି-

ରାଜଧାନୀ ପୁଷ୍ପପୁର । ସହଜେ କୁନ୍ତଳ ପର ।
ଚୋଳ, କାଞ୍ଚି ତା'ର ତଳ । ଏଡ଼େ ମଞ୍ଜୁଳ ସେ ॥
ବିଦଗ୍ଧ ରାକ୍ଷସ ପୁରୀ । ଅସମାନ ମାନୁ କରି ।
ନଗର ମାନଙ୍କର ମୋକ୍ଷ । ତହିଁକି ଲକ୍ଷ୍ୟ ଯେ ॥
ଛଦ୍ମ ନୁହଁଇ ଏ ପୁଣ । ସଦ୍ମ ରତନେ ନିର୍ମାଣ ।
ପଦ୍ମ ପ୍ରକାଶରୁ ଜାଣି । ଦିବା-ରଜନୀ ଯେ ॥

(ଚତୁର୍ଥ ଛାନ୍ଦ - ପଦ ୭-୯)

ଏହି ପୁଷ୍ପପୁର ନଗରୀ ଏଭଳି ସୁନ୍ଦର, ମନୋହର ଯେ, ଚୋଳ, କାଞ୍ଚି ଆଦି ନଗରୀର ସୌନ୍ଦର୍ଯ୍ୟ ଏହା ପାଖରେ ତୁଚ୍ଛ ପଡ଼ିଯିବ । ହୀରା, ନୀଳା, ସ୍ୱର୍ଣ୍ଣ ଆଦିରେ ନିର୍ମିତ ଏହି ନଗରୀର ସୌନ୍ଦର୍ଯ୍ୟ ସ୍ୱର୍ଣ୍ଣ ଲଙ୍କାପୁରୀ ଠାରୁ ମଧ୍ୟ ଆହୁରି ମନୋରମ । କବି କଳ୍ପନା କରିଛନ୍ତି- ଲଙ୍କାପୁରୀ ସୌନ୍ଦର୍ଯ୍ୟରେ ପୁଷ୍ପପୁର ସହ ସମକକ୍ଷ ନ' ହେବାରୁ ଅଭିମାନରେ ଭସ୍ମ ହୋଇଯାଇଛି । ରତ୍ନ, ମଣି, ମାଣିକ୍ୟରେ ନିର୍ମିତ ଏହି ନଗରୀର ତେଜ ଓ ଔଜ୍ଜ୍ୱଲ୍ୟ ଭିତରେ କେତେବେଳେ ଦିନ ଅବା କେତେବେଳେ ରାତ୍ର ହୁଏ ତାହା ଜଣାପଡ଼େ ନାହିଁ । କେବଳ ପଦ୍ମ ଫୁଟିବାରୁ ହିଁ ଦିନ ଯାହା ଜଣାପଡ଼େ । କେବଳ ସେତିକି ନୁହେଁ, ଏହି ନଗରୀର ବୈଦୁର୍ଯ୍ୟମୟ ତେଜରେ ସୂର୍ଯ୍ୟଙ୍କର ତେଜ ମଧ୍ୟ ହୀନପ୍ରଭ ହୋଇଯାଏ । ଏହି ନଗରୀର ଜଳାଶୟଗୁଡ଼ିକ ମଧ୍ୟ ଗଙ୍ଗାଜଳ ପରି ପବିତ୍ର । ଏପରି ଏକ ପବିତ୍ର, ମନୋହର ନଗରୀର ଅଧିପତି ରାଜା ଦୀପ୍ତିସାରଙ୍କର ପୁତ୍ର ହେଲେ- କୁମାର ପୁଷ୍ପକେତୁ । କୁମାର ପୁଷ୍ପକେତୁ ସକଳ ଗୁଣ ଓ ବିଦ୍ୟାର ଅଧିକାରୀ । ସେ ଦାନୀ, ଗୁଣୀ, ନ୍ୟାୟବନ୍ତ, ମହାଧାର୍ମିକ । ଏକଦା ରାଜକୁମାରଙ୍କ ଅପୂର୍ବ ବୀଣା ଝଙ୍କାରରେ ମୁଗ୍ଧ ହୋଇ ମହର୍ଷି ନାରଦ ତାଙ୍କୁ ବର ପ୍ରଦାନ କଲେ- 'ତୁମେ ଅପୂର୍ବ ଦିବ୍ୟ ସୁନ୍ଦରୀ ରମଣୀ ପ୍ରାପ୍ତ ହେବ ।' ଯେଉଁ ସୁନ୍ଦରୀ

ଥିଲା- ରତିମର୍ଦ୍ଧା କନ୍ୟା- କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ । ତେଣୁ ଏ କାବ୍ୟର ନାୟକ ଏବଂ ନାୟିକା ବିଧି ନିର୍ଦ୍ଦେଶରେ ହିଁ ନିଜର ଭାଗ୍ୟ ଭବିଷ୍ୟତକୁ ଗ୍ରହଣ କରି ନେଇଛନ୍ତି । ଏହାପରେ କବି 'ପଞ୍ଚମ ଛାନ୍ଦ'ରେ ନାୟିକାର ରୂପ ଶୋଭାର ବର୍ଣ୍ଣନା, 'ଷଷ୍ଠଛାନ୍ଦ'ରେ ବସନ୍ତ ଋତୁର କମନୀୟ ବର୍ଣ୍ଣନା କରିଛନ୍ତି । 'ସପ୍ତମ ଛାନ୍ଦ' ଠାରୁ ଆରମ୍ଭ କରି 'ତ୍ରୟୋତ୍ରିଂଶ ଛାନ୍ଦ' ପର୍ଯ୍ୟନ୍ତ ନାୟକ ପୁଷ୍ପକେତୁ ଓ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ପ୍ରେମାନୁରାଗ, ମିଳନ ଅଭୀପ୍ସା, ବିରହ ଅନୁଚିନ୍ତା, ଐନ୍ଦ୍ରିଜାଲିକ ପରିବେଶ ମଧ୍ୟରେ ନାୟକ-ନାୟିକାଙ୍କ ମିଳନ, ମାୟା ଅନ୍ତର୍ହିତ ପରର ବିରହଦଶା ଓ କାମଭାବନାର ବର୍ଣ୍ଣନା, ନାୟିକା ପାଖକୁ ନାୟକର ପ୍ରେମପତ୍ର ପ୍ରେରଣ, ପ୍ରେମପତ୍ରରେ ନାୟିକାର ଅପୂର୍ବ ଶୋଭା ବର୍ଣ୍ଣନା, ନାୟିକାର ମିଳନ ଉତ୍କଣ୍ଠା, ରାଜା ବିଶ୍ୱାନନ୍ଦଙ୍କର କନ୍ୟାର ବିବାହ ପ୍ରତିଯୋଗୀତା ଆୟୋଜନ, ଚିତ୍ର ଚାମରୀ ମୃଗ ଓ ରାଜକୁମାରଙ୍କର ମୃଗ ପୁଚ୍ଛ କାଟିବା ପ୍ରସଙ୍ଗ ରାଜା ବିଶ୍ୱାନନ୍ଦ କନ୍ୟାର ବିବାହ ପାଇଁ ଜ୍ୟୋତିଷ ଡକାଇ ତିଥି, ନକ୍ଷତ୍ର ଦିନ, କାଳ ନିର୍ଣ୍ଣୟ ଆଦି ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

'ଚତୁତ୍ରିଂଶ ଛାନ୍ଦ'ରେ ସଖୀମାନଙ୍କ ଦ୍ୱାରା ମଧୁଶଯ୍ୟା ଗୃହମଣ୍ଡନର ଚିତ୍ର ଏବଂ 'ପଞ୍ଚତ୍ରିଂଶ ଛାନ୍ଦ'ରେ ରାଜକୁମାର ପୁଷ୍ପକେତୁ ଓ ରାଜକୁମାରୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ବିବାହ ଉତ୍ସବ ବର୍ଣ୍ଣିତ ହୋଇଛି । ଏହିସବୁ କାବ୍ୟିକ ବର୍ଣ୍ଣନା ଭିତରେ କବି ଉପେନ୍ଦ୍ରଙ୍କର ଅପୂର୍ବ କଳା ପାଟବତା, ବର୍ଣ୍ଣନା ନୈପୁଣ୍ୟ, କଳ୍ପନା ଚାତୁରୀ, ଛନ୍ଦମାଧୁରୀ, ସଙ୍ଗୀତ ଓ ରସ ପରିବେଷଣ କୁଶଳତା, ବିଚିତ୍ର, ରମଣୀୟ ଅର୍ଥପୂର୍ଣ୍ଣ ଶବ୍ଦ ଯୋଜନା ଓ ଶବ୍ଦାଡ଼ମ୍ବର, ଅଳଙ୍କାର ପ୍ରୟୋଗରେ ଧୂରୀଣତା ଫୁଟି ଉଠିଛି ।

## 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ବର୍ଣ୍ଣନା ଚାତୁରୀ:-

ଉପେନ୍ଦ୍ର କାବ୍ୟ ସାହିତ୍ୟର ପ୍ରମୁଖ ବୈଶିଷ୍ଟ୍ୟ ହେଲା- କବିଙ୍କର ବର୍ଣ୍ଣନା ଚାତୁରୀ ବା ବର୍ଣ୍ଣନାଗତ ଦକ୍ଷତା । କାବ୍ୟର କଥାବସ୍ତୁ, ଭାବବସ୍ତୁ ଓ ଚରିତ୍ର ଆଦିକୁ ସେ ଅତି ନିପୁଣତାର ସହିତ ବର୍ଣ୍ଣନା କରିଛନ୍ତି । ମୋଟାମୋଟି ଭାବରେ ନାୟକ-ନାୟିକାର ରୂପ ବର୍ଣ୍ଣନା, ଉପବନ ବର୍ଣ୍ଣନା, ନଗର ବର୍ଣ୍ଣନା, ଋତୁଚକ୍ରର ବର୍ଣ୍ଣନା, ପ୍ରକୃତି ବର୍ଣ୍ଣନା, ଶୃଙ୍ଗାର ଚିତ୍ର ଓ ଆଳଙ୍କାରିକ ବର୍ଣ୍ଣନାରେ କବିଙ୍କର ଅପୂର୍ବ ବର୍ଣ୍ଣନାଗତ ଦକ୍ଷତା ଓ କଳାକୁଶଳତା ଫୁଟି ଉଠିଛି ।

କବି ଯୌବନ କାଳରେ ନାୟିକାର ଅପରୂପ ଦୈହିକ ଶୋଭା ଓ ନବ ଅଙ୍କୁରିତ ସ୍ତନ ଯୁଗଳର କମନୀୟ ବର୍ଣ୍ଣନା କରିଛନ୍ତି । ନାୟିକାର ସ୍ତନ ଯୁଗଳ ନାରିକେଳ ଓ ଗୁବାଳ (ଗୁଆ) ପରି ଶୋଭାଯୁକ୍ତ ହୋଇ ପୁରୁଷ ପୁଙ୍ଗବ ମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟାଉଛି । କବିଙ୍କ ଭାଷାରେ-

ସୁମମାକୁ ଉରରୁ କରି ଧିକ
ସୁଷମାକୁ ବଢ଼ାଇଲା ଅଧିକ
ପୁନ୍ନାଗପୁଗ ପରାୟେ ରଞ୍ଜନ
ପୁନ୍ନାଗ-ପୁଙ୍ଗଧୈର୍ଯ୍ୟ ବିଭଞ୍ଜନ ।

(ତୃତୀୟ ଛାନ୍ଦ, ପଦ-୬-୭)

ଏହି ସ୍ତନଯୁଗଳ କ୍ରମେ ବର୍ଦ୍ଧିତ ହୋଇ ମେରୁ ପର୍ବତର ସ୍ୱର୍ଗୀୟ ସୁଷମାରେ ବିଭୂଷିତ ହୋଇ ସର୍ବତ୍ର କାମଭାବନା ବା ଶୃଙ୍ଗାରରସ ଅପୂର୍ବ ପ୍ରବାହ ସୃଷ୍ଟି କଲା । ପୁନଶ୍ଚ କବିଙ୍କ କଳ୍ପନାରେ- ଯୌବନରେ ରାଜକନ୍ୟାର ଜଘନ ଦେଶ କଦଳୀ ବୃକ୍ଷ ଠାରୁ ଆହୁରି ଶୋଭାମୟ ଦିଶିବାରୁ କଦଳୀ ବୃକ୍ଷ ସତେ ଯେପରି ଲଜ୍ଜାପାଇ ଅଧୋମୁଖ ହୋଇରହିଲା । ଜବାପୁଷ୍ପ ନାୟିକାର ଅଧରରଙ୍ଗ ସହ ସମାନ ନ' ହେବାରୁ କଳାପଡ଼ିଗଲା । ନାୟିକାର ଅଙ୍ଗବଲ୍ଲରୀର ସୁବାସ ଏବଂ ଶୀତଳତା ସହ ସମାନ ନହୋଇ ଚନ୍ଦନ କାଠ ନିଜକୁ ହେୟ ମନେକରି ଦୁଃଖରେ ଇନ୍ଧନ ବା ଜାଳେଣୀ କାଠ ହୋଇଗଲା । ନାୟିକାର ଦାନ୍ତ ଗୁଡ଼ିକର ଉଜ୍ଜ୍ୱଳତା ପାଖରେ ମୁକ୍ତା ମିଳନ ପଡ଼ିଯିବାରୁ ଶାମୁକା ଗର୍ଭରେ ଯାଇ ଆଶ୍ରୟ ନେଲା । ତେଣୁ କବି ଲେଖିଛନ୍ତି-

"ଫଳେ ଅଧୋମୁଖ ହେଲା କଦଳୀ
ଜବା କାଳିମା ରଙ୍ଗେ ଶୋଭାଦଳି
ଖେଦୁଁ ଇନ୍ଧନ ହୋଇଲା ଚନ୍ଦନ
କଳାମୁକୁତା ଶାମୁକେ ସଦନ ।"

(ତୃତୀୟ ଛାନ୍ଦ- ପଦ- ୩୫)

ଯୌବନରେ ନାୟିକାର କଣ୍ଠ ଶଙ୍ଖଠାରୁ ଆହୁରି ସୁନ୍ଦର ଦିଶିବାରୁ ବିଷ୍ଣୁ ନିଜର ଶଙ୍ଖକୁ ଧରି ସମୁଦ୍ର ଗର୍ଭରେ ଏବଂ ନାୟିକାର କଟୀ ଦେଶ ଡମ୍ବରୁ ଠାରୁ ଅଧିକ ସରୁ ଏବଂ ଆକର୍ଷଣୀୟ ଦିଶିବାରୁ ଶିବ ନିଜର ଡମ୍ବରୁକୁ ଲୁଚାଇବା ପାଇଁ ବ୍ୟାଘ୍ର ଚର୍ମ ଭିତରେ ଆଶ୍ରୟ ନେଲେ । କବିଙ୍କ ଭାଷାରେ-

"କମ୍ବୁ ଡମ୍ବରୁ ବିଷ୍ଣୁ ଶିବେ
ଜାଣନ୍ତି କି କରିବୁଁ ଏବେ ।
ଯୌବନ କୁନ୍ଦେ କୁନ୍ଦ ହେଲା
କାମ ହେମ-ଯନ୍ତ୍ର ପିତୁଳା

ସେ ଘେନି ନିଜ ଧୈର୍ଯ୍ୟ ବାଧ

ଏକ ଶୟନ ସିନ୍ଧୁ ମଧ ।"

(ପଞ୍ଚମ ଛାନ୍ଦ, ପଦ-୮-୯)

ଯୌବନରେ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଏପରି ଅପରୂପ ଲାବଣ୍ୟମୟୀ ଓ ଦିବ୍ୟ ଶୋଭାରେ ବିମଣ୍ଡିତା ହୋଇଛି ଯେ, ସ୍ୱୟଂ ଲକ୍ଷ୍ମୀ ଏବଂ ପାର୍ବତୀଙ୍କ ସୌନ୍ଦର୍ଯ୍ୟ ତା' ପାଖରେ ତୁଚ୍ଛ ହୋଇଯାଇଛି ।

ଏପରିକି ସୌନ୍ଦର୍ଯ୍ୟର ଦେବୀ ସ୍ୱୟଂ ରତି ଦେବୀ ମଧ ଏ ନାୟିକାର ସୌନ୍ଦର୍ଯ୍ୟ ସହିତ ରତିଏ ପରିମାଣର ସମାନ ମଧ ହୋଇ ପାରି ନାହାନ୍ତି । କବିଙ୍କ ଭାଷାରେ-

"ନୃପକୁମାରୀ, ତୋ ସଙ୍ଗେ ଶୋଭା ବିବାଦ ନ' ଆଦରି

ସିନ୍ଧୁ ନନ୍ଦନା ମଦନାରିନାରୀ

ପ୍ରଧାନ କରି ସେ କମଳା- ଗଉରୀ ନାମ ମିତ୍ରତା ବିଚାରି

ଯେଉଁ ପ୍ରମଦା ଦିବ୍ୟ ରୂପ ବହି

ରତି ଏ ବୋଲି ଦୃଷ୍ଟାନ୍ତରେ କହି

ରତି ଏ ସେ ଯହିଁ ତୁଳନା ନୋହିଲା ଲଳନା ତୋ ପରା ତୁହିରେ ।"

(ଦ୍ୱାବିଂଶ ଛାନ୍ଦ, ପଦ-୩)

କେବଳ ନାରୀରୂପେ ବର୍ଣ୍ଣନା ନୁହେଁ; ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟ ଚିତ୍ରଣ, ପ୍ରଭାତ ଓ ସନ୍ଧ୍ୟାର କମନୀୟ ବର୍ଣ୍ଣନା, ନଗର ବର୍ଣ୍ଣନା, ଉପବନ ବର୍ଣ୍ଣନା, ସରୋବର ବର୍ଣ୍ଣନା ଓ ବିଭିନ୍ନ ଋତୁର ଚିତ୍ରଣରେ କବିଙ୍କର ବର୍ଣ୍ଣନାଗତ ଦକ୍ଷତା ଓ କଳା ପାଟବତା ଫୁଟି ଉଠିଛି । କବି ଉପେନ୍ଦ୍ର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ଷଷ୍ଠ ଛାନ୍ଦରେ ନବ ବସନ୍ତର ଅତି କମନୀୟ, ରସମୟ, ମଞ୍ଜୁଳ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ଅତି ରସମୟ ବସନ୍ତ ସମୟ ବିଚିତ୍ର ପ୍ରମେୟ ତାହାର

ମିତ୍ର ଅନଙ୍ଗଙ୍କୁ ପ୍ରବଳ କରାଇ ଆଚରି ଚର୍ଚ୍ଚାରୀ- ବିହାର

ଆଗତେ, ଆରୋହିଲା ନାଗେଶ୍ୱରକୁ ।

ଋତୁରାଜ ପଦୁଁ ସେ ରାଜ ଘେନିଲା ଚାହିଁ ପ୍ରଫୁଲ୍ଲ କେଶରକୁ ।"

ବସନ୍ତ ସମୟ ଉପଗତ ହୁଅନ୍ତେ, ବସନ୍ତ ତା'ର ମିତ୍ର ଅନଙ୍ଗ ବା କାମଦେବଙ୍କ ସହିତ ଧରାରେ କାମବାସନାକୁ ଉଦ୍ଦୀପିତ କରାଇ ଆନନ୍ଦର ବିଚିତ୍ର ଭାବର ଉଦ୍ରେକ

କରାଏ । ଋତୁରାଜ ବସନ୍ତ ସତେ ଯେପରି ନାଗେଶ୍ୱର ପୁଷ୍ପ ରୂପକ ହସ୍ତୀ ଉପରେ ଆରୋହଣ କରି ନାଗେଶ୍ୱର ଫୁଲର ପରାଗରେ ଧରାରେ ଫଗୁଖେଳ କରିଥାନ୍ତି । ଚାରୁ ବସନ୍ତର ଆଗମନୀ ଧରାକୁ ସୁ-ଶୋଭିତ ଓ ମାଧୁର୍ଯ୍ୟ ମଣ୍ଡିତ କରିଥାଏ । କବି ଉପେନ୍ଦ୍ର ତାଙ୍କର ଅନ୍ୟତମ କାଞ୍ଚନିକ କାବ୍ୟ 'ଲାବଣ୍ୟବତୀ'ରେ ମଧ ଚାରୁ ବସନ୍ତର ମଞ୍ଜୁଳ ବର୍ଣ୍ଣନା କରି ଲେଖିଛନ୍ତି-

"ମଳୟ-ଶିଖରୀ ଶିରୀ ଚୋରି କରି ବହିଲାଣି ମନ୍ଦ-ସମୀର
ସୁମନାଙ୍କ ବାସ ଚୋରାଇ ନେବଟି ବୋଲି କହିଲାଣି ଭ୍ରମର ।"

କେବଳ ବସନ୍ତ ଋତୁ ନୁହେଁ, ବର୍ଷା, ଶୀତ, ଗ୍ରୀଷ୍ମ ଆଦି ବିଭିନ୍ନ ଋତୁର ବର୍ଣ୍ଣନା କବି କରିଛନ୍ତି । କବି କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର 'ପଞ୍ଚବିଂଶ ଛାନ୍ଦ'ରେ ଗୋଟିଏ ପଦ ବା ପଙ୍‌କ୍ତି ଭିତରେ ଅଦ୍ଭୁତ ଶବ୍ଦ ବିନ୍ୟାସ କୌଶଳ, ବିଚିତ୍ର ରମଣୀୟ ଅର୍ଥ ଓ ବିଭିନ୍ନ ରାଗର ପ୍ରୟୋଗ ପୂର୍ବକ ବର୍ଷା, ଶୀତ, ଗ୍ରୀଷ୍ମ- ଏହି ତିନି ଋତୁର ମଞ୍ଜୁଳ ଏବଂ ପାଣ୍ଡିତ୍ୟ ପୂର୍ଣ୍ଣ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ଆସାର ସଘନ କାଳ ହେଲା ଉଦୟ
ଅସିତ ପରବଳରୁ ଦରଶମୟ ।
ସ୍ତନିତ ହିଁ ସ୍ଫୁଟ କଳକଣ୍ଠ ସରୁତ
ଅଚିର ପ୍ରଭାହିଁ ତା'ର ଦିଶେ ଦଶେତ ।"

**(ପଞ୍ଚବିଂଶ ଛାନ୍ଦ, ପଦ-୧-୨)**

ଏହି ଗୋଟିଏ ପଦ ଭିତରେ ବିଚିତ୍ର ରମଣୀୟ, ଅର୍ଥ ପ୍ରକାଶିତ ହୋଇ ତିନି ଗୋଟି ଋତୁର ଚିତ୍ର ପ୍ରକଟିତ ହୋଇଛି ।

ଏହାର ପ୍ରଥମ ଅର୍ଥ ହେଲା- ଅବିରତ, ବାରି ଧାରାପାତ ଘଟିବାରୁ ସମଗ୍ର ଧରା କୃଷ୍ଣମୟ ହୋଇ ଅମାବାସ୍ୟାର ଅନ୍ଧକାର ପରି ଭ୍ରମ ସୃଷ୍ଟି କଲା । ବର୍ଷା କାଳ ଉଦୟ ହେବାରୁ ସବୁ ଆଡ଼େ ମେଘର ଗର୍ଜନ ଶୁଣାଗଲା, ମୟୁରମାନେ ଆନନ୍ଦରେ ରାବ କଲେ, ସର୍ବତ୍ର ବିଜୁଳିର ଚମକ ଦେଖାଗଲା । ପୁନଶ୍ଚ- ଏହି ପଦଟିକୁ ଭାଙ୍ଗି ପ୍ରତ୍ୟେକ ପାଦ ଆରମ୍ଭରୁ ଗୋଟିଏ କରି ଅକ୍ଷର ଊଣାକଲେ ଅନ୍ୟ ଏକ ଅର୍ଥ ପ୍ରକାଶିତ ହେବ । ଯଥା-

ସାରସ ଘନ କାଳ ହେଲା ଉଦୟ
ସିତ ପରବଳରୁ ଦରଶମୟ ।

ଏଠାରେ ଆଦ୍ୟଶବ୍ଦ 'ଆ'କୁ ବାଦ୍ ଦେବାରୁ 'ସାରସ ଘନ' ଅବା ସାରସଘ୍ନ ହେବ । ଏହି ସାରସଘ୍ନ ବା ପଦ୍ମବନ ବିନାଶକାରୀ ହେଲା- ଶୀତ । ତେଣୁ ଶୀତ କାଳ ଉଦୟ ହେବାରୁ ପ୍ରବଳ ଶୀତ ଅନୁଭୂତ ହେଲା । ଟଗର ଜାତୀୟ ଧବଳ ପୁଷ୍ପମାନେ ଫୁଟିଲେ, ତାରାମାନେ ଆକାଶରେ ଉଜ୍ଜ୍ୱଳ ଦିଶିଲେ, ସର୍ବତ୍ର କୁହୁଡ଼ିର ଆସ୍ତରଣ ଶଙ୍ଖର ଭ୍ରମ ସୃଷ୍ଟି କଲା । ପୁଣି- ଏହି ପଦଟିରୁ ପ୍ରତ୍ୟେକ ପାଦ ଆରମ୍ଭରୁ ଦୁଇଟି କରି ଅକ୍ଷର ଉଣା କଲେ ଅନ୍ୟ ଏକ ଅର୍ଥ ପ୍ରକାଶିତ ହେବ ଅର୍ଥାତ୍- ଗ୍ରୀଷ୍ମ ଋତୁର ଭାବ ପ୍ରକଟିତ ହେବ । ଯଥା-

"ରସଘନ କାଳ ହେଲା ଉଦୟ
ତାପର ବଳରୁ ଦରସମୟ ।"

ଏଠାରେ 'ସା' ଅକ୍ଷରକୁ ବାଦ୍ ଦିଆଯିବାରୁ ତାହା ରସଘନ ବା ରସଘ୍ନ ହୋଇଛି । ଏହି ରସଘନ ବା ରସଘ୍ନ ହେଉଛି- ରସର ହରଣକାରୀ- ଗ୍ରୀଷ୍ମକାଳ । ଗ୍ରୀଷ୍ମକାଳର ଆବିର୍ଭାବ ହେବାରୁ ଗ୍ରୀଷ୍ମର ପ୍ରଚଣ୍ଡ ତେଜ ସର୍ବତ୍ର କଷ୍ଟ ଏବଂ ଭୀତିର ସଞ୍ଚାର କରାଇଲା । କୋଇଲି ମାନଙ୍କର କଣ୍ଠସ୍ୱର ବା ରାବ କ୍ରମଶଃ କ୍ଷୀଣ ହୋଇ ଆସିଲା । ଅଗ୍ନିର ତେଜ ମଧ ପର୍ବତ ଗୁଡ଼ିକ ଉପରେ ନିଜର ପ୍ରଭାବ ପକାଇଲା । ଏହିପରି ଭାବରେ କବି ନିଜର ଅଦ୍ଭୁତ କଳ୍ପନା ବିଳାସ ଅସମ୍ଭବ ଶବ୍ଦଶକ୍ତି, ଅଭିନବ ଛନ୍ଦଯୋଜନା ଓ ରାଗବିନ୍ୟାସ କୌଶଳ, ବିଚିତ୍ର, ରମଣୀୟ ଭିନ୍ନାର୍ଥ ବୋଧକ ଶବ୍ଦର ପ୍ରୟୋଗରେ ନିଜର ବର୍ଣ୍ଣନା ଚାତୁରୀ ବା ବର୍ଣ୍ଣନା ନୈପୁଣ୍ୟର ପରିପ୍ରକାଶ କରିଛନ୍ତି । କବି ଉପେନ୍ଦ୍ର 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ପ୍ରଭାତର ମନୋରମ ବର୍ଣ୍ଣନା କରିଛନ୍ତି । ରାତ୍ର ଶେଷ ହେବାରୁ ପ୍ରଭାତର ଆଗମନୀରେ ଦିଗାଙ୍ଗନା ମାନେ ସ୍ପଷ୍ଟ ଦେଖା ଦେଇଛନ୍ତି । ପ୍ରାଚୀ ଦିଗାଙ୍ଗନା ନୀଳଶାଢ଼ୀ ପରିତ୍ୟାଗ କରି ବାଳସୂର୍ଯ୍ୟଙ୍କ ଅରୁଣ ବର୍ଣ୍ଣର କିରଣ ରୂପକ ଲୋହିତ ପାଟବସ୍ତ୍ର ପରିଧାନ କରି ଅତ୍ୟନ୍ତ ଶୋଭାମୟ ଦିଶୁଅଛି । ପଦ୍ମ କୋଷ ଭିତରେ ବନ୍ଦୀ ଥିବା ଅଳି ଉଡ଼ିବା ମୁଦ୍ରାକୁ ଆସିବାରୁ କବି କଳ୍ପନା କରିଛନ୍ତି- ସତେଯେପରି ରସିକା ପଦ୍ମିନୀ ତା'ର କାନ୍ତ ସୂର୍ଯ୍ୟଙ୍କ ଆଡ଼କୁ ଡୋଳା ଢାଳି ଚାହିଁ ରହିଛି । କବିଙ୍କ ଭାଷାରେ-

"ହେଲାନିଶି ନାଶ ଗଲାଦିଶି ଦିଶ କି ପ୍ରାଚୀ ନାଗରୀବର
ନୀଳଶାଢ଼ୀ ଛାଡ଼ି ଅରୁଣ ସରାଗେ ପିନ୍ଧିଲା ଲୋହିତାମ୍ବର
କି' ଝରି ! କଞ୍ଜୁ ଉଡ଼ିଯିବା ଇଚ୍ଛୁ ଅଳି ।
ସେହି ପଦ୍ମିନୀ ସୁରସ ଶାଳୀ, କାନ୍ତ ଉରକୁ କି ଡୋଳା ଢାଳି ।"

(ଷୋଡ଼ଶ ଛାନ୍ଦ, ପଦ-୧)

ଏହି ପ୍ରଭାତ ବର୍ଣ୍ଣନା ପରି ଏକାବ୍ୟରେ ସନ୍ଧ୍ୟା ଏବଂ ରାତିର କମନୀୟ ବର୍ଣ୍ଣନା ମଧ୍ୟ କବି କରିଛନ୍ତି ।

**ଶୃଙ୍ଗାରରସ ବର୍ଣ୍ଣନା:-**

ରୀତି କବିମାନେ ଥିଲେ ସ୍ୱଭାବତଃ ରସିକ । ରସର ଉତ୍‌କୂଳ ପ୍ଲାବନରେ ରୀତି କାବ୍ୟ ଗୁଡ଼ିକ ହୋଇଉଠିଛି- ରସମୟ । ରୀତି କାବ୍ୟରେ ମୁଖ୍ୟତଃ ଶୃଙ୍ଗାର ରସ ଉପରେ ଗୁରୁତ୍ୱ ଦିଆଯାଇଛି । ଆଚାର୍ଯ୍ୟ ଭୋଜରାଜ ତାଙ୍କ 'ରସସ୍ୱତୀ କଣ୍ଠାଭରଣ' ଗ୍ରନ୍ଥରେ କହିଛନ୍ତି-

"ଶୃଙ୍ଗାରୀ ଚେତ୍ କବିଃ କାବ୍ୟେ ଜାତଂ ରସମୟ ଜଗତଂ ।"

ଆଚାର୍ଯ୍ୟ ଆନନ୍ଦ ବର୍ଦ୍ଧନ ମଧ୍ୟ ତାଙ୍କ 'ଧ୍ୱନ୍ୟାଲୋକ' ଗ୍ରନ୍ଥରେ ଶୃଙ୍ଗାର ରସକୁ ଶ୍ରେଷ୍ଠ ମାଧୁର୍ଯ୍ୟ ରସ ଭାବରେ ଗ୍ରହଣ କରି କହିଛନ୍ତି-

"ଶୃଙ୍ଗାର ଏବ ମଧୁରଃ ପରଃ ପ୍ରହ୍ଲାଦନୋ ରସଃ
ତନ୍ମୟଂ କାବ୍ୟ ମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତି ତିଷ୍ଠତେ ।"

କବି ଉପେନ୍ଦ୍ର ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱକୀୟ କାବ୍ୟାଦର୍ଶରେ ଶୃଙ୍ଗାର ରସକୁ ଶ୍ରେଷ୍ଠ ରସ ରୂପେ ଗ୍ରହଣ କରିଛନ୍ତି । କବି ସ୍ୱୀୟ ଲାବଣ୍ୟବତୀ କାବ୍ୟରେ କହିଛନ୍ତି-

"ନବ ରସରେ ସାର, ଆଦ୍ୟେ ଲେଖି ଶୃଙ୍ଗାର ।"

ପୁନଶ୍ଚ- ରସିକ ହାରାବଳୀରେ ମଧ୍ୟ ଲେଖିଛନ୍ତି-

"ବିଚାରଇ କରିବି ଉତ୍ତମ ଛାନ୍ଦ ଗୀତ
ରସସାର ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ ।"

କବି ତାଙ୍କର 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଶୃଙ୍ଗାରରସକୁ କାବ୍ୟର ପ୍ରଧାନ ରସ ବା ଅଙ୍ଗୀରସ ରୂପେ ଗ୍ରହଣ କରିଛନ୍ତି । ଉପେନ୍ଦ୍ର ଉଭୟ ସମ୍ଭୋଗ ଶୃଙ୍ଗାର ଏବଂ ବିପ୍ରଲମ୍ଭ ଶୃଙ୍ଗାର ଉପରେ ଗୁରୁତ୍ୱ ଦେଇଥିଲେ ହେଁ, ବିପ୍ରଲମ୍ଭ ଶୃଙ୍ଗାର ଅତୀବ ପୀଡ଼ା ଦାୟକ ବୋଲି ସୂଚିତ କରିଛନ୍ତି । କବି ଉପେନ୍ଦ୍ର ତାଙ୍କ 'ଚଉପଦୀ ଚନ୍ଦ୍ର'ରେ ଲେଖିଛନ୍ତି-

"ଅଙ୍ଗନା ବିଚ୍ଛେଦ ଠାରୁ ଶିରଚ୍ଛେଦ ବଡ଼ ନୁହେଁ
ଅତିରସେ ଉପଇନ୍ଦ୍ର ଭଞ୍ଜା ବୀର କହେ ।"

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ଏକାଦଶ ଛାନ୍ଦରୁ ଶେଷ ଚାନ୍ଦ ପର୍ଯ୍ୟନ୍ତ ସର୍ବତ୍ର ଶୃଙ୍ଗାର ଚିତ୍ରର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ ।

ଏକାଦଶ ଛାନ୍ଦରେ ଉଭୟ ନାୟକ- ନାୟିକାଙ୍କ ଦର୍ଶନ ଅନୁଚିନ୍ତା ଓ ମିଳନ ଉତ୍କଣ୍ଠା ଭିତରେ ଶୃଙ୍ଗାରୀ ଭାବନାର କମନୀୟ ଚିତ୍ର ଫୁଟି ଉଠିଛି । କବିଙ୍କ ଭାଷାରେ-

"ଏ ହୋଇଲେ ନବ-ସୃଷ୍ଟି ହେବ ରଚିତ
ସଲିଳ ବିହାର ତହିଁ ହୋଇ ଯେ ଉଚିତ
ସେହି ରସ ଜରଜରେ
ନୋହିବି ଲାଳସ ଆଉ ଆନ କାରଣରେ ।"

(ଏକାଦଶ ଛାନ୍ଦ- ପଦ-୧୯)

ପଞ୍ଚଦଶ ଛାନ୍ଦରେ ମାଙ୍ଗଲ୍ୟା ଏବଂ ଅଦ୍ଭୁତ ପୁରୁଷଙ୍କ ଯୋଗମାୟା ବଳରେ କୁହୁକମୟ ବା ଐନ୍ଦ୍ରଜାଲିକ ପରିବେଶ ମଧ୍ୟରେ ନାୟକ ପୁଷ୍ପକେତୁ ଓ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ମିଳନ ସଂଘଠିତ ହୋଇଛି । ଏହି ମିଳନ ଅବକାଶରେ କବି ସମ୍ଭୋଗ ଶୃଙ୍ଗାରର ଚିତ୍ର ପ୍ରକଟନ କରି ଲେଖିଛନ୍ତି-

"ପରସ୍ପର ବରଣ ଉତ୍ସବ ମହାରସ
ଭାବନା ଏ ଗଲା ହେଲା କଲେ ତ ଆଶ୍ଳେଷ ଯେ ।
ଲଭିବା ଏ ଭରସା ସହଜେ ଦିଶଗଲା
ଯୋଗୀ ଯୋଗିନୀ ବେଦି କରିଣି ଭଲା ଭଲା ଯେ ।"

(ପଞ୍ଚଦଶ ଛାନ୍ଦ, ପଦ-୩୫-୩୬)

ନାୟକ-ନାୟିକାଙ୍କ ଐନ୍ଦ୍ରଜାଲିକ ମିଳନ ଘଟିବା ପରେ ମାୟାମୟ ପରିବେଶ ହଟିଯିବାରୁ ନାୟକ-ନାୟିକା ବିରହ ଦଶାରେ ଘାରି ହୋଇଛନ୍ତି । ଗ୍ରୀଷ୍ମକାଳ ଅବକାଶରେ ନାୟକର ବିରହଦଶା ବଢ଼ି ଯିବାରୁ ସେ ନାୟିକା ପାଖକୁ ଏକ ପ୍ରେମପତ୍ର ପଠାଇଛି । ଏହି ପ୍ରେମପତ୍ରରେ ନାୟକର ବିରହ ବେଦନାର ପ୍ରତି ଫଳନ ସହିତ ନାୟିକାର ରୂପ ଶୋଭାର ଅପୂର୍ବ ବର୍ଣ୍ଣନା ଫୁଟି ଉଠିଛି ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର 'ଚତୁସ୍ତ୍ରିଂଶ ଚାନ୍ଦ'ରେ ସମ୍ଭୋଗ ଶୃଙ୍ଗାରର କମନୀୟ ଚିତ୍ର ଫୁଟି ଉଠିଛି । ମଧୁଶଯ୍ୟା ଗୃହମଣ୍ଡନ ଅବକାଶରେ ସଖୀମାନଙ୍କର କଥୋପକଥନ ଭିତରେ ଶୃଙ୍ଗାରୀ ଭାବନାର ଚିତ୍ର ଫୁଟି ଉଠିଛି । କବିଙ୍କ ଭାଷାରେ-

"ଆଜ ତୋ କୁଚ କଠିନୀ ଛୁଇଁବା ହୋଇବ
ଏ ଅନନ୍ତରେ ରସିକା ସିଦ୍ଧି ଉପୁଜିବା ।

× × ×

କରପୀଡ଼ାରେ ସାରିବି ଭରଜ ମହତ୍ତ୍ୱ
ଅଙ୍ଗସୀମା ବ୍ରୀଡ଼ାକୁ ଛଡ଼ାଇ ଦେବି ସତ ଯେ ।"

(ଚତୁସ୍ତ୍ରିଂଶ ଛାନ୍ଦ, ପଦ-୧୭,୨୬)

ପୁନଶ୍ଚ କବି ନାୟକ-ନାୟିକାର ରତି କାଳୀନ ଶବ୍ଦକୁ କପୋତର ହୁଁ ହୁଁ ନାଦ ସହିତ ତୁଳନା କରି ଲେଖିଛନ୍ତି-

କମଳିନୀ ବାସ ତହିଁ ହେଲା ଅନ୍ତରିତ
ଭୁଜେ କୋଳ ଆଚରଣ ହୋଇଲା ତ୍ୱରିତ ଯେ ।
ଉନ୍ନତ ବିଶେଷ ପ୍ରସନ୍ନତା ଭଜେ ଯହୁଁ
କପୋତ କଣ୍ଠରୁ ଜାତ ହେଲା ହୁଁ ହୁଁ ହୁଁ ଯେ ।"

(ଚତୁସ୍ତ୍ରିଂଶ ଛାନ୍ଦ, ପାଦ- ୩୮)

କବି ଏଠାରେ ଉତ୍କଟ ଶୃଙ୍ଗାର ଚିତ୍ରର ପ୍ରୟୋଗ କରିଛନ୍ତି । ଏଥିରେ କାମଶାସ୍ତ୍ରର ଚଉଷଠୀ ବନ୍ଧର ନିପୁଣ ବର୍ଣ୍ଣନା କରାଯାଇଛି । ରତିକ୍ରୀଡ଼ା ପରେ ରତିକ୍ଳାନ୍ତା ନାୟିକାର ଅଙ୍ଗବଲ୍ଲରୀରେ ଫୁଟି ଉଠିଥିବା ତାମ୍ବୁଳର ଦାଗ, ଦନ୍ତକ୍ଷତ, ନଖକ୍ଷତ, ଗାଢ଼ଚୁମ୍ବନ ଜନିତ ଦାଗ ଆଦିର ବର୍ଣ୍ଣନା କବି କରିଛନ୍ତି ।

"ତାମ୍ବୁଳ ସିନ୍ଦୂର ବ୍ୟକତ ବ୍ୟକତ ଦେଖି
ଦନ୍ତକ୍ଷତେ ଶୋଭାପାଇ ।"

(ପଞ୍ଚତ୍ରିଂଶ ଛାନ୍ଦ, ପଦ-୨୨)

ରତିକ୍ରୀଡ଼ା ସମୟରେ ପ୍ରେମ ଉନ୍ମାଦ ପୁରୁଷ ରୂପକ ହସ୍ତୀ ଦ୍ୱାରା ନାୟିକା ସତେ ଯେପରି ବିଦଳିତ ହୋଇଛି । ରତିକ୍ରୀଡ଼ା ଶେଷରେ ପ୍ରଭାତରେ ସ୍ନାନ ପରବର୍ତ୍ତୀ ସମୟରେ ସଖୀମାନେ ରାଜକୁମାରୀ ଦେହର ରତି କାଳୀନ ଚିହ୍ନ (ଅଧର, ବକ୍ଷୋଜ, ଗଣ୍ଡଦେଶ ଓ ନାଭି·ଦେଶରେ ନଖ ଓ ଦନ୍ତକ୍ଷତ) ସବୁକୁ ଲିଭାଇବାର ପ୍ରୟାସ କରି ସେହି ସ୍ଥାନ ମାନଙ୍କରେ ଚନ୍ଦନ ଓ କସ୍ତୁରୀର ପ୍ରଲେପ ଦେବା ସହିତ ବିଭିନ୍ନ ଚିତ୍ର ଅଙ୍କନ କରିଛନ୍ତି । କବିଙ୍କ ଭାଷାରେ-

ଉଚ୍ଚ କୁଚରେ ଚୋଳକୁ ରଖି ।
ଗଣ୍ଡ ମଣ୍ଡଳେ ମକରୀ ଲେଖି ।
ଗୁରୁ ଅଗୋଚର କରଶଣୀ-ଭର-ଭୂଷଣ ନାଭିରେ ପ୍ରାଣସଖୀ ।
ଚନ୍ଦନ-ବନ୍ଦନ ବାସତନୁ ।

ବନ୍ଦନ କରି ଚନ୍ଦନ ଘେନୁ ।
ଶ୍ରାନ୍ତ ହରିନିଦ୍ରା କରାଇ ଦେଖାଉଁ ଗତ ରତି ରଙ୍ଗ ସ୍ୱପ୍ନକୁ ।"

(ପଞ୍ଚତ୍ରିଂଶ ଛାନ୍ଦ, ପଦ- ୩୫-୩୬)

ଏହିପରି ଭାବରେ କବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ନାୟକ-ନାୟିକାଙ୍କ ପ୍ରେମାନୁରାଗ ଓ ମିଳନ ଅବକାଶରେ ଶୃଙ୍ଗାରୀ ଚେତନାର କମନୀୟ ଚିତ୍ର ପ୍ରକଟନ କରିଛନ୍ତି ।

**ଅଳଙ୍କାର ବିନ୍ୟାସ:-**

ଓଡ଼ିଆ ମଧ୍ୟଯୁଗୀୟ ରୀତିକାବ୍ୟ ସାହିତ୍ୟର ମୁଖ୍ୟ ଆଦର୍ଶ ଥିଲା- ଅଳଙ୍କାର ଯୋଜନା ବା ଆଳଙ୍କାରିକ ବିନ୍ୟାସ । କବି ଉପେନ୍ଦ୍ର ସଂସ୍କୃତ କାବ୍ୟ ସାହିତ୍ୟର ଅଳଙ୍କରଣ ଆଦର୍ଶ ଓ ଅଳଙ୍କାର ଗ୍ରନ୍ଥଗୁଡ଼ିକର ପ୍ରଭାବରେ ଅନୁପ୍ରାଣିତ ହୋଇ ସ୍ୱ-କାବ୍ୟରେ ଅଳଙ୍କାରର ବ୍ୟାପକ ପରିଚର୍ଯ୍ୟା କରିଛନ୍ତି । ସଂସ୍କୃତ ଅଳଙ୍କାର ତତ୍ତ୍ୱବିତ୍‌ମାନେ ଅଳଙ୍କାରକୁ କାବ୍ୟର ଏକ ସୌନ୍ଦର୍ଯ୍ୟ ବିଧାୟକ ଧର୍ମ ରୂପେ ଗ୍ରହଣ କରିଥିଲେ । ଏହି ଅଳଙ୍କାର କାବ୍ୟର ସୌନ୍ଦର୍ଯ୍ୟ ଅଭିବୃଦ୍ଧିରେ ସହାୟକ ହୋଇଥାଏ । ଆଚାର୍ଯ୍ୟ ଦଣ୍ଡୀ ତାଙ୍କ 'କାବ୍ୟାଦର୍ଶ' ଗ୍ରନ୍ଥରେ କହିଛନ୍ତି-

"କାବ୍ୟ ଶୋଭାଂ କରାନ୍ ଧର୍ମାନ୍ ଅଳଙ୍କାରାନ୍ ପ୍ରଚକ୍ଷତେ ।"

ଆଚାର୍ଯ୍ୟ ବାମନ, ପଣ୍ଡିତ ବିଶ୍ୱନାଥ କବିରାଜ, ପଣ୍ଡିତ ରାଜଶେଖର ପ୍ରମୁଖ ମଧ୍ୟ କାବ୍ୟରେ ଅଳଙ୍କାରର ପ୍ରୟୋଗ ଉପରେ ଗୁରୁତ୍ୱ ଦେଇଯାଇଛନ୍ତି । ପଣ୍ଡିତ ରାଜଶେଖର ଅଳଙ୍କାରକୁ କାବ୍ୟର ଶିରୋଭୂଷଣ ବା ମୁକୁଟାଳଂକାର ରୂପେ ଗ୍ରହଣ କରିବା ସହିତ ତାକୁ କାବ୍ୟର ସର୍ବଶ୍ରେଷ୍ଠ ସଂପଦ ରୂପେ ଅଭିହିତ କରିଛନ୍ତି । ତେଣୁ ସେ ତାଙ୍କ 'କାବ୍ୟମୀମାଂସା'ରେ ଲେଖିଛନ୍ତି-

"ଅଳଙ୍କାର ଶିରୋରତ୍ନଂ ସର୍ବସ୍ୱ କାବ୍ୟ ସଂପଦାମ୍
ଉପମା କବି ବଂଶସ୍ୟ ମାତୈ ବେତି ମତିର୍ମମ୍ ।"

କବି ଉପେନ୍ଦ୍ର ଏହି ଆଳଙ୍କାରିକ କାବ୍ୟାଦର୍ଶର ଅନୁସରଣରେ ସ୍ୱ-କୀୟ କାବ୍ୟାବଳୀରେ ଅଳଙ୍କାରର ମଞ୍ଜୁଳ ବିନ୍ୟାସ କରିଛନ୍ତି । ଉପେନ୍ଦ୍ର କାବ୍ୟରେ ଅଳଙ୍କାରର ପ୍ରୟୋଜନୀୟତାକୁ ମୁକ୍ତ କଣ୍ଠରେ ସ୍ୱୀକାର କରି 'ଲାବଣ୍ୟବତୀ' କାବ୍ୟରେ ଲେଖିଛନ୍ତି-

"ମୂର୍ତ୍ତିମନ୍ତ କରି ମୃଦୁଗୀତ ବିଚାରଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ ।

ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରବରଙ୍କୁ ଆନନ୍ଦ କରିବ ।"

କବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ତୃତୀୟ ଛାନ୍ଦରେ ଅଳଙ୍କାରିକ ବିନ୍ୟାସ ସଂପର୍କରେ ସୂଚନା ପ୍ରଦାନ କରି ଲେଖିଛନ୍ତି-

"ନାନା ଶବଦରେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହୁ କରୁ ଏ ଛାନ୍ଦ ବିବେଚନା ।"

(ତୃତୀୟ ଛାନ୍ଦ, ପଦ-୧)

ସେହିପରି କବି ଦ୍ୱାଦଶ ଛାନ୍ଦରେ ମଧ୍ୟ ଲେଖିଛନ୍ତି-

"ଯେ କବି ଅର୍ଥୀ ପଣ୍ଡିତ ସୁହୃଦ
ରସିକ ଯେହି ଘେନି ମୋ ଏ ଛାନ୍ଦ ।
ବ୍ୟସ୍ତ ଅଳଙ୍କାର, ମଣ୍ଡନ ବିଧି ନିର୍ଦ୍ଦୋଷ ବିଚାର ।
ଉତ୍ପ୍ରେକ୍ଷା, ଉପମା, ରୂପକ ତିନି
ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଘେନି
ଦତ୍ତ ଚ୍ୟୁତାକ୍ଷର ଉଦୟ କାହିଁ ।
ବୁଝ ସଂଖ୍ୟାବାନ ଆୟତ୍ତ ନାହିଁ ।"

(ଦ୍ୱାଦଶଛାନ୍ଦ, ପଦ-୧-୨)

ଉପେନ୍ଦ୍ର ତାଙ୍କ କାବ୍ୟରେ ଉଭୟ ଶବ୍ଦାଳଙ୍କାର ଏବଂ ଅର୍ଥାଳଂକାରର ବହୁଳ ପ୍ରୟୋଗ କରିଛନ୍ତି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଉପମା, ରୂପକ, ଉତ୍ପ୍ରେକ୍ଷା, ଯମକ, ଶ୍ଳେଷ, ଶୃଙ୍ଖଳା ପ୍ରଭୃତି ଅଳଙ୍କାର ଗୁଡ଼ିକର ମନୋଜ୍ଞ ସମାବେଶ ଘଟିଛି ।

ଉପମା:- "ଶିରେହେମ-ରତନ-ମୁକୁଟ ସପ୍ତଶାଖା
କରୁଣା ସିନ୍ଧୁରେ କି ବାଡ଼ ବାନଳ ଶିଖା ।
× × ×
ପ୍ରବାଳ ତରଣୀ ଦୃଷ୍ଟି ରଙ୍ଗାଧରେ ଅଛି
ବିଶେଷ ଯହିଁ ଲାବଣ୍ୟ ଲକ୍ଷ୍ମୀ ସମ୍ଭବିଛି ହେ ।"

(କୋ:ବ୍ର: ସୁ-ପ୍ରଥମ ଛାନ୍ଦ, ପଦ-୨୦,୨୨)

ସ୍ନାନଯାତ୍ରା ଅବକାଶରେ କରୁଣାମୟ ପ୍ରଭୁ ଜଗନ୍ନାଥଙ୍କ ମସ୍ତକରେ ଶୋଭା ପାଉଥିବା ସପ୍ତଶାଖା ବିଶିଷ୍ଟ ରତ୍ନ-ମୁକୁଟର ତେଜକୁ କବି ସମୁଦ୍ରରେ ଜାତ ବଡ଼ବାଗ୍ନିର ଶିଖାନଳ ସଙ୍ଗେ ଉପମା ପ୍ରଦାନ କରିଛନ୍ତି । ଜଗନ୍ନାଥଙ୍କ ଐଶ୍ୱର୍ଯ୍ୟମୟ ମୂର୍ତ୍ତି ଓ ଲାବଣ୍ୟମୟ-ରୂପ କୋଟି କନ୍ଦର୍ପର ଶୋଭାରେ ବିଭ୍ରାଜିତ । ତାଙ୍କର ସୁରଙ୍ଗ ଅଧର ପୋହଲାବର୍ଣ୍ଣର ନୌକା ପରି ଦିଶୁଅଛି । ଯହିଁରେ ପୁଣି ଶୋଭାର ମୂର୍ତ୍ତିମତୀ ସ୍ୱରୂପ ସ୍ୱୟଂ ଲକ୍ଷ୍ମୀ ବିରାଜମାନ କରିଛନ୍ତି । ପୁନଶ୍ଚ କବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର 'ସପ୍ତମ ଛାନ୍ଦ'ରେ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ନାଭିର ନିମ୍ନ ଦେଶରେ ଅଙ୍କୁରିତ ରୋମାବଳୀକୁ ଏକ ଅଦ୍ଭୁତ ଲତା ସଙ୍ଗେ ତୁଳନା କରିଛନ୍ତି । ଯେଉଁ ଲତାରୁ ଦୁଇ ଗୋଟି ନଡ଼ିଆ ଫଳି ଅଛି ଓ ତହିଁରୁ ଦୁଇ ଗୋଟି ଗୁଆ ଜାତ ହୋଇଛି । କବିଙ୍କ ଭାଷାରେ-

"ରୋମାବଳୀ ଦଣ୍ଡ ଅବଲମ୍ବନେ
ରହି କହିଲେ ତେତେ ଅନୁମାନେ
ଏ ଅତି ଅଦ୍ଭୁତ ସ୍ଥଳୀ ଯେ ।
ବେନି ନାରିକେଳୁଁ ପୂଗ ଜନମିଛି
ତମାଳ ଲତାକେ ଫଳି ଯେ ।"

(ସପ୍ତମଛାନ୍ଦ, ପଦ-୧୭)

ରୂପକ : "ଭୀରୁ ନୟନ ହାବ ଅଳଙ୍କାର
ବଶୀକରଣ ମଣି ତୋଳତା'ର ।
ଅସ୍ୱଭାବେ ଦେଲେ କଜ୍ଜଳ ଆଣି
କେଡ଼େ ଅପୂର୍ବ କଲେ ବିଷେ ଜାଣି ।
ସେ ମହା ଉଜ୍ଜ୍ୱଳ । ହେଲା ମୋହିବ ଭୁବନ ମଣ୍ଡଳ ।"

(ଦ୍ୱାଦଶ ଛାନ୍ଦ, ପଦ-୧୧)

ସେହିପରି କବି ଉନ୍ନବିଂଶ ଛାନ୍ଦରେ ବର୍ଣ୍ଣନା କରିଛନ୍ତି- ରାଜଜେମା ରାଜ କୁମାରର ଚିତ୍ରପଟ୍ଟ ଦର୍ଶନ ଅବକାଶରେ ରାଜଜେମା ପୁଲକିତ ହୋଇ ଉଠିବାରୁ ତା'ର ଗଣ୍ଡ ଦେଶ କଦମ୍ବ କଢ଼ି ଭଳି ପ୍ରତୀୟମାନ ହେଲା ଓ ସେ ଅନୁଭବ କଲା ସତେ ଯେପରି ରାଜପୁତ୍ର ଭ୍ରମର ରୂପ ଧାରଣ କରି ତା' ଗଣ୍ଡ ଦେଶକୁ ଚୁମ୍ବନ କରିଅଛି । କବିଙ୍କ ଭାଷାରେ-

"ପୁଲକିଲା କପୋଳ କି'ସେ ନୀପକଳି କି
ଚୁମ୍ବବୋଲି ଦେଖାଇଲା କିଶୋର ଅଳିକି

(ଉନ୍ନବିଂଶ ଛାନ୍ଦ- ପଦ -୩୦)

**ଉତ୍ପ୍ରେକ୍ଷା:-**

ସ୍ନାନଯାତ୍ରା ଅବକାଶରେ କବି ଗୁଣ୍ଡୀଭୂତ ଜନତା ବା ଲୋକରଣ୍ୟ ଓ ତ୍ରି-ମୂର୍ତ୍ତିଙ୍କର ରୂପକୁ ଉତ୍ପ୍ରେକ୍ଷା ଅଳଙ୍କାର ମାଧ୍ୟମରେ ପରିପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ-

ଢାଳନ୍ତି ଚାମର ଶ୍ୱେତଛତ୍ର ଟେକା ତହିଁ
କ୍ଷୀର - ସାଗର ଲହରୀ ଭ୍ରମ ଉପଜାଇ ।
ଗହଳ ହୋଇଣ କଳାଛତ୍ର ଶୋଭା ଦିଶି
ତୁଙ୍ଗ ଶିଖରୀ ପରେ କି' ଜଳଦ ଆକର୍ଷି ହେ ।

(ପ୍ରଥମ ଛାନ୍ଦ- ପଦ-୩୯-୪୦)

ଜଗନ୍ନାଥଙ୍କ ସ୍ନାନଯାତ୍ରା ଅବକାଶରେ ବ୍ରାହ୍ମଣ ମାନେ ଜଗନ୍ନାଥଙ୍କ ମସ୍ତକ ଉପରେ ଛତ୍ରଧାରଣ ପୂର୍ବକ ଯେଉଁ ଶ୍ୱେତ ଚାମର ଢାଳିଥାନ୍ତି, ତାକୁ ଉପଲକ୍ଷ୍ୟ କରି କବି କଳ୍ପନା କରିଛନ୍ତି- ସତେ ଯେପରି ତାହା କ୍ଷୀର ସାଗରର ଲହଡ଼ିର ଶୋଭା ପ୍ରକାଶ କରୁଅଛି । ପୁନଶ୍ଚ- ଜନଗହଳି ବା ଲୋକାରଣ୍ୟକୁ କବି ପର୍ବତ ସଙ୍ଗେ ତୁଳନା କରି ସେମାନେ ଧରିଥିବା କଳାରଙ୍ଗର ଛତା ଗୁଡ଼ିକୁ କଳାମେଘ ରୂପେ ପରିକଳ୍ପନା କରିଛନ୍ତି ।

ପୁନଶ୍ଚ ସ୍ନାନ ମଣ୍ଡପରେ ତ୍ରି-ମୂର୍ତ୍ତିଙ୍କୁ ସ୍ନାନ- କରାଇବା ସମୟରେ ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଶ୍ରୀ ଅଙ୍ଗରୁ ଝରି ପଡୁଥିବା ବାରିଧାରାକୁ ଦେଖି କବି କଳ୍ପନା କରିଛନ୍ତି, ସତେ ଯେପରି ମେରୁ ପର୍ବତରୁ ଗଙ୍ଗା, ଯମୁନା ଓ ହରିତାଳର ଧାରା ଝରି ଆସୁଛି । ଏଠାରେ କବି ବଳରାମଙ୍କ ବର୍ଣ୍ଣ ସୁବର୍ଣ୍ଣ ବର୍ଣ୍ଣ ହୋଇଥିବାରୁ ଗଙ୍ଗାର ଜଳଧାରା ସହିତ ଜଗନ୍ନାଥଙ୍କର ଦେହର ବର୍ଣ୍ଣ ମାରାଗ ବା କୃଷ୍ଣ ବର୍ଣ୍ଣ ହୋଇଥିବାରୁ ଯମୁନାର ଜଳଧାରା ଓ ଦେବୀ ସୁଭଦ୍ରଙ୍କ ଦେହ ହରିତାଳ ବର୍ଣ୍ଣ ହୋଇଥିବାରୁ ହରିତାଳ ଧାରା ସଙ୍ଗେ କବି ତୁଳନା କରିଛନ୍ତି । ପୁନଶ୍ଚ- ସ୍ନାନ ସମୟରେ ଜଳଧାରା ସହିତ ତ୍ରି-ମୂର୍ତ୍ତି ମାନଙ୍କର ଶ୍ରୀଅଙ୍ଗରୁ ଚନ୍ଦନର ଧାରା ମଧ୍ୟ ଝରି ଆସିଛି । ଏହାକୁ ଦେଖି କବି କଳ୍ପନା କରିଛନ୍ତି, ସତେ ଯେପରି ମେରୁ ପର୍ବତର ତିନିଶୃଙ୍ଗରୁ ଧବଳ ବର୍ଣ୍ଣର ତରଳ ରୂପା ଝରି ଆସୁଛି । ତେଣୁ କବି ଲେଖିଛନ୍ତି-

"କି ମେରୁ ହୀରା ମାରାଗ- ହେମ ଶୃଙ୍ଗୁ ଖସି
ଜାହ୍ନବୀ, ଯମୁନା, ହରିତାଳ-ଧାରା ଆସି ଯେ ।
ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ
ସେ ତିନି ଶୃଙ୍ଗୁକି ଜାତ ତରଳ ରଜତ ।"

(ପ୍ରଥମ ଛାନ୍ଦ, ପଦ- ୪୮-୪୯)

କବି ଏ କାବ୍ୟର 'ଚତୁର୍ଦ୍ଦଶ ଛାନ୍ଦ'ରେ ନାୟିକା କେଶଗୁଚ୍ଛର ସୌନ୍ଦର୍ଯ୍ୟ ବର୍ଣ୍ଣନା ଅବକାଶରେ ଉତ୍‌ପ୍ରେକ୍ଷା ଅଳଙ୍କାରର କମନୀୟ ପ୍ରୟୋଗ କରିଛନ୍ତି ।

ନାୟିକାର କେଶ ଗୁଚ୍ଛରେ ଶୋଭାପାଉଥିବା କେତକୀ ଫୁଲ ଓ ହୀରକ ପିହାଣିଆର ସୌନ୍ଦର୍ଯ୍ୟକୁ କବି ବିଜୁଳିର ଚମକ ଓ ଅମୃତ ବାରିଧାରାର ସିଞ୍ଚନ ଦୃଶ୍ୟ ପରି ସମ୍ଭାବନା କରିଛନ୍ତି । ଯେଉଁଥି ପାଇଁ କବି ଲେଖିଛନ୍ତି-

"ସେ ଝରାକି ଶୋଭାପାଇ । ଶିର ଚାଳନେ ଚଳଇ ।
ମୋତି ଜାଲିଛଳେ ସୁଧା ସିଞ୍ଚୁଛି କି ବିଚିତ୍ର ବିଜୁଳି ଉଇଁ ।

(ଚତୁର୍ଦ୍ଦଶ ଛାନ୍ଦ, ପଦ-୧୨)

ପୁନଶ୍ଚ କବି ନାୟିକା ବକ୍ଷୋଜର ଶୋଭା ବର୍ଣ୍ଣନାରେ ଉତ୍‌ପ୍ରେକ୍ଷା ଅଳଙ୍କାରର ମନୋଜ୍ଞ ପ୍ରୟୋଗ କରିଛନ୍ତି । ନାୟିକାର ବକ୍ଷୋଜ ଉପରେ ଭିଡ଼ା ଯାଇଥିବା କଳା କାଞ୍ଚଲାର ଆଭାକୁ ଦେଖି କଳ୍ପନା କରିଛନ୍ତି, ସତେ ଯେପରି ଭଗବାନ ମହାଦେବ ଭୟଙ୍କର ବିଷଜ୍ୱାଳରୁ ଉପଶମ ପାଇବା ପାଇଁ କାଳିନ୍ଦୀ ଜଳରେ ପଶି ସ୍ନାନ କରୁଛନ୍ତି କି ? କବିଙ୍କ ଭାଷାରେ-

"କାଳ କାଞ୍ଚଲା ଗରାସି । ଅଛି ସ୍ତନ ଶୋଭା ଦିଶି
ବିଷଜ୍ୱାଳା ଶାନ୍ତି ସ୍ନାନ କି' କରନ୍ତି ଶମ୍ଭୁ କାଳିନ୍ଦୀରେ ପଶି ।"

(ଚତୁର୍ଦ୍ଦଶ ଛାନ୍ଦ, ପଦ-୨୮)

**ଯମକ:** "ଗଉରୀ- ବର ଗଉରୀ-ବର ନିତମ୍ବା ବିମ୍ବାଧରୀ
ଗଉରୀବର ଗଉରୀ ବର କୃପାରୁ ମୁ ତୋହରି ।"

(ସପ୍ତଦଶ ଛାନ୍ଦ, ପଦ-୫)

ଏଠାରେ ଗଉରୀ ଶବ୍ଦଟି ବାରମ୍ବାର ଭିନ୍ନ ଭିନ୍ନ ଅର୍ଥରେ ପ୍ରକାଶିତ ହୋଇଛି । ଗଉରୀବର ବା ଶ୍ରେଷ୍ଠ ସୁନ୍ଦରୀ, ଯାହାର ଦେହ ଗୌରବର୍ଣ୍ଣ ଏବଂ ସେ ନିତମ୍ବିନୀମାନଙ୍କ

ମଧ୍ୟରେ ଶ୍ରେଷ୍ଠ । ତା'ର ନିତମ୍ବ ଏବଂ ପକ୍ୱବିମ୍ବଭଳି ଅଧର ଅତୀବ ସୁନ୍ଦରାରେ ସୁନ୍ଦରୀ ବର (ଗଉରୀବର) ମୁଁ ଗଉରୀବର ମହାଦେବ ଏବଂ ଗଉରୀ ପାର୍ବତୀଙ୍କ କୃପାରୁ ବର ଲାଭ କରି ତୋର ବର ପାଇଁ ଉପଯୁକ୍ତ ହୋଇଅଛି ।

"ସୁନାରୀ ଭୂଷା ନିର୍ମାଣି । ସୁ ନାରୀ କମାର ଜାଣି
ପ୍ରବଳ ବସେ ନିର୍ମାଣ । ପ୍ରବାଳ ତୋରଣ ଗଣ ଯେ" ।

(ଦ୍ୱାତ୍ରିଂଶ ଛାନ୍ଦ, ପଦ-୪୨)

**ଶ୍ଳେଷ ଅଳଙ୍କାର:-**

କବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ପ୍ରଥମ ଛାନ୍ଦରେ ନାରାୟଣ ରୂପୀ ଜଗନ୍ନାଥଙ୍କର ମହିମା ପ୍ରକଟନରେ ଶ୍ଳେଷ ଅଳଙ୍କାରର ଉପଯୋଗ କରିଛନ୍ତି । କବି ଲେଖିଛନ୍ତି-

"ଅରି-ଦର-କର ବିଭୋ ଅରି-ଦର-କର
ଯୁଗେ ଯୁଗେ ଧର ନାନାବିଧ ଅବତାର ହେ ।"

(ପ୍ରଥମ ଛାନ୍ଦ-ପଦ- ୫୭)

କବିଙ୍କ ଦୃଷ୍ଟିରେ ଭଗବାନ ବିଷ୍ଣୁ ବା ନାରାୟଣ ହସ୍ତରେ ଚକ୍ର (ଅରି) । ଶଙ୍ଖ (ଦର) ଧାରଣ ପୂର୍ବକ ଯୁଗେ ଯୁଗେ ବିଭିନ୍ନ ଅବତାର ଗ୍ରହଣ କରି ବିଧର୍ମୀ, ପରନ୍ତପ ଓ ଦୃଷ୍ଟଜନ ମାନଙ୍କ ମନରେ ଭୀତିର ସଞ୍ଚାର କରାଇ, ସେମାନଙ୍କୁ ବିନାଶ କରି ଧରାରେ ସତ୍ୟ, ଧର୍ମ, ନ୍ୟାୟର ପ୍ରତିଷ୍ଠା କରିଥାନ୍ତି ।

**ଅନୁପ୍ରାସ ଅଳଙ୍କାର:-**

କବି ଉପେନ୍ଦ୍ର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ଅନେକତ୍ର ଅନୁପ୍ରାସ ଅଳଙ୍କାରର ବହୁଳ ପ୍ରୟୋଗ କରିଛନ୍ତି । 'ଚତୁର୍ଦ୍ଦଶ ଛାନ୍ଦ'ରେ କବି ଅନୁପ୍ରାସ ଅଳଙ୍କାରର ମଞ୍ଜୁଳ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ଭଲା ସାଳେଣି ବାଜେଣି । କିଙ୍କିଣୀ କଟୀରେ ପୁଣି
କିଣି କିଣି ନେବ ମାନସୁ ମାନକୁ । କିଣି କିଣି ହେଲା କ୍ଷଣି ।"

ଏଠାରେ ବ୍ୟଞ୍ଜନ ବର୍ଣ୍ଣର ବାରମ୍ବାର ଉଚ୍ଚାରଣ ପରିଦୃଷ୍ଟ । ସେହିପରି କାବ୍ୟର 'ତୃତୀୟ ଛାନ୍ଦ'ରେ ଆଦ୍ୟ ପ୍ରାନ୍ତ୍ୟାନୁପ୍ରାସର ପ୍ରୟୋଗ କରାଯାଇଛି । କବିଙ୍କ ଭାଷାରେ-

"ସାତଦୀପରେ ଯାହା ବନ୍ଦାଇଲେ
ସାତ ଦ୍ୱୀପରେ କି ଅଛି ବୋଇଲେ ।
ସାତ ଦ୍ୱି-ଗୁଣ ଭବନ ସୁନ୍ଦରୀ
ବୃନ୍ଦେ ହୋଇଲା ସିନା ପୁରନ୍ଦରୀ ।"

ସେହିପରି 'ତ୍ରୟୋଦଶ ଛାନ୍ଦ'ରେ ଛେକାନୁ ପ୍ରାସର ମନୋଜ୍ଞ ବର୍ଣ୍ଣନା ରହିଛି । କବିଙ୍କ ଭାଷାରେ-

"ଏ ନୋହିଛି ନୋହିବ ସଜୀବ ରାଜୀବ ଲୋଚନ
ଏହି ମୁନି ମନ୍ତର କରିଅଛି ଅନ୍ତର ଗତର ମାତର ଭାବନା ।
ସେ ଅନୁପମା ହୃଦରେ ଆଦରେ ଉଛନ୍ନ
କିଏ ସେ ଭୂପତି ନନ୍ଦନ
ରମା ରତନ ରମ୍ୟ ଯତନରେ ପତନ ସେ କାଳେ କୁମାର ନୟନ ।"

ଏହିସବୁ ଅଳଙ୍କାର ବ୍ୟତୀତ ଭ୍ରାନ୍ତିମାନ, ବିଶୋଷୋକ୍ତି, ବିଭାବନା, ଚ୍ୟୁତାକ୍ଷର, ବକ୍ରୋକ୍ତି ଆଦି ଅଳଙ୍କାର ଗୁଡ଼ିକର ଉପଯୋଗ ମଧ୍ୟ କବି ଏ କାବ୍ୟରେ କରିଛନ୍ତି ।

**ଶବ୍ଦ ବିନ୍ୟାସ ଓ ଭାଷାଶୈଳୀ:-**

ରୀତି ଯୁଗୀୟ କବିମାନେ କାବ୍ୟଭାଷା ପ୍ରୟୋଗ କ୍ଷେତ୍ରରେ ଏକ ନୂତନ ଆଡ଼ମ୍ବର ପୂର୍ଣ୍ଣ ଭାଷାରୀତି ବା କାବ୍ୟରୀତିର ଅନୁବର୍ତ୍ତନ କରିଥିଲେ । ଜନ ସାଧାରଣଙ୍କର କଥିତ ଭାଷା ସହିତ ଶୁଦ୍ଧ ସଂସ୍କୃତ, ତତ୍ସମ ଭାଷା- ଶବ୍ଦର ସମ୍ମିଶ୍ରଣ ଘଟାଇ ଏମାନେ ଏକ ମିଶ୍ରିତ କାବ୍ୟ-ଭାଷାର ସୃଷ୍ଟି କରିଥିଲେ । ଏହି ମିଶ୍ରିତ କାବ୍ୟଭାଷାକୁ ମଣି- ପ୍ରବାଳ ଭାଷା ବା ଦିବ୍ୟ-ଅଦିବ୍ୟ ଭାଷା କୁହାଯାଏ । ଏହି ଭାଷା ଶୈଳୀର ମୁଖ୍ୟ ଉପଜୀବ୍ୟ ହେଲା- ରମଣୀୟ, ବିଚିତ୍ର, ଭିନ୍ନାର୍ଥ ବୋଧକ ଓ ଆଡ଼ମ୍ବର ଯୁକ୍ତ ସଂସ୍କୃତ, ତତ୍ସମ ଶବ୍ଦବଳୀ । କବି ଉପେନ୍ଦ୍ର ଥିଲେ ଜଣେ ଶବ୍ଦର ଯାଦୁକର, ଶବ୍ଦଶିଳ୍ପର ସୁଦକ୍ଷ ବିନ୍ଧାଣୀ । ଶବ୍ଦଶିଳ୍ପ, ଶବ୍ଦକାରୀ ଗରୀ ଓ ଶବ୍ଦର ଐନ୍ଦ୍ରଜାଲିକ ପ୍ରୟୋଗରେ ଉପେନ୍ଦ୍ର ତତ୍କାଳୀନ ସମସ୍ତ କବିଙ୍କୁ ଅତିକ୍ରମ କରିଯାଇଛନ୍ତି । ବିଚିତ୍ର, ଅର୍ଥପୂର୍ଣ୍ଣ, ରମଣୀୟ, ଆଡ଼ମ୍ବର ଯୁକ୍ତ ଶବ୍ଦର ପ୍ରାଚୁର୍ଯ୍ୟରେ ସେ ତାଙ୍କର କାବ୍ୟାବଳୀକୁ ବେଶ୍ ଶ୍ରୁତି ମଧୁର, ରମଣୀୟ ଓ ମାଧୁର୍ଯ୍ୟମୟ କରି ପାରିଛନ୍ତି । ମୋଟାମୋଟି ଭାବରେ ଶବ୍ଦଶାସ୍ତ୍ର, ଶବ୍ଦଶିଳ୍ପ ଓ ଶବ୍ଦର ସାମ୍ରାଜ୍ୟ ଉପରେ ତାଙ୍କର ଅଭୂତ ପୂର୍ବ ଦକ୍ଷତା ଓ ପାରଦର୍ଶିତା ଥିଲା । ଯେଉଁଥିପାଇଁ କବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଲେଖିଛନ୍ତି-

"ତରଣୀ କୁଳର ସାର ଆଶ୍ରୟରୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ- ସମୁଦ୍ର ପାର ।"

(ଚତୁର୍ଦ୍ଦଶ ଛାନ୍ଦ, ପଦ-୩୮)

ଏଥିରୁ ଜଣାଯାଏ- କବି ଉପେନ୍ଦ୍ର ନିଜର ପରମ ଆରାଧ୍ୟ ଦେବତା ପ୍ରଭୁ ଶ୍ରୀରାମ ଚନ୍ଦ୍ରଙ୍କର ଆଶ୍ରୟ ନେଇ ତାଙ୍କର କୃପାବଳରୁ ବିଶାଳ ଶବ୍ଦ ସମୁଦ୍ର ପାର ହୋଇ ଶବ୍ଦ ସାମ୍ରାଜ୍ୟକୁ ଆୟତ୍ତ କରି ପାରିଛନ୍ତି । ଉପେନ୍ଦ୍ର ତାଙ୍କର କାବ୍ୟ ସୁନ୍ଦରୀକୁ ଏତେ ମାତ୍ରରେ ଶାବ୍ଦିକ, ଭିନ୍ନାର୍ଥ ବୋଧକ ଓ ଆଳଙ୍କାରିକ ଆଟୋପରେ ଆଚ୍ଛାଦିତ କରି ପକାଇଛନ୍ତି ଯେ, ବିନା ଶାସ୍ତ୍ର ଅଭିଧାନରେ ଏହାର ଅର୍ଥ ବୁଝିବା ଅତ୍ୟନ୍ତ ଦୁଃସାଧ୍ୟ । କେବଳ ନ୍ୟାୟାଦି ଶାସ୍ତ୍ର, ବେଦ, ପୁରାଣ ଆଦିରେ ପାରଙ୍ଗମ ବିଦ୍ୱାନ୍, ପଣ୍ଡିତ ମାନେ ହିଁ ଏହି ରୀତିକାବ୍ୟ ଗୁଡ଼ିକୁ ପଢ଼ି, ବୁଝି ତା'ର ରସ ହୃଦୟଙ୍ଗମ କରି ପାରିବ । ଏହି କଥାକୁ କବି ଅଭିମନ୍ୟୁ ସାମନ୍ତ ସିଂହାର ତାଙ୍କର 'ବିଦଗ୍ଧ ଚିନ୍ତାମଣି' ଗ୍ରନ୍ଥର ପ୍ରଥମ ଛାନ୍ଦରେ ଉଲ୍ଲେଖ କରିଛନ୍ତି । କବିଙ୍କ ଭାଷାରେ-

ନ୍ୟାୟଦି ଶାସ୍ତ୍ର ପୁରାଣ ବେଦାଗମ କାବ୍ୟ
ନ୍ୟାସ କଲା ଲୋକର ଏ ହୋଇବଟି ଭବ୍ୟ ।

କବି ଉପେନ୍ଦ୍ର ତାଙ୍କର ଅଧିକାଂଶ କାବ୍ୟରେ ଅତ୍ୟନ୍ତ କ୍ଲିଷ୍ଟ, ଦୁର୍ବୋଧ, ଶବ୍ଦାଡ଼ମ୍ବର ପୂର୍ଣ୍ଣ ଭାଷା- ଶବ୍ଦର ପ୍ରୟୋଗ କରିଛନ୍ତି । ଆଲୋଚ୍ୟ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ କବି ଅପୂର୍ବ ଆଳଙ୍କାରିକ ଭାଷା ଶୈଳୀ ଓ ବିଚିତ୍ର, ରମଣୀୟ ଆଡ଼ମ୍ବର ପୂର୍ଣ୍ଣ ଶବ୍ଦାବଳୀର ପ୍ରୟୋଗ ମାଧ୍ୟମରେ ଯେଉଁ ଶବ୍ଦର ଭୋଜବାଜି ବା ଶାବ୍ଦିକ କ୍ରୀଡ଼ା କରିଛନ୍ତି, ତାହା ବାସ୍ତବରେ ଅତି ଅଦ୍ଭୁତ ଏବଂ ବିସ୍ମୟକର । ଗୋଟିଏ ଗୋଟିଏ ଶବ୍ଦ ବା ଗୋଟିଏ ଗୋଟିଏ ପଦ ଭିତରେ ଅନେକ ଅର୍ଥର ପ୍ରକାଶ କରି କାବ୍ୟ ବିଷୟ ବସ୍ତୁକୁ ରୋଚକ ଓ ବୈଚିତ୍ର୍ୟ ବିମଣ୍ଡିତ କରି ପାରିଛନ୍ତି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ତୃତୀୟ ଚାନ୍ଦ, ବିଂଶଛାନ୍ଦ, ପଞ୍ଚବିଂଶ ଛାନ୍ଦ ଆଦିରେ କବି ବିଚିତ୍ର, ଅର୍ଥପୂର୍ଣ୍ଣ, ରମଣୀୟ ଓ ଆଡ଼ମ୍ବର ପୂର୍ଣ୍ଣ ଭାଷା ଶୈଳୀ ଓ ଶବ୍ଦ ଶିଳ୍ପର ଉପଯୋଗ କରିଛନ୍ତି । ଗୋଟିଏ ପଦ ବା ପଙ୍‌କ୍ତି ଭିତରେ ଭିନ୍ନ ଭିନ୍ନ ବିଚିତ୍ର, ରମଣୀୟ ଅର୍ଥ ପ୍ରକାଶ କରି ତିନିଗୋଟି ଋତୁର ମଞ୍ଜୁଳ ବର୍ଣ୍ଣନା କରିଛନ୍ତି । ଏ ସଂପର୍କରେ ଗୋଟିଏ ଉଦାହରଣ ଦିଆଯାଇପାରେ । କବିଙ୍କ ଭାଷାରେ-

"କେକୀର ସଙ୍ଗୀତରେ କାମୁକ ଉଲ୍ଲାସ
ଧରମଣି ଆଚ୍ଛାଦନେ ଘନ ବିଳାସ ।"

(ପଞ୍ଚବିଂଶ ଛାନ୍ଦ, ପଦ-୩)

ଏହାର ସ୍ୱାଭାବିକ ଅର୍ଥ ହେଲା- ବର୍ଷାକାଳ ଆଗମନୀରେ କେକୀ ବା ମୟୁରର ରାବଶୁଣି କାମୀଜନ ବା କାମୁକ ପୁରୁଷ ମାନେ ପ୍ରିୟାସଙ୍ଗମ ଆଶାରେ ଉଲ୍ଲସିତ ହୋଇ ଉଠନ୍ତି । ପୁନଶ୍ଚ ମେଘମାଳାମାନେ ପର୍ବତ ରାଜିକୁ ଆଚ୍ଛାଦିତ କରି ଆନନ୍ଦରେ ବିଳସିତ ହୁଅନ୍ତି । ଉପରୋକ୍ତ ପଦଟିରୁ ପ୍ରଥମ ପାଦର ପ୍ରଥମ ଶବ୍ଦରୁ 'କେ' ଅକ୍ଷର ଏବଂ ଦ୍ୱିତୀୟ ପାଦର ପ୍ରଥମ ଶବ୍ଦରୁ 'ଧ' ଅକ୍ଷର ବିଲୋପ କଲେ ବା ବାଦ୍ ଦେଲେ ଏହା ଭିନ୍ନ ଅର୍ଥ ପ୍ରକାଶ କରିବ ଅର୍ଥାତ୍- ଶୀତ ଋତୁର ବର୍ଣ୍ଣନା ହେବ ।

**ଯଥା-** କୀର ସଙ୍ଗୀତରେ କାମୁକ ଉଲ୍ଲାସ
ରମଣୀ ଆଚ୍ଛାଦନେ ଘନ ବିଳାସ ।

**ଅର୍ଥାତ୍-** ଶୀତକାଳ ଆସିବାରୁ କୀର ବା ଶୁଆ ପକ୍ଷୀମାନଙ୍କର ସଙ୍ଗୀତ ଧ୍ୱନି ଶ୍ରବଣ କରି କାମୀଜନମାନେ ଉଲ୍ଲସିତ ହେଲେ । ପୁନଶ୍ଚ- କାମୁକମାନେ ରମଣୀମାନଙ୍କୁ ଶୀତବସ୍ତ୍ରରେ ଘୋଡ଼ାଇ ଦେଇ ନିବିଡ଼ ଭାବରେ ପ୍ରେମ ବିଳାସରେ ମଜ୍ଜି ରହିଲେ । ସେହିପରି ଉପରୋକ୍ତ ପଦଟିରୁ ପୂର୍ବବତ୍ ପ୍ରଥମ ପାଦର ପ୍ରଥମ ଶବ୍ଦରୁ 'କୀ' ଅକ୍ଷର ଏବଂ ଦ୍ୱିତୀୟ ପାଦର ପ୍ରଥମ ଶବ୍ଦରୁ 'ର' ଅକ୍ଷରର ବିଲୋପ କଲେ ତାହା ଭିନ୍ନ ଅର୍ଥ ଅର୍ଥାତ୍ ଗ୍ରୀଷ୍ମଋତୁର ବର୍ଣ୍ଣନା ହେବ ।

**ଯଥା-** ରସ ଗୀତରେ କାମୁକ ଉଲ୍ଲାସ
ମଣି ଆଚ୍ଛାଦନେ ଘନ ବିଳାସ

**ଅର୍ଥାତ୍-** ଗ୍ରୀଷ୍ମ ଆଗମନୀ ହେତୁ କାମୀଜନ ମାନେ ରସଗୀତରେ ଉଲ୍ଲସିତ ହେଲେ । ଅତ୍ୟଧିକ ଗରମ ଜ୍ୱାଳାରୁ ମୁକ୍ତି ପାଇବା ପାଇଁ କାମିନୀମାନେ ଅଧିକ ଶୀତଳଦାୟୀ ମଣିହାରମାନ ପରିଧାନ କରି ପ୍ରେମ ବିଳାସରେ ମଜ୍ଜିଲେ । ଏହିପରି ଭାବରେ କବି ଅଦ୍ଭୁତ ଶବ୍ଦ ବିନ୍ୟାସ, ରମଣୀୟ ପଦ ବିନ୍ୟାସ, ବିଭିନ୍ନ ରାଗ- ରାଗିଣୀ ଓ ଅଳଙ୍କାରାଦିର ପ୍ରୟୋଗ କରି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟକୁ ଶ୍ରୁତି ମଧୁର ମାଧୁର୍ଯ୍ୟମୟ ଓ ରସମୟ କରି ଗଢ଼ି ତୋଳିଛନ୍ତି ।



# କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ- ଏକ ଅନୁଶୀଳନ

କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର ରଚୟିତା ମଧ୍ୟଯୁଗୀୟ ଓଡ଼ିଆ ରୀତିକାବ୍ୟ ପରଂପରାର ଶେଷ ରଶ୍ମି- କବିସୂର୍ଯ୍ୟ ବଳଦେବ ରଥ । ମଧ୍ୟ ଯୁଗୀୟ ଓଡ଼ିଆ ରୀତିକାବ୍ୟ ରଚନା ପରମ୍ପରାର ନିଶାନ୍ତ ଏବଂ ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟିର ଉଷାଲଗ୍ନର ମଧ୍ୟବର୍ତ୍ତୀ ସମୟରେ ଏହି ଚମ୍ପୂ କାବ୍ୟର ସୃଷ୍ଟି । ତେଣୁ ଏଥିରେ ଉତ୍ତର ମଧ୍ୟଯୁଗୀୟ ଓ ଆଧୁନିକ ଚେତନାର ମିଶ୍ରରାଗର ବର୍ଣ୍ଣବିଭା ଫୁଟି ଉଠିଛି । ଓଡ଼ିଆ ଗୀତଭିନୟ ଓ ଚମ୍ପୂକାବ୍ୟ ପରଂପରାର ଏହା ଏକ ଅନୁପମ, କାଳଜୟୀ କଳାକୃତି ।

କବିସୂର୍ଯ୍ୟଙ୍କ ଚମ୍ପୂ ରଚନା ବେଳକୁ ଭାରତୀୟ ସଂସ୍କୃତ ସାହିତ୍ୟ ଜଗତରେ ଚମ୍ପୂ ବେଶ୍ ପ୍ରଭାବ ବିସ୍ତାର କରି ସାରିଥିଲା । ବିଶେଷତଃ ଉତ୍ତର ଓ ଦକ୍ଷିଣ ଭାରତରେ ଗଢ଼ି ଉଠିଥିବା ଭକ୍ତି ଆନ୍ଦୋଳନ ହିଁ ଏହି ଚମ୍ପୂ ରଚନାର ଉନ୍ମେଷ ଓ ବିକାଶ ଦିଗରେ ବିଶେଷ ସହାୟକ ହୋଇଥିଲା । ଭୋଜରାଜଙ୍କ ଭୋଜଚମ୍ପୂ ବା ରାମାୟଣ ଚମ୍ପୂ, ତ୍ରି-ବିକ୍ରମ ଭଟ୍ଟଙ୍କ ନଳଚମ୍ପୂ, ସୋମଦେବଙ୍କ ଯଶସ୍ତିଳକ ଚମ୍ପୂ, ଜୀବ ଗୋସ୍ୱାମୀଙ୍କ ଗୋପାଳଚମ୍ପୂ, କବି କର୍ଣ୍ଣପୁରଙ୍କ ଆନନ୍ଦ-ବୃନ୍ଦାବନ ଚମ୍ପୂ ପ୍ରଭୃତି ସଂସ୍କୃତ ଚମ୍ପୂକାବ୍ୟ ପରମ୍ପରାର ଏକ ଏକ ଉଚ୍ଚ କୋଟୀର କଳାସୃଷ୍ଟି । ଏହି ସଂସ୍କୃତ ଚମ୍ପୂକାବ୍ୟ ପରମ୍ପରାର ଆଦର୍ଶରେ ଓଡ଼ିଆ ସାହିତ୍ୟ ଜଗତରେ ମଧ୍ୟ ଉଭୟ ସଂସ୍କୃତ ଏବଂ ଓଡ଼ିଆ ଭାଷାରେ ଚମ୍ପୂ ରଚନାର ଉଦ୍ୟମ ଆରମ୍ଭ ହୋଇଥିଲା । କବି ଚକ୍ର ପାଣି ପଟ୍ଟନାୟକଙ୍କ ଗୁଣ୍ଡିଚା ଚମ୍ପୂ, ଭଗବାନ ବ୍ରହ୍ମାଙ୍କ ମୃଗୟା ଚମ୍ପୂ, ନୀଳାମ୍ବର ଆଚାର୍ଯ୍ୟଙ୍କର ଚନ୍ଦନ ଯାତ୍ରା- ଚମ୍ପୂ, ଭୁବନେଶ୍ୱର ମିଶ୍ର ବଡ଼ ପଣ୍ଡାଙ୍କ ଆନନ୍ଦ ବୃନ୍ଦାବନ ଚମ୍ପୂ, ଯଦୁନାଥ ସିଂହଙ୍କର ପ୍ରେମ ସାଗର ଚମ୍ପୂ, ସଦାଶିବ ମିଶ୍ର-ଶର୍ମାଙ୍କର ଚନ୍ଦନ ଚମ୍ପୂ, ସୁଦର୍ଶନ ମିଶ୍ରଙ୍କର ପରିଣୟ ଚମ୍ପୂ, ଭାଗୀରଥି ମିଶ୍ରଙ୍କର ନବକିଶୋର ଚମ୍ପୂ ପ୍ରଭୃତି ସଂସ୍କୃତ ଭାଷାରେ ରଚିତ ହୋଇଥିଲା । ଓଡ଼ିଶାରେ ଏହି ସଂସ୍କୃତ ଚମ୍ପୂ ରଚନା ସହିତ ଓଡ଼ିଆ ଭାଷାରେ ମଧ୍ୟ ଚମ୍ପୂମାନ ରଚନା କରାଯାଇଥିଲା । ଉପେନ୍ଦ୍ର ଭଞ୍ଜଙ୍କର ଚଉପଦୀ ଚନ୍ଦ୍ର, ବନମାଳୀ ଦାସଙ୍କର ରାମାୟଣ ଚମ୍ପୂ, କିଶୋର୍ ଚନ୍ଦ୍ର ରାଜେନ୍ଦ୍ର ଦେବଙ୍କର ଝୁଲଣ ଚମ୍ପୂ, ଦାମୋଦର ପଟ୍ଟନାୟକଙ୍କର ଜୀବନ ଚମ୍ପୂ, ଗୋବିନ୍ଦ ରାୟଗୁରୁଙ୍କର ବୃନ୍ଦାବନ

ଚନ୍ଦ୍ରାନନ୍ଦ ଚମ୍ପୂ, ଶ୍ୟାମବନ୍ଧୁ ଦାସଙ୍କ ଜାତୀୟ ଚମ୍ପୂ, ନବକିଶୋର ମହାନ୍ତିଙ୍କର କିଶୋର ବିଳାସ ଚମ୍ପୂ, ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ଚଟକ ଚନ୍ଦ୍ରହାସ ଚମ୍ପୂ, ଲାଲ୍‌ମୋହନ ପଟ୍ଟନାୟକଙ୍କର ଜୀବନ ଚମ୍ପୂ, ସୁନ୍ଦର ମଣି ପଟ୍ଟନାୟକଙ୍କର କିଶୋରୀ ଚନ୍ଦ୍ରନନ୍ଦ ଚମ୍ପୂ, ଓଡ଼ିଆ ଚମ୍ପୂ କାବ୍ୟ ପରମ୍ପରାର ଏକ ଏକ ସାର୍ଥକ ସୃଷ୍ଟି । ମାତ୍ର- କବି ସୂର୍ଯ୍ୟ ବଳଦେବ ରଥ ବିରଚିତ- 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଓଡ଼ିଆ ଚମ୍ପୂକାବ୍ୟ ପରମ୍ପରାର ଏକ ଅମଳିନ କାଳକୃତି । ଏହି ଚମ୍ପୂ- ରଚନାଟି ଖଣ୍ଡ କାବ୍ୟ ପର୍ଯ୍ୟାୟ ଭୁକ୍ତ । ଏହାର ରଚନା ଶୈଳୀର ସ୍ୱାତନ୍ତ୍ର୍ୟ ଓ ମହତ୍ତ୍ୱ ରହିଛି । କବି ସୂର୍ଯ୍ୟଙ୍କ ଏହି ଚମ୍ପୂ ଉଭୟ ସଂସ୍କୃତ ଏବଂ ଓଡ଼ିଆ ଭାଷାରେ ରଚିତ ହୋଇଛି ।

ଚମ୍ପୂ କାବ୍ୟ ମୁଖ୍ୟତଃ ଉଭୟ ଗଦ୍ୟ ଓ ପଦ୍ୟାତ୍ମକ ଶୈଳୀରେ ରଚିତ । ଯେଉଁଥି ପାଇଁ ଅଳଙ୍କାର ଶାସ୍ତ୍ରରେ କୁହାଯାଇଛି-

"ଗଦ୍ୟ ପଦ୍ୟମୟଂ କାବ୍ୟଂ ଚମ୍ପୂରି ତ୍ୟଭିଧୀୟତେ ।"

ଅର୍ଥାତ୍- ଉଭୟ ଗଦ୍ୟ ଏବଂ ପଦ୍ୟମୟ ରଚନା ହିଁ ଚମ୍ପୂ ପଦବାଚ୍ୟ । ଆଚାର୍ଯ୍ୟ ଦଣ୍ଡୀ ଚମ୍ପୂ ସମ୍ପର୍କରେ କହିଛନ୍ତି- ଚମ୍ପୂ କାବ୍ୟ ଉଭୟ ଦିବ୍ୟ ଏବଂ ଅଦିବ୍ୟ ଭାଷାରେ ଅର୍ଥାତ୍ - ସଂସ୍କୃତ ଓ ପ୍ରାକୃତ ଭାଷାର ସମ୍ମିଶ୍ରଣରେ ହିଁ ରଚିତ ହେବ । ଏହି ଚମ୍ପୂ କାବ୍ୟର ଶୈଳୀ ମୁଖ୍ୟତଃ ଖଣ୍ଡକାବ୍ୟର ରଚନା ଶୈଳୀ ପରି । ପଣ୍ଡିତ ବିଶ୍ୱନାଥ କବି ରାଜ 'ସାହିତ୍ୟ ଦର୍ପଣ' ଗ୍ରନ୍ଥରେ ଏହି ଖଣ୍ଡ କାବ୍ୟ ସଂପର୍କରେ କହିଛନ୍ତି-

"ଭାଷା-ବିଭାଷା ନିୟମାତ୍ କାବ୍ୟ ସର୍ଗ ସମୁଜ୍ଝିତମ୍
ଏକାର୍ଥ ପ୍ରବଣୈଃ ପଦୈଃ ସନ୍ଧି ସାମଗ୍ର୍ୟ ବର୍ଜିତମ୍
ଖଣ୍ଡ କାବ୍ୟଂ ଭବେତ୍ କାବ୍ୟ ସ୍ୟୈକ ଦେଶାନୁସାରୀ ଚ ।"

ଅର୍ଥାତ୍- ଖଣ୍ଡକାବ୍ୟ କୌଣସି ଭାଷା ବା ଉପଭାଷାରେ ସୃଷ୍ଟି ହେବ । ଏଥିରେ ସର୍ଗବନ୍ଧ ନଥିବ, ସନ୍ଧି ବାହୁଲ୍ୟ ନଥିବ ଓ କାହାଣୀ ସୁଦୀର୍ଘ ହୋଇନଥିବ । ଏହା କୌଣସି କାବ୍ୟର କୌଣସି ଅଂଶର ଅନୁସରଣରେ ମଧ୍ୟ ରଚିତ ହୋଇନଥିବ ।

ଆଳଂକାରିକ ଗୋପୀନାଥ କବି ଭୂଷଣ ଖଣ୍ଡ କାବ୍ୟ ସଂପର୍କରେ କହିଛନ୍ତି-

ଗୀତାନାମପି କାବ୍ୟତ୍ୱଂ ଯଦ୍ୟପ୍ୟୁକ୍ତି ବିଶେଷଣାମ୍
କ' କାରାଦି 'କ୍ଷ' କାରାନ୍ତୈ ଚତୁସ୍ତ୍ରିଂସନ୍ତି ରକ୍ଷରୈଃ
ଯଦ୍ଧୈକଂ ଚରିତଂ ଗୀତଂ ଖଣ୍ଡକାବ୍ୟମିତି ସ୍ମୃତମ୍ ।

ଅର୍ଥାତ୍- ଏହାର ଗୀତ ଏକ ଚରିତ ସମ୍ବନ୍ଧୀୟ ହୋଇଥିବ, 'କ' ଠାରୁ 'କ୍ଷ' ଚଉତିରିଶଟି ଅକ୍ଷର ଅନୁକ୍ରମରେ ଚଉତିଶା ରୀତିରେ ରଚିତ ହେବ । କିଶୋର ଚନ୍ଦ୍ରାନନ୍ଦ

ଚମ୍ପୂ ଚଉତିଶା ରୀତିରେ ରଚନା ହୋଇଥିଲେ ହେଁ, ଏଥିରେ ଚଉତିଶା ପରି ଗୋଟିଏ ରାଗ ବା ବୃତ୍ତର ବ୍ୟବହାର ନ' ହୋଇ ବିଭିନ୍ନ ରାଗ- ରାଗିଣୀର ଉପଯୋଗ ହୋଇଛି । କବିସୂର୍ଯ୍ୟ ଏହି ଚମ୍ପୂରେ ସଂସ୍କୃତ ରଚନା ଭାଗ ସହ ଚଉତିରିଶ ଗୋଟି ବ୍ୟଞ୍ଜନ ବର୍ଣ୍ଣକୁ ନେଇ ଚଉତିରିଶ ଗୋଟି ଓଡ଼ିଆ ଗୀତର ସଂଯୋଜନା କରିଛନ୍ତି । ଏହାର ପ୍ରତ୍ୟେକଟି ଗୀତର ନୂତନ ମନୋରମ ରାଗ, ବୀଚକ୍ଷଣ- ଅନୁପମ ଶବ୍ଦ ସଂଯୋଜନା, ସାନ୍ଦ୍ର-ନିବିଡ଼ ଭାବ, ନାଟକୀୟ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା, ସାଙ୍ଗୀତିକ ମାଧୁର୍ଯ୍ୟ ଅନ୍ୟନ୍ୟ, ଅନୁପମ । ଏଥିରେ କବିଙ୍କର ବର୍ଣ୍ଣନା ବିଳାସ, କଳ୍ପନା ଚାତୁରୀ, ବାଗ୍ ବୈଦଗ୍ଧ ଅଳଂକରଣ ଆଧାରରେ ପଲ୍ଲବିତ ଓ ପୁଷ୍ପିତ । ମୁଖ୍ୟତଃ ଓଡ଼ିଆ କୃଷ୍ଣ ଲୀଳାତ୍ମକ କାବ୍ୟରଚନାର ଅନ୍ତିମ ପର୍ଯ୍ୟାୟରେ ଗୀତାଭିନୟ ଓ ଚମ୍ପୂ କାବ୍ୟର ରଚନା କରାଯାଇଥିଲା । ଓଡ଼ିଆ ବୈଷ୍ଣବ କବି ମାନେ କୃଷ୍ଣ ଚରିତ ଓ ରାଧାକୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳାକୁ ଲୋକଗ୍ରାହ୍ୟ ଓ ଲୋକ ପ୍ରିୟ କରିବାର ଲକ୍ଷ୍ୟ ନେଇ ଏହି ଚମ୍ପୂ ରଚନା କରିଥିଲେ । ଏଥିରେ ମୁଖ୍ୟତଃ କୃଷ୍ଣ କଥାକୁ ଗୀତାତ୍ମକ ଧାରାରେ ଅଭିନୟ ଓ ଦୃଶ୍ୟ ଧର୍ମ୍ୟତା ଭିତରେ ଉପସ୍ଥାପନ କରାଯାଇଥିଲା । ତେଣୁ ଚମ୍ପୂ ଏକ ଦିଗରେ କୃଷ୍ଣ ଚରିତ ପ୍ରେମୀ, କୃଷ୍ଣରସ ଲାଳସୀ ଭକ୍ତ ଓ ରସିକ ପାଠକ ମାନଙ୍କୁ ଚରମ ପରିତୃପ୍ତି ଦେଇଛି; ଅନ୍ୟଦିଗରେ ଅଭିନୟ ପ୍ରେମୀ, ସଙ୍ଗୀତ ଓ ନାଟ୍ୟ ମୋଦୀମାନଙ୍କୁ ଚରମ ସନ୍ତୋଷ ମଧ୍ୟ ପ୍ରଦାନ କରିଛି । ବାସ୍ତବରେ ଏହା ଉଭୟ କାବ୍ୟ ଓ ନାଟକର ଏକ ମଧ୍ୟବର୍ତ୍ତୀ ମନୋହର ଶିଳ୍ପରୀତି ।

ସମଗ୍ର ଚମ୍ପୂ କାବ୍ୟଟି ବୈଷ୍ଣବ ଧର୍ମ ଜଗତର ଆରାଧ୍ୟ ଦେବତା ମହାଭାବମୟ ପରମ ପ୍ରେମମୟ, ପରଂବ୍ରହ୍ମ ଶ୍ରୀକୃଷ୍ଣ ଏବଂ ଆରାଧ୍ୟ ଦେବୀ ମହାଭାବମୟୀ, ପରମ-ପ୍ରେମମୟୀ, ହ୍ଲାଦିନୀ ଶକ୍ତିମୟୀ ଶ୍ରୀରାଧାଙ୍କର ପ୍ରେମାନୁରାଗ, ପ୍ରେମ, ମିଳନ, ବିରହ, ବିଚ୍ଛେଦ, ଉତ୍କଣ୍ଠା ଓ ପୁନର୍ମିଳନକୁ ନେଇ ଗତିଶୀଳ । ଏକ ଦିଗରେ ରାଧା- କୃଷ୍ଣଙ୍କର ମାନବ ସୁଲଭ ପ୍ରେମ- ପ୍ରଣୟର ଆବେଗିକ ଚିତ୍ରଣ ଓ ଅନ୍ୟ ଦିଗରେ ରାଧା- କୃଷ୍ଣଙ୍କର ଅପ୍ରାକୃତ ପ୍ରେମମୂର୍ତ୍ତି ଓ ଅପ୍ରାକୃତ, ଦିବ୍ୟ ପ୍ରେମର ବର୍ଣ୍ଣନାରେ ଏ କାବ୍ୟଟି ମହିମାନ୍ୱିତ ହୋଇଉଠିଛି । ଯମୁନା କୂଳସ୍ଥ କଦମ୍ବ ମୂଳରେ କୃଷ୍ଣଙ୍କର ଅପରୂପ, ବିଶ୍ୱ ବିମୋହନ ସୌନ୍ଦର୍ଯ୍ୟରେ ରାଧା ବିମୁଗ୍ଧ ହୋଇପଡ଼ିଛନ୍ତି । ରାଧା କୃଷ୍ଣଙ୍କର ପାର୍ଥୀବ ରୂପ ସତ୍ତାର ଆଙ୍ଗିକ ଲାବଣ୍ୟଭିତରେ ସନ୍ଦର୍ଶନ କରିଛନ୍ତି- ଅପାର୍ଥୀବ ମହାସତ୍ତାକୁ । ରାଧା ସାଧାରଣୀ ଅବସ୍ଥାରେ ନୁହେଁ, ତ୍ୱରୀୟ ଅବସ୍ଥାରେ କୃଷ୍ଣଙ୍କର ସେହି ଅପୂର୍ବ ଅଲୌକିକ କାନ୍ତିର ସନ୍ଦର୍ଶନ କରିଛନ୍ତି । ଯେଉଁଥି ପାଇଁ ରାଧା କୃଷ୍ଣଙ୍କର ସେହି ଅଲୌକିକ, ଅପରୂପ ଦିବ୍ୟ କାନ୍ତିର ଶୋଭାକୁ ଭାଷାରେ ବ୍ୟକ୍ତ କରି ପାରିନାହାଁନ୍ତି । କବିଙ୍କ ଭାଷାରେ-

"କି ହେଲାରେ, କହିତ ନୁହଁଇ ଭାରତୀରେ
କାଲି ଯା' ଦୂରରୁ ଦେଖି କଳନା କଲା ମୋ ଆଖି
କଳା ଇନ୍ଦୀବର ଆରତୀରେ ।"

(ଚମ୍ପୂ- 'କ' ଗତ, ପଦ-୧)

କବି ସୂର୍ଯ୍ୟଙ୍କର ଏହି ପଦଟିରେ ନାରୀ ପ୍ରାଣର ସକଳ ରୂପ ମୁଗ୍ଧତା, ରସବିହ୍ୱଳତା, ପୂର୍ବରାଗର ବିରହ ବ୍ୟାକୁଳତା, ଯୌବନର ଆବେଗମତ୍ତତା ଅତିରେ ଅପୂର୍ବ କାବ୍ୟିକ ସୁଷମା ଭିତରେ ମୁହୂର୍ତ୍ତକରେ ଝରି ପଡ଼ିଛି । କୃଷ୍ଣଙ୍କର ଭୁବନ ବିମୋହନ ବଂଶୀ ସ୍ୱନ ମଧ୍ୟ ରାଧାଅଙ୍ଗ ଓ ପ୍ରାଣରେ ସୃଷ୍ଟି କରିଛି- ସ୍ୱେଦ, ରୋମାଞ୍ଚ ଓ ବେପଥୁ । ଏକ ଅନିର୍ବଚନୀୟ ଦିବ୍ୟ ଉପଲବ୍ଧି ଓ ଅପରିମେୟ ଆନନ୍ଦ ରାଧାଙ୍କୁ ଆତ୍ମ ବିହ୍ୱଳତା କରିଛି । ପ୍ରୀତି ରସର ଉତ୍‌କୂଳ ପ୍ଲାବନରେ ନିମଜ୍ଜିତା ହୋଇ ରାଧା ଅକୁଣ୍ଠିତ ଚିତ୍ତରେ ସଖୀ ଲଳିତାଙ୍କୁ କହିଛନ୍ତି-

"କହୁଛି ବରଜି ଲଜ୍ଜା କେବଳ ହେଲା ମୋ ମଜ୍ଜା
ମଜ୍ଜି ଯିବିକି ଉଭା ରତିରେ ।"

(ଚମ୍ପୂ- 'କ' ଗୀତ, ପଦ-୨)

ମହାକବି ଜୟଦେବ ମଧ୍ୟ ତାଙ୍କ 'ଗୀତ ଗୋବିନ୍ଦ'ରେ ରାଧାଙ୍କର ଏହି ଅନିର୍ବଚନୀୟ ଉପଲବ୍ଧି ଓ ରାଧାଙ୍କ ହୃଦୟର ପ୍ରେମ ଭାବନାକୁ ସଖୀ ମାଧ୍ୟମରେ ପ୍ରକଟନ କରି କହିଛନ୍ତି-

"ଉରସି ମୁରାରେ ରୂପହିତ ହାରେ
ଘନଇବ ତରଳ ବଳାକେ,
ତଡ଼ିଦିବ ପୀତେ ରତି ବୀପରୀତେ
ରାଜସି ସୁକୃତ ବିପାକେ ।"

ଏଠାରେ ଗୀତ ଗୋବିନ୍ଦର ସଖୀ କବି ସୂର୍ଯ୍ୟଙ୍କ ରାଧାଙ୍କ ପରି ପ୍ରଗଲ୍‌ଭା ହୋଇଉଠିଛି ।

ଚମ୍ପୂରେ ଜୀବାତ୍ମା ରୂପୀ ରାଧା ଓ ପରମାତ୍ମା ରୂପୀ କୃଷ୍ଣଙ୍କର ମହାମିଳନର ଚିତ୍ରକୁ ସୂଚିତ କରାଯାଇଛି । ରାଧା ନିଜର ମିଳନ ପିପାସାକୁ ଚରିତାର୍ଥ କରିବା ପାଇଁ ନିଜର ଅତିପ୍ରିୟ, ପ୍ରାଣସଖୀ ଲଳିତାଙ୍କୁ ଅନୁରୋଧ କରିଛନ୍ତି । ବୈଷ୍ଣବ ରସଶାସ୍ତ୍ରରେ - ଲଳିତାଙ୍କୁ ଅତ୍ୟନ୍ତ ପ୍ରତ୍ୟୁତ୍ପନ୍ନ ମତୀ, ନିସ୍ୱାର୍ଥ ଦୂତୀ ରୂପରେ ଚିତ୍ରଣ କରାଯାଇଛି ।

ଲଳିତା ନିଜର ପ୍ରତ୍ୟୁତ୍ପନ୍ନ ମତୀତା ଓ ତୀକ୍ଷ୍ଣ ବୁଦ୍ଧି ଯୋଗୁଁ ରାଧାଙ୍କର ମନୋଭାବ ଜାଣିପାରି ରାଧାଙ୍କର କୃଷ୍ଣପ୍ରେମର ଗାଢ଼ତା ଓ ନିଷ୍ଠାର ପରୀକ୍ଷା କରିବା ପାଇଁ ରାଧାଙ୍କୁ ଆଶ୍ୱାସନା ଜାଣୀ ଦେବା ପରିବର୍ତ୍ତେ ମୃଦୁ ଭର୍ତ୍ସନା କରି କହିଛନ୍ତି-

"ଖରାପ ତୁ ହେଲୁରେ,
ଖେଳାଲୋଳ ଖଞ୍ଜନାକ୍ଷି କି ସାହସ କଲୁରେ ।
ଖର୍ବ ହୋଇ ସୁରତରୁ କୁସୁମ ବାଞ୍ଛିଲୁରେ,
ଖେଦ-ବୀଜ ନିଜ ହୃଦ- କେଦାରେ ବିଞ୍ଚିଲୁରେ ।"
(ଚମ୍ପୂ- 'ଖ' ଗତ, ପଦ-୧)

ସଖୀ ଲଳିତା ରାଧାଙ୍କୁ ଉପଲକ୍ଷ୍ୟ କରି କହିଛନ୍ତି- ଲୋ ଖଞ୍ଜନ ନୟନୀ, ଚଞ୍ଚଳାକ୍ଷୀ ତୁ ମର୍ତ୍ତ୍ୟର ଅତି ତୁଚ୍ଛ, କ୍ଷୁଦ୍ରଜୀବ ହୋଇ ଅତ୍ୟନ୍ତ ଦୁର୍ଲ୍ଲଭ ସ୍ୱର୍ଗୀୟ କୁସୁମକୁ ପାଇବା ପାଇଁ କାହିଁକି ଇଚ୍ଛା କରିଅଛୁ? କଳାନାଗ ତୁଲ୍ୟ ସେ କୃଷ୍ଣ ହେଉଛନ୍ତି- ମହାତେଜ ପୁଞ୍ଜର ଆଧାର । ସେହି କୃଷ୍ଣ ନାଗର ବିଷଜ୍ୱାଳା ଏବଂ ତେଜରାଶିର ଦାହ ଯନ୍ତ୍ରଣାକୁ ତୁ କଣ ସହ୍ୟ କରି ପାରିବୁ? କେବଳ ତୁ କୃଷ୍ଣଙ୍କୁ ପାଇବା ପାଇଁ ସାସହ କରି ନିଜ ହୃଦୟ ରୂପକ ଶସ୍ୟକ୍ଷେତ୍ରରେ ଦୁଃଖ ରୂପକ ବୀଜକୁ ବପନ କରି ଅଛୁ । ସେହି ବିଷ ଏବଂ ତେଜପୁଞ୍ଜର ଜ୍ୱାଳା ସହ୍ୟ କରି ନପାରି ତୋର କୋମଳ ଅଙ୍ଗ ଝାଉଁଳି ପଡ଼ିଲାଣି । ତେଣୁ ତୁ ସେ କଣ୍ଟକିତ ପଥରୁ ନିବୃତ୍ତ ରହ ।

ମାତ୍ର- କୃଷ୍ଣ ପ୍ରେମ ପାଗଳିନୀ, ପ୍ରୀତି ମୁଗ୍ଧା ରାଧା ଲଳିତାଙ୍କର କୌଣସି ଉର୍ଣ୍ଣନା ଓ ପ୍ରତିରୋଧକୁ ନ'ମାନି କୃଷ୍ଣଙ୍କ ସହ ମିଳନ କାର୍ଯ୍ୟରେ ସହାୟତା କରିବା ପାଇଁ ଲଳିତାଙ୍କୁ ଅନୁରୋଧ କରିଛନ୍ତି । କବିଙ୍କ ଭାଷାରେ-

"ଗଲାଣି ତ ଗଲା କଥାରେ ସଙ୍ଗାତ
ଗଲାଣି ତ ଗଲା କଥା,
ଗୁପତେ ସିନା ମୁଁ ତୋତେ ପଚାରିଲି
ବଳି ପଡ଼ିବାରୁ ବ୍ୟଥା
ଗଙ୍ଗାରୁ ବିଶଦ ଗଭୀର ତୋହୃଦ
ଗଣ୍ଠିଧନ ତୋର ସ୍ନେହ
ଗୋଡ଼ ଖସି ଖେଦ ହେବାର ଦରଦ
ଯିବାର ଉପାୟ କହ ।"
(ଚମ୍ପୂ- 'ଗ' ଗୀତ, ପଦ-୧)

ରାଧା ନିଜର ପ୍ରାଣପ୍ରିୟ ସଖୀ ଲଳିତାଙ୍କୁ ସଙ୍ଗାତ ସମ୍ବୋଧନ କରି ଚାଟୁବାକ୍ୟରେ କହିଛନ୍ତି- ତୋ ହୃଦୟ ବଡ଼ ଉଦାର ଏବଂ ମହାନ୍ । ମୋ ପ୍ରତି ତୋ ହୃଦୟରେ ଅମାପସ୍ନେହ ଗଣ୍ଠିଧନ ପରି ସାଇତା ହୋଇ ରହିଛି । ତେଣୁ ମୁଁ ତ ପିଚ୍ଛିଳ ପଥରେ ପାଦ ଖସାଇ ବହୁ

କଷ୍ଟ ଯାଇ ସାରିଲିଣି । କୃଷ୍ଣ ପ୍ରେମକୁ ଅମୃତ ଭାବି ହଳାହଳ ବିଷ ମଧ୍ୟ ପାନ କରି ବହୁ ଜ୍ୱଳନ, ଯନ୍ତଣା ପାଇଲିଣି । କେବଳ ସେତିକି ନୁହେଁ, କୃଷ୍ଣଙ୍କ ମୁରଲୀଧ୍ୱନିର ମଧୁର ମୂର୍ଚ୍ଛନାର ସ୍ୱର ଓ ଶର ମୋର ଶ୍ରବଣ, ଦେହ, ମନ, ପ୍ରାଣକୁ ପ୍ରୀତି ଲୁବ୍ଧ, ପୁଲକିତ ଓ ରୋମାଞ୍ଚିତ କରି ସାରିଛି । ସମସ୍ତ ବିବେକ, ଲଜ୍ଜା, ଗ୍ଲାନି, ସାମାଜିକ ଶୃଙ୍ଖଳାକୁ ପଛରେ ପକାଇ ମୁଁ ଶୟନେ, ସ୍ୱପନେ, ଜାଗରଣେ କେବଳ ସେହି କୃଷ୍ଣଙ୍କ କଥାହିଁ ଭାବି ଚାଲିଛି । ତେଣୁ ହେ ସଖୀ ! କୃଷ୍ଣଙ୍କ ସହ ସାକ୍ଷାତ କରାଇ ମିଳନ କ୍ଷେତ୍ର ପ୍ରସ୍ତୁତ କରିବା ପାଇଁ ମୁଁ ତୋତେ ଅନୁରୋଧ କରୁଛି । ରାଧାଙ୍କର ଏହି ଅନୁନୟ, ବିନୟଭାବ ଦେଖି ସଖୀ ଲଳିତା କୃଷ୍ଣଙ୍କ ନିକଟକୁ ଗମନ କରିଛନ୍ତି ।

ଯମୁନା କୂଳସ୍ଥ କଦମ୍ବ ମୂଳରେ କୃଷ୍ଣଙ୍କର ଝାଉଁଳି ପଡ଼ିଥିବା ଶ୍ରୀଅଙ୍ଗକୁ ଦେଖି ଲଳିତା କୃଷ୍ଣଙ୍କୁ ଉପଲକ୍ଷ୍ୟ କରି କହିଛନ୍ତି-

"ନୂଆନଟ ପଟଳୀ ମୁକୁଟ ହେ ନାହିଁ କି ଶ୍ରୀଅଙ୍ଗ ସୁଖ
ନପଟ ନିସ୍ତେଜ ଦିଶୁଛିତ ଆଜ ନିରଳସ ଚନ୍ଦ୍ରମୁଖ ।"

(ଚମ୍ପୂ- 'ଙ' ଗୀତ- ପଦ-୧)

ଲଳିତା କହୁଛନ୍ତି- ହେ ନିପୁଣ ନୃତ୍ୟକାରୀ, ଯୁବକ ଶ୍ରେଷ୍ଠ କୃଷ୍ଣ ! ଇନ୍ଦ୍ରନୀଳ ମଣିର ତେଜ ଓ ନୀଳପଦ୍ମର ଶୋଭାଧାରଣ କରିଥିବା ତୁମର ଶ୍ରୀଅଙ୍ଗ କାହିଁକି ମଳିନ, ନିସ୍ତେଜ ଦିଶୁଅଛି । ତୁମର ଚନ୍ଦ୍ରମୁଖ ମଧ ନିରଳସ ଦିଶୁଅଛି । ଲଳିତା କୃଷ୍ଣଙ୍କୁ କଟାକ୍ଷ କରି କହିଛନ୍ତି- ସ୍ୱର୍ଗର କେଉଁ ସୁନ୍ଦରୀ ଅପ୍ସରୀକୁ ଦେଖି ପ୍ରେମାନୁରାଗ କାରଣରୁ ତୁମର ଦେହ କାମପୀଡ଼ାରେ ଜର୍ଜରିତ ହୋଇ ପଡ଼ିଛି କି ? କବିଙ୍କର ଭାଷାରେ-

"ନବହେମଦ୍ୟୁତି ଅମରୀ ଏ ନିତି ନିଅନ୍ତି ଫୁଲ ଏ ବନୁ
ନେତ୍ର ପଥେ ପଡ଼ିଗଲେ କି ସେ ଛାଡ଼ିଯାଉ ନାହିଁ ଜ୍ୱର ମନୁ ।"

ଲଳିତା ଶବ୍ଦକଟାକ୍ଷ ବାଣ ମାଧ୍ୟମରେ ଅତର୍କିତ ଆକ୍ରମଣ କରି କୃଷ୍ଣଙ୍କର ରାଧାଙ୍କ ପ୍ରତିଥିବା ପ୍ରେମ- ଭାବନାକୁ ପରୀକ୍ଷଣ କରିଛନ୍ତି । କବି ଏହି ପ୍ରସଙ୍ଗ ବର୍ଣ୍ଣନାରେ ଯେଉଁ ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି, ତାହାହିଁ କବିସୂର୍ଯ୍ୟ କାବ୍ୟିକ ପ୍ରତିଭାର ଶ୍ରେଷ୍ଠ ନିଦର୍ଶନ । କୃଷ୍ଣ ନିଜର ମନୋଭାବ ସଂଗୋପନ କରି ଲଳିତାଙ୍କୁ ଯେଉଁ ନାନା ଛଳନାମୟ କୈଫିୟତ୍ ଦେଇଛନ୍ତି, ତାହା କିପରି ଅପ୍ରାସଙ୍ଗିକ ହାସ୍ୟାସ୍ପଦ ଓ ଆମୋଦ ଜନକ ହୋଇଛି, ତାହାକୁ କବି ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି । ଲଳିତା କୃଷ୍ଣଙ୍କର ମନୋଭାବ ଜାଣିପାରି କହିଛନ୍ତି-

"ଛଳବାହିନୀଶ ହେ, ଛାଡ଼ ଓ ଏ ସାହସ ହେ
ଛବି ତ' ଆବିଳଦିଶେ, ଛପିବାର ଅଛିକି ସେ ।"

(ଚମ୍ପୂ-'ଛ' ଗୀତ- ପଦ-୧)

ଲଳିତା ଯେତେବେଳେ ଅନୁଭବ କରିଛନ୍ତି- କୃଷ୍ଣ ମଧ୍ୟ ରାଧାଙ୍କ ପ୍ରତି ନିବିଡ଼ ଭାବରେ ପ୍ରୀତି ଅନୁରକ୍ତ, ସେତେବେଳେ ଲଳିତା କହିଛନ୍ତି-

"ଶ୍ୟାମ ହେ ମୁ ଗଲିଚି, ଅଳି ତୁମର ନିବିଡ଼ ।"

କୃଷ୍ଣ ଅନୁଭବ କରିଛନ୍ତି- ରାଧାଙ୍କ ସହ ମିଳିତ ହେବାପାଇଁ ଲଳିତାହିଁ ଏକ ମାତ୍ର ସଂଯୋଗ ସେତୁ । ତେଣୁ ସେ ଲଳିତାଙ୍କୁ ଚାଟୁବାକ୍ୟ ପ୍ରକାଶ ପୂର୍ବକ ଅନୁରୋଧ କରିଛନ୍ତି-

"ନ' ଭାଙ୍ଗରେ ଶୁଭାଙ୍ଗି, ଭାରତୀ ହୁଅ ସାହା
ନୋହିଲେ ତୁ ପରିତ୍ରାଣ          ନିର୍ଦ୍ଦୟ ଅତନୁ ବାଣ
ନିଶେଷ କଲାଟି ଦେହ ରାହା ।"

(ଚମ୍ପୂ- 'ଞ' ଗୀତ- ପାଦ-୧)

କୃଷ୍ଣ କହୁଛନ୍ତି- ହେ ସୁଭାଙ୍ଗି ଲଳିତା !, ତୁମେ ମୋ ମନର କଥା ଜାଣିଛ । ତେଣୁ ମୋ କଥାକୁ ତୁମେ ଭାଙ୍ଗ ନାହିଁ । ନାଗରୀମାନଙ୍କ ମଧ୍ୟରେ ଶ୍ରେଷ୍ଠା, ଅତୁଳନୀୟା ସୁନ୍ଦରୀ ରାଧାଙ୍କ ସହିତ ନିପକୁଞ୍ଜରେ ମୋର କିପରି ମିଳନ ହେବ, ସେଥିପାଇଁ ତୁମେ ସହାୟତା କର । ତାପରେ ଲଳିତା କୃଷ୍ଣଙ୍କୁ ଆଶ୍ୱାସନା ଦେଇ ରାଧାଙ୍କ ନିକଟକୁ ଆସି ଛଳନା ପ୍ରକଟନ ପୂର୍ବକ କହିଛନ୍ତି-

"ତୋ ଘେନି ତମାଳଶ୍ୟାମ ମୋ ମରଜି କଷିଲାରେ
ତଥାପି ତ' ତିଳେହେଲେ ତୋ ସ୍ନେହେଁ ନ' ରସିଲା ରେ ।"

(ଚମ୍ପୂ- 'ତ' ଗୀତ -ପଦ-୧)

ଲଳିତାଙ୍କ ଠାରୁ ଏଭଳି ବିପରୀତବାଣୀ ଶୁଣି ରାଧାଙ୍କ ମୁଖମଣ୍ଡଳ ମଳିନ ପଡ଼ିଯାଇଛି । ଶରୀର ନିସ୍ତେଜ ହୋଇ ପଡ଼ିଛି । ରାଧାଙ୍କର ଏଭଳି ଦୟନୀୟ ଅବସ୍ଥା ଦେଖି ଲଳିତା ଛଳ ପରିତ୍ୟାଗ କରି କହିଛନ୍ତି-

"ବଲ୍ଲୀ ନିକଟକୁ ଚାଲିଯିବା
ବଂଶୀ ଗୀତ ପୀୟୁଷ ପିଇବା
ବିଭାବରୀ ନ ପାହୁଁ ଆସିବା ଅଜଣାରେ ।"

(ଚମ୍ପୂ- 'ବ' ଗୀତ, ପଦ-୪)

ସଖୀ ଲଳିତାଙ୍କ ଠାରୁ ଆଶ୍ୱାସନା ଓ ପ୍ରତିଶ୍ରୁତି ପାଇ ରାଧା ଆସ୍ୱସ୍ତ ପ୍ରକଟନ କରିଛନ୍ତି । ରାଧା ପ୍ରାଣ ଆନନ୍ଦରେ ତଲ୍ଲୀନ ହୋଇଛି । ତଥାପି ସେ କୃତ୍ରିମ ଅଭିମାନ ପ୍ରକଟନ କରି ଲଳିତାଙ୍କୁ କହିଛନ୍ତି-

"ପ୍ରିୟସହି, ପରମାଦ ବଡ଼ ତୁହି ଗୋ
ପାଗୁ କେତେ ଛନ୍ଦେ ମୋହି ଗୋ ।"
ପରମ ପଦରେ ନେଇ ଜାଣୁ ତୁ ବସାଇ
ପୁଣି ତହୁଁ ଜାଣୁ ତଳାତଳକୁ ଖସାଇ ।"

(ଚମ୍ପୂ- 'ପ' ଗୀତ-ପଦ -୧)

ପରିଶେଷରେ ସଖୀ ଲଳିତାଙ୍କ ସାହାଯତାରେ କୁଞ୍ଜ କାନନର ବାସନ୍ତୀକ ସୁଷମାର ଅପୂର୍ବ ଶୋଭାମୟ ପରିବେଶରେ ରାଧା-କୃଷ୍ଣଙ୍କର ମହାମିଳନ ଘଟିଅଛି ।

ରାଧା-କୃଷ୍ଣଙ୍କର ଯୁଗଳ ମିଳନ ମହୋତ୍ସବରେ ରାତି ପାହିଯାଇଛି । ଏହାପରେ ରାଧା ପ୍ରକୃତିସ୍ଥା ହୋଇ ମାନବୀ ସୁଲଭ ଭାବ ପ୍ରକଟନ କରିଛନ୍ତି । ରାଧା ଲଜ୍ଜାରୁଣ ମୁଖରେ ଶ୍ରୀକୃଷ୍ଣଙ୍କୁ କହିଛନ୍ତି-

"ଲୀଳାନିଧି ହେ, ଲାଜେ ମୁ ଗଲିଟି ସଢ଼ି
ଲୁଗାଇଛ କାହିଁ ଶ୍ୟାମ ହେ, ଦିଅ ମୋ ଲାଗି ଶାଢ଼ୀ ।"

(ଚମ୍ପୂ- 'ଲ' ଗୀତ, ପଦ-୧)

ଠିକ୍ ଏହିପରି ଅବିକଳ ଭାବରେ, ଜୟଦେବଙ୍କ 'ଗୀତ ଗୋବିନ୍ଦ'ର ରାଧା କହିଛନ୍ତି-

"କୁରୁ ଯଦୁନନ୍ଦନ ଚନ୍ଦନ ଶିଶିର
ତରେଣ କରେଣ ପୟୋଧର
ମୃଗମଦ ପତ୍ରକମଳ ମନୋଭାବ
ମଙ୍ଗଳ କଳସ ସହୋଦର ।"

ବାସ୍ତବରେ ରାଧା- କୃଷ୍ଣଙ୍କର ଏହି ମିଳନ ହେଉଛି- ଅପ୍ରାକୃତ ପ୍ରେମର ମହାମିଳନ । ଶ୍ୟାମ-ତେଜ ଓ ଗୌରତେଜର ମିଳନ ମାଧ୍ୟମରେ କବି ଆତ୍ମା-ପରମାତ୍ମା ମିଳନର ଚିତ୍ର ପ୍ରଦାନ କରିଛନ୍ତି । କୃଷ୍ଣ ହେଉଛନ୍ତି- ପରମପୁରୁଷ, ସଚ୍ଚିଦାନନ୍ଦ ବିଗ୍ରହ ସ୍ୱୟଂ ଭଗବାନ । ରାଧା ହେଉଛନ୍ତି- କୃଷ୍ଣଙ୍କର ହ୍ଲାଦିନୀ ଶକ୍ତିର ସାର ମହାଭାବମୟୀ ଓ ପରମ ପ୍ରେମମୟୀ । ଶ୍ୟାମତେଜ ଓ ଗୌରତେଜର ମହାମିଳନରେ ଭଗବାନ କୃଷ୍ଣଙ୍କର ଆନନ୍ଦମୟ ରୂପ ପ୍ରକଟିତ ହୋଇଛି ଓ ସେହି ଆନନ୍ଦମୟ ରୂପ ପରିପୂର୍ଣ୍ଣତା ଲାଭ କରିଛି ।



# ସାଂପ୍ରତିକ ଓଡ଼ିଆ ଉପନ୍ୟାସ- ସ୍ଥିତି ଓ ଗତି

ଜୀବନ ଓ ଜଗତ ସଂପର୍କୀତ ନାନାବିଧ ଜଟିଳ-ଜିଜ୍ଞାସା, ଆତ୍ମିକ ଅବବୋଧ ଓ ଅନ୍ୱେଷା, ଅଜ୍ଞାତ ବସ୍ତୁସତ୍ତାର ସନ୍ଧାନ ସହିତ ସତ୍ୟ ଉନ୍ମୋଚନର ଅସଲ ଚାବି କାଠି ହେଲା ଉପାନ୍ୟାସ ସାହିତ୍ୟ । ଉପନ୍ୟାସକାର ବା ସ୍ରଷ୍ଟାର ଭାବଭୂମି ଉପରେ ଏକ ବୃହତ୍ତର ପୁରୋଭୂମି ବା ପୃଷ୍ଠଭୂମି ରହିଥାଏ । ସେ ଅବିଚଳିତ ଭାବରେ ନିଜ ବିଶ୍ୱାସ ଓ ଅଭିଜ୍ଞତାର ଭୂମି ଉପରେ ଛିଡ଼ା ହୋଇ ଅମଡ଼ାବାଟ ଅବା ସ୍ରୋତର ପ୍ରତିକୂଳରେ ଯାଇ ଗଭୀର ଜୀବନାନୁଭୂତି, ସୂକ୍ଷ୍ମ ଅନ୍ତର୍ଦୃଷ୍ଟି ଓ ଜୀବନ ଦୃଷ୍ଟି ଦ୍ୱାରା ଜୀବନ ସହିତ ଜଡ଼ିତ ନାନାବିଧ ପ୍ରଶ୍ନ, ଆତ୍ମିକ ଆଲୋଡ଼ନ ଓ ଆନ୍ଦୋଳନ, ମାନସିକ ଦ୍ୱନ୍ଦ୍ୱ, ସଂଘର୍ଷ ଓ ଜିଜ୍ଞାସାର ଉତ୍ତର ଖୋଜିବା ସହିତ ଜୀବନ ସତ୍ୟ ଉନ୍ମୋଚନର ପ୍ରୟାସ କରିଥାଏ । ନିଜ ଜିଜ୍ଞାସାର ପରିପୂର୍ତ୍ତି ପାଇଁ ଅଜ୍ଞାତ ବସ୍ତୁ ବା ସତ୍ତାର ସନ୍ଧାନ ପାଇଁ ସ୍ରଷ୍ଟକୁ ଖଣ୍ଡାଧାରରେ ଚାଲିବାକୁ ପଡ଼େ । ଅସତ୍ୟର ପରଦା ହଟାଇ ସତ୍ୟର ଅସଲ ରହସ୍ୟର ଗଣ୍ଠିଗୁଡ଼ିକୁ ଖୋଲିବାକୁ ହେଲେ; ସ୍ରଷ୍ଟାକୁ ସ୍ୱାଧୀନ, ନିର୍ଭୀକ ହେବା ଦରକାର । କେବଳ ସେତିକି ନୁହେଁ, ସତ୍ୟ ପ୍ରକାଶ ପାଇଁ ସ୍ପର୍ଦ୍ଧିତ, ଆସ୍ପର୍ଦ୍ଧା ପୂର୍ଣ୍ଣ ଜିଭ ମଧ୍ୟ ଦରକାର । କାରଣ- କଟାଜିଭ ଗୁଡ଼ାକ କେବେହେଲେ ଜୀବନର ଅସଲ କଥା କହି ପାରନ୍ତି ନାହିଁ, କି' ଅସଲ ରହସ୍ୟର ଗଣ୍ଠିଗୁଡ଼ିକୁ ଫିଟାଇ ସତ୍ୟର ଉନ୍ମୋଚନ କରିପାରନ୍ତି ନାହିଁ । ଜୀବନ ପ୍ରତି ବିଶ୍ୱସ୍ତ ରହି, ସମାଜ ପ୍ରତି ପ୍ରତିବଦ୍ଧ ରହି ଔପନ୍ୟାସିକ ଏହି ଗୁରୁଦାୟିତ୍ୱ ବହନ କରିଥାଏ ।

ସଂପ୍ରତି ଆଧୁନିକ ବିଜ୍ଞାନ, ଉନ୍ନତ ପ୍ରଯୁକ୍ତି ବିଦ୍ୟା ଓ ଜାଗତୀକରଣ ଯୁଗ । ଜଗତୀକରଣ ବା ବିଶ୍ୱୀ-କରଣର ପ୍ରଭାବରେ ଆମର ବ୍ୟକ୍ତିଗତଜୀବନ, ସାମାଜିକଜୀବନ, ରାଷ୍ଟ୍ରୀୟଜୀବନ ସର୍ବୋପରି ଆମର ସାଂସ୍କୃତିକ ଭୂମି ସନ୍ଦିଗ୍ଧ, ଛାୟାଛନ୍ନ ହୋଇପଡ଼ିଛି ।

ଏକ ଦିଗରେ ବସ୍ତୁବାଦ ବା ବସ୍ତୁସତ୍ତାର କ୍ରମ ବିସ୍ତାର ଓ ଅନ୍ୟ ଦିଗରେ ଅଧ୍ୟାତ୍ମବାଦ, ଆତ୍ମସତ୍ତା ଓ ମାନବିକତାର ଚରମ ଅଧୋଗତି । ସୂଚନା ପ୍ରଯୁକ୍ତି, କମ୍ପୁଟର, ଇଣ୍ଟରନେଟ୍ ଓ ଯାନ୍ତ୍ରିକ ଗଣମାଧ୍ୟମ ଗୁଡ଼ିକର ଅକ୍ଟୋପସୀୟ ବାହୁ ବଳୟ ଭିତରେ ସଂପ୍ରତି ମଣିଷ ଜୀବନରୁ ବାସ୍ତବତା ବା ସ୍ୱାଭାବିକତା ଦୂରେଇ ଯାଉଛି । ଯନ୍ତ୍ରର ବଶତା ସ୍ୱୀକାର କରିବା ଯୋଗୁଁ ମଣିଷର ବ୍ୟକ୍ତିଗତ ସ୍ୱାଧୀନତା ଆଦି ବିନଷ୍ଟ । ମଣିଷ ଆଜି ବସ୍ତୁବାଦ ଓ ଯନ୍ତ୍ର ସଭ୍ୟତାର ଦାସ ପାଲଟି ଯାଇଛି । ବସ୍ତୁବାଦୀ ସଂସ୍କୃତିର କାୟାବିସ୍ତାର, ସାମ୍ରାଜ୍ୟ ବାଦୀ ଲିପ୍ସା, ପୁଞ୍ଜିବାଦ କାରଣରୁ ବିଭିନ୍ନ ବ୍ୟବସାୟିକ ପ୍ରକଳ୍ପ ସ୍ଥାପନ, ଶିଳ୍ପ ପ୍ରତିଷ୍ଠା, ହାଟ-ବଜାର ସ୍ଥାପନ, ପ୍ରାକୃତିକ ସଂପଦର ଲୁଣ୍ଠନ, ବିସ୍ଥାପନ ସମସ୍ୟା ଆଦି ମୁଣ୍ଡଟେକି ଉଠୁଛି ।

ଉଦାରୀକରଣ, ଘରୋଇକରଣ, ଜଳ-ଜମି-ଜଙ୍ଗଲ- ଖଣିଜ ପଦାର୍ଥ ଆଦିର ଲୁଣ୍ଠନ, ଭିଟା ମାଟି ଉଚ୍ଛେଦ ଜନିତ ବିସ୍ଥାପନ ସମସ୍ୟା ଆଦି କାରଣରୁ ବିଭିନ୍ନ, ସାମାଜିକ ଓ ଗଣଆନ୍ଦୋଳନ ମାନ ମୁଣ୍ଡଟେକି ଉଠୁଛି । ଅପରପକ୍ଷରେ ସିଂହାସନ ଲୋଭୀ, ମୁକୁଟ ବିଳାସୀ ରାଷ୍ଟ୍ରଶକ୍ତି ବା ରାଜଶକ୍ତି ମାନେ କଳେ-ବଳେ କୌଶଳେ ଜନତାର ମୁହଁ ବନ୍ଦ୍ କରିବାର ଉଦ୍ୟମ ମଧ୍ୟ ଜାରି ରଖିଛନ୍ତି । ସବୁଠି ଦୁର୍ନୀତି, ଭ୍ରଷ୍ଟାଚାରରେ ରୌଦ୍ର ତାଣ୍ଡବ ।

ସଂପ୍ରତି ବିଶ୍ୱ ମହାଶକ୍ତିମାନଙ୍କ ମଧ୍ୟରେ କ୍ଷମତା ନିଶା ଓ ସ୍ୱାମାଜ୍ୟ ବିସ୍ତାର ଲିପ୍‌ସା କାରଣରୁ ଗୃହଯୁଦ୍ଧ, ଛଦ୍ମଯୁଦ୍ଧ ବା ଛାୟାଯୁଦ୍ଧ ନକ୍ଷତ୍ର ଯୁଦ୍ଧ ଅବା ସର୍ଜିକାଲ ଷ୍ଟ୍ରାଇକ୍‌ର ଘନଘଟା ଲାଗି ରହିଛି । ସମଗ୍ର ବିଶ୍ୱଆଦି ହିଂସା ଓ ଆତଙ୍କ କବଳିତା ଏପରି କ୍ଷେତ୍ରରେ ମଣିଷ ସମ୍ମୁଖରେ ନୂଆ ନୂଆ ଚ୍ୟାଲେଞ୍ଜ୍ ବା ଆହ୍ୱାନ ଦେଖା ଦେଉଛି । ଏସବୁ ପ୍ରତି ସଜାଗ ଓ ସତର୍କ ଦୃଷ୍ଟି ଉପନ୍ୟାସ ଭିତରେ ରହେ । ଉପନ୍ୟାସର ଗତି ସବୁବେଳେ ସୀମାରୁ ଅସୀମ ଆଡ଼କୁ, ଦୃଶ୍ୟମାନ ଜଗତରୁ ଅଦୃଶ୍ୟ ଇଲାକାକୁ, ବସ୍ତୁ ରୂପଚର୍ଯ୍ୟାରୁ ଭାବରୂପ ଆଡ଼କୁ, ସ୍ଥୁଳରୁ ସୂକ୍ଷ୍ମକୁ, ବନ୍ଧନରୁ ମୁକ୍ତି ଆଡ଼କୁ । ଧରାବନ୍ଧା ସମାଜର ସକଳ ରେଖା ବନ୍ଧନକୁ ଅତିକ୍ରମ କରି ଆଜିର ଉପନ୍ୟାସ କ୍ରାନ୍ତି ଓ ସଂକ୍ରାନ୍ତିର ମାର୍ଗରେ ଗତିଶୀଳ । ନାରାୟଣ ନନ୍ଦ ଅବଧୂତ ସ୍ୱାମୀଙ୍କର ରୁଦ୍ର ସାଧାନିଧି, ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ' କଥା ଗ୍ରନ୍ଥ, ଉମେଶ ଚନ୍ଦ୍ର ସରକାରଙ୍କର 'ପଦ୍ମମାଳି' ଗୋପାଳ ବଲ୍ଲଭ ଦାସଙ୍କର 'ଭୀମଭୂୟାଁ', ରାମଶଙ୍କର ରାୟଙ୍କର ସୌଦାମିନୀ, ବିବାସିନୀ, ଫକୀର ମୋହନଙ୍କର ଛ' ମାଣ ଆଠ- ଗୁଣ୍ଠ ଦେଇ ମନୋଜ ଦାସଙ୍କ 'ଅମୃତଫଳ' ପର୍ଯ୍ୟନ୍ତ 'ଉପନ୍ୟାସ' ମଣିଷ ଓ ତା'ର ସମାଜ ପ୍ରତି ସତର୍କ, ସଜାଗ ଦୃଷ୍ଟି ରଖି କ୍ରାନ୍ତିର ପଥରେ, ସଂକ୍ରାନ୍ତିର ମାର୍ଗରେ ଅମୃତ ଆଲୋକର ପଥ ଦେଖାଇ ଚାଲିଛି । ଜୀବନ, ଜଗତ, ସମାଜ ଓ ମଣିଷର ପ୍ରତିଟି ଅସୀମାଂସୀତ ପ୍ରଶ୍ନ, ଜଟିଳ ଅବବୋଧ ଓ ଜିଜ୍ଞାସା ସହିତ ବିଭିନ୍ନ ସମସ୍ୟା ସମାଧାନର ସୂତ୍ର ଉପନ୍ୟାସ ଖୋଜି ଚାଲିଛି ।

ବିଂଶ ଶତାବ୍ଦୀର ଶେଷ ଦଶନ୍ଧି ବେଳକୁ ଜଗତୀକରଣ ବା ବିଶ୍ୱୀକରଣର ପ୍ରଭାବରେ ଓଡ଼ିଆ ଉପନ୍ୟାସର ସ୍ଥିତିରେ ଆଖି ଦୃଶିଆ ପରିବର୍ତ୍ତନ ଆସିଛି । ଉପନ୍ୟାସର ଉଭୟ ଆଙ୍ଗିକ ବିନ୍ୟାସ ଓ ଭାବାତ୍ମକ କ୍ଷେତ୍ରରେ ନବ-ନବ ପରୀକ୍ଷା- ନିରୀକ୍ଷା ଓ ତା'ର ସଫଳ ପ୍ରୟୋଗ କରାଯାଇଛି । ଭାଷା-ଶୈଳୀରେ କଥିତ, ଗାଉଁଲୀ ଭାଷାର ପ୍ରୟୋଗ ସହିତ ଏହାର ବର୍ଣ୍ଣନା ଶୈଳୀରେ ନୂଆ-ନୂଆ ଶୈଳୀର ଅନୁବର୍ତ୍ତନ ଘଟି ଚାଲିଛି ।

ଇତିହାସ ରୀତି, ଆତ୍ମ-କଥନ ରୀତି, ସମ୍ବାଦ ଶୈଳୀ, ପତ୍ର-ଶୈଳୀ, ପ୍ରତୀକାତ୍ମକ ଶୈଳୀ, ବ୍ୟଙ୍ଗାତ୍ମକ ଶୈଳୀ, ଚେତନା-ପ୍ରବାହ ଶୈଳୀ, ସଂବେଗାତ୍ମକ ଶୈଳୀ, ମୁକ୍ତଶୈଳୀ ଆଦିର ପ୍ରୟୋଗ ସହିତ ବିଭିନ୍ନ ବାଦ (ISM)ର ସଫଳ ପରୀକ୍ଷା ଓ ପ୍ରୟୋଗ କରାଯାଉଛି ।

ସଂପ୍ରତି ଉପନ୍ୟାସ ମଣିଷ ମନ-ଗହନର ଅଜ୍ଞାତ ଇଲାକାର ଅବବୋଧ ଓ ଗୋପନ ରହସ୍ୟର ଉନ୍ମୋଚନ କରିବାର ପ୍ରୟାସ ଜାରି ରଖିଛି । ମାନବିକ ସଂବେଗ ଓ ସମ୍ବେଦନର

ବିନ୍ୟାସ ମାଧ୍ୟମରେ ମଣିଷ ମନର ସଂଗୋପିତ ଇଚ୍ଛା, ଅବଦମିତ କାମ-ବାସନା, ଜାନ୍ତବ ପ୍ରବୃତ୍ତି ଓ ଆବେଗିକ ଆବେଦନର ସ୍ୱରୂପକୁ ଉନ୍ମୋଚିତ କରାଯାଉଛି । ସିଗ୍‌ମଣ୍ଡ ଫ୍ରଏଡ୍‌ଙ୍କର ମନୋବୈଜ୍ଞାନିକ ବିଶ୍ଳେଷଣ ଏ କ୍ଷେତ୍ରରେ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଅବଚେତନ ମନର ଅତନ୍ଦ୍ର ପ୍ରହରୀ ସୁପର ଇଗୋ ବା ବିବେକର ବ୍ୟବଚ୍ଛେଦ ଓ ବିଶ୍ଳେଷଣ ଜାରି ରହିଛି । ପିର୍ଲ ବକ୍, ଭର୍ଜିନିଆ ଉଲ୍‌ଫ, ବୁଭାୟାଙ୍କ ପରି ମନୋଜ ଦାସ, କିଶୋରୀ ଚରଣ ଦାସ, ଶାନ୍ତନୁ ଆଚାର୍ଯ୍ୟ, ଜଗଦୀଶ ମହାନ୍ତି ସରୋଜିନୀ ସାହୁ, ସୁମିତ୍ରା ରାଉତ ପ୍ରମୁକ କଥାକାର ମାନେ ସେମାନଙ୍କ ଉପନ୍ୟାସରେ ମଣିଷ ମନ-ଗହନର ଅବ୍ୟକ୍ତ ସ୍ୱରୂପ ଓ ଅସଲ ରହସ୍ୟକୁ ଉନ୍ମୋଚିତ କରିବାର ପ୍ରୟାସ କରିଛନ୍ତି । ମନୋଜ ଦାସଙ୍କର- ଆକାଶର ଇସାରା, ଗୋଧୂଳିର ବାଘ, ତନ୍ଦ୍ରାଲୋକର-ପ୍ରହରୀ, ଅମୃତ ଫଳ, କିଶୋରୀ ଚରଣ ଦାସଙ୍କର ବିଦେଶିନୀ, ସାତୋଟି ଦିନର ସତୀ, ପ୍ରତିଭା ରାୟଙ୍କର ପୁଣ୍ୟତୋୟା, ସରୋଜିନୀ ସାହୁଙ୍କର ଗମ୍ଭିରୀଘର, ବିଷାଦ ଈଶ୍ୱରୀ ପ୍ରଭୃତି ଉପନ୍ୟାସରେ ମଣିଷର ମନୋଭୂମିର ଅବଚେତନ ମନର ସଂଗୁପ୍ତ ଭାବ-ରହସ୍ୟକୁ ଉନ୍ମୋଚିତ କରିବାର ପ୍ରୟାସ କରାଯାଇଛି ।

ମଣିଷ ମନର ବ୍ୟବଚ୍ଛେଦ ପ୍ରସଙ୍ଗରେ ମୁଖ୍ୟ ଭୂମିକା ଗ୍ରହଣ କରିଛି- ଆଧୁନିକା, ଉଚ୍ଚଶିକ୍ଷିତା ନାରୀର ମନ ଓ ମାନସିକତା । ନାରୀର ସ୍ଥିତିକୁ ଉଭୟ ସମାଜ ତାତ୍ତ୍ୱିକ ଓ ମନୋବୈଜ୍ଞାନିକ ଦୃଷ୍ଟି କୋଣରୁ ବିଶ୍ଳେଷଣ କରାଯାଉଛି । ନାରୀବାଦୀମାନେ ବା ବାମାବାଦୀ ଚିନ୍ତାଧାରାର ବିଚାର- ବିମର୍ଷକ ମାନେ ନାରୀର ମୁକ୍ତି ଓ ସ୍ୱାଧୀନତା ଉପରେ ବେଶୀ ଗୁରୁତ୍ୱ ଦେଉଛନ୍ତି । ପାଶ୍ଚାତ୍ୟ ଚିନ୍ତା ରାଜ୍ୟରେ ଭର୍ଜିନିଆ ଉଲ୍‌ଫ୍‌ଙ୍କ 'ନାଇଟ୍ ଆଣ୍ଡ ଡ଼େ', 'ଜ୍ୟାକବସ୍ ରୁମ୍' ଏବଂ ବୁଭାୟାଙ୍କ 'ଦ'-ସେକେଣ୍ଡ ସେକ୍ସ' ଉପନ୍ୟାସରେ ନାରୀ ମନସ୍ଥିତିର ବିଶ୍ଳେଷଣ ସହିତ ତା'ର ସ୍ୱାଧୀନ, ଅବାଧ-ମୁକ୍ତ ଜୀବନର କଥା କୁହାଯାଇଛି । ଆଜିର ନାରୀ ସାମାଜିକ ସ୍ୱାଧୀନତା, ରାଜନୈତିକ ସ୍ୱାଧୀନତା, ଅର୍ଥନୈତିକ ସ୍ୱଚ୍ଛଳତା ଓ ସ୍ୱାଧୀନତା ସହିତ ମୁକ୍ତ-ଅବାଧ ଯୌନ ଜୀବନ ଚାହେଁ । ଯା'ର ବାସ୍ତବ, ନିଛକ ଚିତ୍ର- ସରୋଜିନୀ ସାହୁଙ୍କ- ବିଷାଦ ଈଶ୍ୱରୀ, ଗମ୍ଭିରୀ ଘର, ଶାନ୍ତା-ମହାପାତ୍ରଙ୍କ-ନିଷିଦ୍ଧ ନାୟିକା, ବିଜୟିନୀ ଦାସଙ୍କର- ନିଷିଦ୍ଧ କାବ୍ୟ, ଜ୍ୟୋସ୍ନା ରାଉତରାୟଙ୍କର ପରାଜିତା ସାମ୍ରାଜ୍ଞୀ, ସୁମିତ୍ରା ରାଉତଙ୍କର -କ୍ରୁଶବିଦ୍ଧା ପ୍ରଭୃତି ଉପନ୍ୟାସରେ ପ୍ରତିଫଳିତ । ଏ ଉପନ୍ୟାସ ଗୁଡ଼ିକରେ ତଥାକଥିତ ପୁରୁଷ କୈନ୍ଦ୍ରିକ ସମାଜ ବ୍ୟବସ୍ଥା ବିରୋଧୀ ସ୍ୱର, ନାରୀ ସ୍ୱାଧୀନତା ଓ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ଶାଣିତ ସ୍ୱର ପ୍ରକଟିତ । ବୀଣାପାଣି- ମହାନ୍ତି ତାଙ୍କ 'କୁନ୍ତୀ- କୁନ୍ତଳା- ଶକୁନ୍ତଳା' ଉପନ୍ୟାରସରେ ମଧ୍ୟ ପୁରୁଷ ତାନ୍ତ୍ରିକ ସମାଜ ବ୍ୟବସ୍ଥା ବିରୁଦ୍ଧରେ ସ୍ୱରତୋଳି ନାରୀ ସ୍ୱାଧୀନତା, ନାରୀର ଅସ୍ତିତ୍ୱ ଓ ତା'ର ଅସ୍ମିତା ଉପରେ ଗୁରୁତ୍ୱ ଦେଇଛନ୍ତି । ଉପନିଷଦ ବର୍ଣ୍ଣିତ ଜାବାଳୀ ପୁତ୍ର ସତ୍ୟକାମ ଜାବାଳ ପରି ଆଜିର ନାରୀ ପିତୃ ପରିଚୟ ହୀନ ସନ୍ତାନକୁ ମା'ର ପରିଚୟରେ ସାମାଜିକ ସ୍ୱୀକୃତି ଦେବାକୁ ଆଗେଇ ଆସିଛି । ସିଗମଣ୍ଡ ଫ୍ରୟେଡ୍‌କର ସେଇ ଚିରନ୍ତନୀ ପ୍ରଶ୍ନ- 'What - does a women desire' ର ସତ୍ୟଶୀଳ

ସ୍ୱୀକାରୋକ୍ତି ଓ ସ୍ପଷ୍ଟ ଉତ୍ତର ସରୋଜିନୀ ସାହୁଙ୍କ ଉପନ୍ୟାସରେ ରହିଛି । ତାଙ୍କର ପ୍ରତିବନ୍ଧୀ, ଗମ୍ଭିରୀ ଘର, ବିଷାଦ ଈଶ୍ୱରୀ ପ୍ରଭୃତି ଉପନ୍ୟାସରେ ମଣିଷର ମନ-ଗହନର ଅନ୍ଧାରୀ, ଅବ୍ୟକ୍ତ ରୂପର ନିଛକ, ସତ୍ୟଶୀଳ ପରିପ୍ରକାଶ କରାଯାଇଛି । ନାରୀ ମନର ସକଳ ଆବେଗ, ସ୍ୱପ୍ନ ଓ କଳ୍ପନା ପ୍ରବଣତା ସହିତ ନାରୀର ମୁକ୍ତ, ସ୍ୱାଧୀନ, ଦୁର୍ବାର ଯୌନ ଆକାଙ୍କ୍ଷାକୁ ଏଥିରେ ପ୍ରକଟିତ କରାଯାଇଛି । ଏହା ସହିତ ନାରୀ ଜୀବନର ରୁଦ୍ଧତା, ବ୍ୟର୍ଥତା, ଅସହାୟତା, ନାରୀତ୍ୱର ଅବକ୍ଷୟ ଓ ବିଫଳତା, ଅବଦମିତ ମାତୃତ୍ୱ ଓ ମାତୃତ୍ୱ ଆତ୍ମବିଳାପର ଚିତ୍ର ମଧ୍ୟ ପ୍ରକଟିତ । ସମାଜର ରଢ଼ିବାଦୀ ପରଂପରା, ସାମାଜିକ ନୀତି-ନିୟମ ଓ ବାଧା-ବନ୍ଧନ କିପରି ନାରୀମନରେ କଅଁଳି ଆସୁଥିବା ବିବିଧ ସ୍ୱପ୍ନ, ସମ୍ଭାବନା, ଆଶା-ଅକାଙ୍କ୍ଷାର ପର କାଟିଦିଏ, ତା' ଜୀବନର ସୁ-ବିସ୍ତୃତ ସମଭ୍ାବନା ଓ ସ୍ୱାଧୀନତାକୁ ସଙ୍କୁଚିତ କରିଦିଏ, ତାର ବାସ୍ତବ ଚିତ୍ର ଔପନ୍ୟାସିକା ଚିତ୍ରଣ କରିଛନ୍ତି । କିଶୋରୀ ଚରଣ ଦାସଙ୍କର- 'ସାତୋଟି ଦିନର ସତୀ' ଉପନ୍ୟାସରେ ନାରୀ ମନର ବିଭିନ୍ନ ମାନସିକ ପ୍ରତିକ୍ରିୟା, ତା'ର ଦେହ-ଦାହ, ଆତ୍ମିକ ଦହନ ସହିତ ବ୍ୟକ୍ତି ସତ୍ତାର ସ୍ୱାତନ୍ତ୍ର୍ୟ ପ୍ରକଟିତ । ଆଜିର ଉଚ୍ଚ ଶିକ୍ଷିତା, ଆଧୁନିକା ନାରୀ ସମାଜର ନିଗଡ଼ ବାଧା-ବନ୍ଧନ ଓ ପୁରୁଷ ପ୍ରାଧାନ୍ୟତାରୁ ମୁକ୍ତି ଚାହୁଁଛି । ସ୍ରଷ୍ଟା ଏହି ଉପନ୍ୟାସରେ ଆତ୍ମକଥନ ଶୈଳୀରେ ମଣିଷର ମନୋଭୂମିର ଅବଚେତନ ମନର ସଂଗୁପ୍ତ ଭାବ-ରହସ୍ୟର ଉନ୍ମୋଚନ କରିବା ସହିତ ମଣିଷର ଭ୍ରାନ୍ତ ଅହମିକା, ବୃଥା ଆତ୍ମ ବଡ଼ିମା, ତା'ର ବସ୍ତୁବାଦୀ ମୋହ, ଉପଭୋଗ ତୃଷ୍ଣା ଉପରେ ବୌଦ୍ଧିକ ଚାବୁକ୍ ପ୍ରହାର କରିଛନ୍ତି ।

ଜଗତୀକରଣର ପ୍ରଭାବରେ ଆମ ସଂସ୍କୃତି ଆଜି ପାଲଟି ଯାଇଛି- ବ୍ୟବସାୟିକ ସଂସ୍କୃତି ବା କର୍ପୋରେଟ୍ କଲ୍‌ଚରରେ । ଏହି ବ୍ୟବସାୟିକ ବା ବୈଷୟିକ ସଂସ୍କୃତରେ ଉଭୟ ନାରୀ ଏବଂ ଆମ ସଂସ୍କୃତି ବିଶ୍ୱ ବଜାରରେ ପଣ୍ୟ ବା ବସ୍ତୁରୂପେ ଗଣ୍ୟ ହେଉଛି । ଯା' ଫଳରେ ସାମାଜିକ ମୂଲ୍ୟବୋଧର ଅବକ୍ଷୟ, ନୈତିକତାର ଅଧୋଗତି, ମାନବିକ ମୂଲ୍ୟବୋଧର ଅଧୋପତନ, ନାରୀତ୍ୱର ଅଧୋଗତି ଓ ଚାରିତ୍ରିକ ସ୍ଖଳନ ଘଟି ଚାଲିଛି । ଏହି ସବୁ ଅବକ୍ଷୟ, ଅଧୋଗତି ଓ ଦୁର୍ଗତି ବିରୁଦ୍ଧରେ ସଂପ୍ରତି ଉପନ୍ୟାସ ପୃଷ୍ଠାରେ ବିଦ୍ରୋହ ଓ ପ୍ରତିବାଦର ସ୍ୱର ଝଂକୃତ ହେଉଛି । ଏହା ସହିତ ଉପନିବେଶବାଦ, ପୁଞ୍ଜିବାଦୀ ଶୋଷଣ-କଷଣ, ରାଜନୈତିକ ଭ୍ରଷ୍ଟାଚାର ଓ ଅବକ୍ଷୟ ବିରୁଦ୍ଧରେ ଉପନ୍ୟାସ ପ୍ରତିବାଦର ସ୍ୱର ତୋଳିଛି । ସୁରେନ୍ଦ୍ର ମହାନ୍ତିଙ୍କ ଅନ୍ଧ ଦିଗନ୍ତ, ଚନ୍ଦ୍ର- ଶେଖର ରଥଙ୍କର ଅସୂର୍ଯ୍ୟ ଉପନିବେଶ, ଶାନ୍ତନୁ ଆଚାର୍ଯ୍ୟଙ୍କର ଶକୁନ୍ତଳା, ମନ୍ତ୍ରୀଙ୍କ ସେୟାର୍ ଗଣେଶ୍ୱର ମିଶ୍ରଙ୍କର-ନେତା, ଅନାଦି ସାହୁଙ୍କର କ୍ଷଣଭଙ୍ଗୁର ପ୍ରଭୃତି ଉପନ୍ୟାସରେ କଳଙ୍କିତ ରାଜନୀତି- ରାଜନୈତିକ ଶଠତା, ଛଳନା, ପ୍ରବଞ୍ଚନା, ଦୁର୍ନୀତି-ଭ୍ରଷ୍ଟାଚାରର ପ୍ରତୁଳଚିତ୍ର ପ୍ରକଟିତ ।

ସଂପ୍ରତି ଉପନ୍ୟାସ ମଣିଷର ଅନ୍ତଃ ମାନବୀୟ ସଂପର୍କ ଭିତରେ ଥିବା ତୀବ୍ର ପ୍ରତିଯୋଗୀତା ବା ଦ୍ୱନ୍ଦ୍ୱାତ୍ମକ ମନୋଭାବ, ଜଟିଳ ଜୀବନାନୁଭୂତି, ବୌଦ୍ଧିକ ସମସ୍ୟା ଓ

ସଙ୍କଟରେ ରୂପାୟନ ସହିତ ସ୍ଥିତିବାଦୀ ଦର୍ଶନ, ସ୍ୱଭାବବାଦ, କୁହୁକ ବାସ୍ତବବାଦ, ବିଘଟନ ବାଦ, ମିଥ୍ ଓ ତା'ର ନବନିର୍ମାଣ ଉପରେ ଗୁରୁତ୍ୱ ଦେଇ ଚାଲିଛି । ମାନବୀୟ ସଂପର୍କ ଓ ବ୍ୟକ୍ତି ଚରିତ୍ର ମଧ୍ୟରେ ଆଜି ପ୍ରତି ଯୋଗୀତା ବା ଯାହାକୁ ଆମେ ଗେମ୍-ପ୍ଲେ କହୁଛେ ତାହା ତୀବ୍ର ହୋଇଉଠିଛି । ଜଣେ ଅନ୍ୟ ଜଣକୁ ପ୍ରତିହତ, ପରାହତ କରିବାର ଚେଷ୍ଟାରେ ସର୍ବଦା ତତ୍ପର । ଦାନାପାଣି' ଉପନ୍ୟାସର ବଳୀଦତ୍ତ ଭଳି ମଣିଷ ଆଜି ଜୀବନ ଯୁଦ୍ଧ ଓ ସ୍ୱାର୍ଥର ଖେଳରେ ବ୍ୟାପୃତ । ହୃଷୀକେଶ ପଣ୍ଡାଙ୍କର 'ଶୂନ୍ୟ ସଙ୍ଗେ ସାମୟିକ ସନ୍ଧି' ପଦ୍ମଜ ପାଳଙ୍କର 'ଆମ ସମୟର ଦୁଃଖ' ଉପନ୍ୟାସରେ ଆଧୁନିକ ମଣିଷର ଜଟିଳ ଜୀବାନାନୁଭୂତି, ବୌଦ୍ଧିକ-ଖେଳ, ବିଛିନ୍ନ ବ୍ୟକ୍ତିସତ୍ତା ଏବଂ ଆତ୍ମ ବିରୋଧର ଚିତ୍ର ପ୍ରକଟିତ ।

ସଂପ୍ରତି ମଣିଷ ନିଜର ଅସ୍ତିତ୍ୱ ବଜାୟ ରଖିବା ପାଇଁ ବଞ୍ଚିବାର ଜୀବନ ସଂଗ୍ରାମରେ ଅହରହ ଚେଷ୍ଟିତ । ମଣିଷ ଜୀବନର ବ୍ୟର୍ଥତା, ଅସହାୟତା, ତା' ଜୀବନ ଯନ୍ତ୍ରଣାର ତୀବ୍ରସ୍ୱର ଉପନ୍ୟାସରେ ପ୍ରକଟିତା । ସଂପ୍ରତି ମଣିଷ ମନରେ ଈଶ୍ୱରଙ୍କ ଅସ୍ତିତ୍ୱ, ପ୍ରଭୁତ୍ୱ ଓ ଶକ୍ତି ଉପରେ ଅନାସ୍ଥାଭାବ ଦେଖାଦେଇଛି । ଧର୍ମ ଓ ଈଶ୍ୱର ବିରୋଧି ଚିନ୍ତାଧାରାରେ ସେ କବଳିତ । ଫେଡ଼େରିକ୍ ନିତ୍‌ସେଙ୍କର ସ୍ଥିତିବାଦୀ ଜୀବନଦର୍ଶନ, ଧର୍ମ ଓ ଈଶ୍ୱର କୈନ୍ଦ୍ରିକତାକୁ ପ୍ରତିହତ କରି ଈଶ୍ୱରଙ୍କ ସ୍ଥାନରେ ମଣିଷକୁ ଅଧୀଷ୍ଠିତ କରାଇଛି । ଆଧୁନିକ ବିଜ୍ଞାନ ଓ ଉନ୍ନତ ପ୍ରଯୁକ୍ତି ବିଦ୍ୟାଳୟରେ ମଣିଷ କ୍ରମେ ନିଜ ନିଜର ପ୍ରଭୁ ବୋଲାଉଛି । ଏକଦା 'ସାର୍ତ୍ରେ' କହିଥିଲେ- 'Man is notthingelse but what he make is of himself' । ଏହି ସ୍ଥିତିବାଦୀ ଚିନ୍ତା- ଚେତନା ଓ ଜୀବନ ସଂଗ୍ରାମର ଶାଣିତ ସ୍ୱର ଗୋପୀନାଥ, ମହାନ୍ତି, ଶାନ୍ତନୁ ଆଚାର୍ଯ୍ୟ, ଚନ୍ଦ୍ରଶେଖର ରଥ, ମନୋଜ ଦାସ ପ୍ରଭୃତିଙ୍କ ଉପନ୍ୟାସରେ ପ୍ରତୁଳ ଭାବରେ ରହିଛି । ଗୋପୀନାଥଙ୍କ ଦାନାପାଣି, ଶାନ୍ତନୁ ଆଚାର୍ଯ୍ୟଙ୍କର- ଶତାବ୍ଦୀର ନଚିକେତା, ନରକିନ୍ନର, ଚନ୍ଦ୍ରଶେଖର ରଥଙ୍କର ଅସୂର୍ଯ୍ୟ ଉପନିବେଶ ପ୍ରଭୃତି ଉପନ୍ୟାସରେ ସ୍ଥିତିବାଦୀ ଜୀବନଦର୍ଶନର ଶାଣିତ ସ୍ୱର ପ୍ରକଟିତ । ସଂପ୍ରତି ଉପନ୍ୟାସରେ ଆତ୍ମଶ୍ଳେଷ ବା ଆତ୍ମବିଦ୍ରୂପର ସ୍ୱର ବେଶ୍ ତୀକ୍ଷଣ, ଶାଣିତ ଭାବରେ ପ୍ରକଟିତ । ଡ଼ୋନାଲ୍‌ଡ଼ ବାର୍ଥେଲମ୍‌ଙ୍କର 'ସ୍ନୋ-ହ୍ୱାଇଟ' ଉପନ୍ୟାସ ଏହାର ଜ୍ୱଳନ୍ତ ଉଦାହରଣ । ଓଡ଼ିଆ ଉପନ୍ୟାସରେ ମଧ୍ୟ ଏହି ଆତ୍ମ ବିଦ୍ରପର ସ୍ୱର ପ୍ରକଟିତ ହୋଇଚାଲିଛି । ବର୍ତ୍ତମାନ ସମୟରେ ବାସ୍ତବତାର ମୃତ୍ୟୁ ଘଟିଛି । ଉତ୍ତର ଆଧୁନିକ ଚେତନାର ମୁଖ୍ୟ ପ୍ରବକ୍ତା ଜାକ୍ ଡେରିଡ଼ା, ବଡ଼୍‌ରିଲାର୍ଡ଼ଙ୍କ ମତରେ- ସଂପ୍ରତି ପୃଥିବୀର ମଣିଷ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା, ସୂଚନା ବିଜ୍ଞାନ- କମ୍ପ୍ୟୁଟର ଓ ସାମାଜିକ ଗଣମାଧ୍ୟମ ଆଦିର ନିରବ ଶିକାର ହୋଇଚାଲିଛି । ଏମାନେ ମଣିଷର ସକଳ ବ୍ୟକ୍ତିଗତ ସମୟ, ରୁଚି ଓ ଅଭୀପ୍‌ସାକୁ ଆପଣାର ଅକ୍ତିଆରକୁ ନେଇ ସାରିଛନ୍ତି । ମଣିଷ ଏମାନଙ୍କ ପାଖରେ ବଶତା ସ୍ୱୀକାର କରି ଦାସ ପାଲଟି ଯାଉଛି । ଯା' ଫଳରେ ବାସ୍ତବତା ଓ ସ୍ୱାଭାବିକତାର ମୃତ୍ୟୁ ଘଟିଛି । ବର୍ତ୍ତମାନର ଖାଉଟି ବା ଉପଭୋକ୍ତା ସଂସ୍କୃତି ମଣିଷକୁ ଉପଭୋକ୍ତାରେ ପରିଣତ କରି ଦେଇଛି । ମଣିଷର ଚାହିଦା

ଓ ଉପଭୋଗ ଆକାଙ୍‌କ୍ଷା ଏକ ସାମାଜିକ ଉତ୍ପାଦନରେ ପରିଣତ ହୋଇଯାଇଛି । ମଣିଷର ଚାହିଦାକୁ ନେଇ କର୍ପୋରେଟ୍ କମ୍ପାନୀ ଓ ଗଣମାଧ୍ୟମ ଗୁଡ଼ିକ ସେଇଭଳି ଉତ୍ପାଦନର ବିଜ୍ଞାପନ ବା ନିଦର୍ଶନ କରି ମଣିଷକୁ ଆକୃଷ୍ଟ କରି ଚାଲିଛନ୍ତି । ସଂପ୍ରତି ସମାଜର ଅର୍ଥନୈତିକ ବିପର୍ଯ୍ୟୟ, ମୂଲ୍ୟବୋଧର ଅବକ୍ଷୟ ଓ ମଣିଷ ଆପଣା ଉପରେ ହରାଇ ବସୁଥିବା ବିଶ୍ୱାସନୀୟତା, ଉପନ୍ୟାସର ସ୍ୱର୍ଣ୍ଣାଭ ପୃଷ୍ଠାରେ ପ୍ରକଟିତ ହୋଇଚାଲିଛି । ସାଂପ୍ରତିକ ଉପନ୍ୟାସର ସ୍ଥିତି ଓ ଗତି ସନ୍ଧିକ୍ଷଣରେ ଉପନୀତ । ସମୟର ଭଜାଣି ସୁଅରେ ସେ ପୁଣି କଡ଼ ଲେଉଟାଇବ, ତା'ର ନବକଳେବର ପୁଣି ନିଶ୍ଚୟ ହେବ ।



# ପରିଶିଷ୍ଟ


୧- ଓଡ଼ିଆ ଲୋକ ସାହିତ୍ୟ ଓ ଲୋକ ସଂସ୍କୃତି- ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ

୨- ଓଡ଼ିଆ ଲୋକ ସାହିତ୍ୟ ଓ ଲୋକ ସଂସ୍କୃତି - ଡକ୍ଟର ଅଜୟ ମିଶ୍ର

୩- ଓଡ଼ିଆ ସାହିତ୍ୟର ଇତିହାସ - ଡକ୍ଟର ଶରତ୍ ଚନ୍ଦ୍ର ପତି (ପ୍ରଥମ ଖଣ୍ଡ)

୪- ଚର୍ଯ୍ୟାଗୀତିକା (ସଂ) - ଡକ୍ଟର ଖଗେଶ୍ୱର ମହାପାତ୍ର

୫- ଢେଙ୍କାନାଳ ସାହିତ୍ୟର ଇତିହାସ - ଡକ୍ଟର ଶରତ୍ ଚନ୍ଦ୍ର ପତି

୬- ଓଡ଼ିଆ ସାହିତ୍ୟରେ ବିଭିନ୍ନ ଧର୍ମଧାରା- ଡକ୍ଟର ଫକୀର ମୋହନ ଦାସ

୭- ବୈଷ୍ଣବ ସାହିତ୍ୟ ତତ୍ତ୍ୱ:- ଡକ୍ଟର ଆଶୁତୋଷ ପଟ୍ଟନାୟକ

୮- କୋଣାର୍କ - ଓଡ଼ିଆ ସାହିତ୍ୟ ଏକାଡ଼େମୀ ମୁଖପତ୍ର - ୧୯୮୯, ୭୪ ତମ ସଂଖ୍ୟା ।

୯- ପଞ୍ଚ ସଖା ସାହିତ୍ୟର ଦୃଷ୍ଟି ଓ ଦିଗନ୍ତ - ଡକ୍ଟର ଶରତ୍ ଚନ୍ଦ୍ର ପତି ।

୧୦- ସଖାହୀନ ପଞ୍ଚସଖା- ଡକ୍ଟର ନଟବର ସାମନ୍ତରାୟ ।

୧୧- ଆଲୋଚନା ବର୍ଣ୍ଣାଳୀ - ଡକ୍ଟର ପ୍ରଦୀପ୍ତ ଚୌଧୁରୀ, ଶରତ୍ ଚନ୍ଦ୍ର ପତି

୧୨- କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ - (ସଂ) ଡକ୍ଟର କୃଷ୍ଣ ଚରଣ ବେହେରା ।

୧୩- କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ (ସଂ) ଡକ୍ଟର ସୁରେନ୍ଦ୍ର ନାଥ ପାଣିଗ୍ରାହୀ ।

୧୪- ଲାବଣ୍ୟ ବତୀ (ସଂ) - ପଠାଣି ପଟ୍ଟନାୟକ ।

୧୫- କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ- (ସଂ) ଡକ୍ଟର କୃଷ୍ଣ ଚରଣ ବେହେରା ।

୧୬- ଅନଙ୍ଗ ରେଖା- ଧନଞ୍ଜୟ ଭଂଜ, ଓଡ଼ିଆ ସାହିତ୍ୟ ଏକାଡ଼େମୀ ।






ପ୍ରାବନ୍ଧିକ ଓ ସମାଲୋଚକ ଡକ୍ଟର ଶରତ୍ ଚନ୍ଦ୍ର ପତି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୯ ମସିହାରେ ଓଡ଼ିଆ ଭାଷା ସାହିତ୍ୟରେ ସ୍ନାତକୋତ୍ତର ଡିଗ୍ରୀ ଲାଭ ସହିତ ୧୯୯୦ ମସିହାରେ ଏମ୍.ଫିଲ୍ ଡିଗ୍ରୀ ଓ ୧୯୯୨ ମସିହାରେ ପିଏଚ୍.ଡି. ଡିଗ୍ରୀ ଲାଭ ପରେ ଅଧ୍ୟାପନାକୁ ନିଜର ବୃତ୍ତିରୂପେ ଆପଣେଇ ନେଇଛନ୍ତି ।

ଡକ୍ଟର ପତି ମୁଖ୍ୟତଃ ଓଡ଼ିଆ ଭାଷା ସାହିତ୍ୟର ଜଣେ ପ୍ରବୀଣ ଅଧ୍ୟାପକ, ଏକନିଷ୍ଠ ଗବେଷକ, ଦକ୍ଷ ସମାଲୋଚକ ଓ ବିଜ୍ଞ ପ୍ରାବନ୍ଧିକ । ସେ ଅନେକ ମୌଳିକ ସୃଜନଶୀଳ ପ୍ରବନ୍ଧର ସ୍ରଷ୍ଟା । ଅଦ୍ୟାବଧି ତାଙ୍କର ପ୍ରକାଶିତ ଗ୍ରନ୍ଥ ଗୁଡ଼ିକ ହେଲା- ଆଲୋଚନା ବର୍ଣ୍ଣାଳୀ, ଓଡ଼ିଆ ସାହିତ୍ୟର ଇତିହାସ- ସାରଳାରୁ ସାଂପ୍ରତିକ, ସ୍ରୋତର ନାମ ସରସ୍ୱତୀ, ଢେଙ୍କାନାଳ ସାହିତ୍ୟର ଇତିହାସ, ପଞ୍ଚସଖା ସାହିତ୍ୟର ଦୃଷ୍ଟି ଓ ଦିଗନ୍ତ । ସଂପ୍ରତି ତାଙ୍କର ସମାଲୋଚନା ଗ୍ରନ୍ଥ- 'ସାରସ୍ୱତ ସମାଲୋଚନା' ପ୍ରକାଶିତ । ଏହି ଗ୍ରନ୍ଥଟି ଛାତ୍ରଛାତ୍ରୀ ଓ ପାଠକ ମହଲରେ ଆଦୃତି ଲାଭ କରିବବୋଲି ଆଶା ।

- ପ୍ରକାଶକ



ତାରାତାରିଣୀ ବୁକ୍ ଷ୍ଟୋର୍